# କୈଳାସ ଦର୍ଶନ

(ତତ୍ତ୍ୱ ପ୍ରକାଶ)

ଉତ୍ସର୍ଗ

ବୋଉ,

ତୋର ପ୍ରେରଣା ଓ ଆଶୀର୍ବାଦରୁ ମୋର କୈଳାସ ଦର୍ଶନ ସମ୍ଭବ ହୋଇ ପାରିଥିଲା । କୈଳାସ ଯାତ୍ରାର ବିଚିତ୍ର ଅନୁଭୂତିକୁ "କୈଳାସ ଦର୍ଶନ"ରେ ଲିପିବଦ୍ଧ କରି ତୋ ପଦରେ ଅର୍ପଣ କଲି ।

ତୋର

ବାବୁ

ସ୍ୱସ୍ତି ବାଚନ—
ଓଁ ତତ୍ ସତ୍



ପାଠ— **କୈଳାସ ଦର୍ଶନ**

(ଭ୍ରମଣ ବୃତ୍ତାନ୍ତ ସହ
ଏକ ତତ୍ତ୍ୱ ପ୍ରକାଶ)

ଯାତ୍ରୀ — ମୁଁ



(ଭବେଶ ଚନ୍ଦ୍ର ମିଶ୍ର)

ପ୍ରଥମ ପ୍ରକାଶ —



ଶ୍ରାବଣୀ ଅମାବାସ୍ୟା
୧୩୭୭ ସାଲ
୩-୭-୧୯୭୦

ପ୍ରକାଶକ —



ପ୍ରହ୍ଲାଦ ମିଶ୍ର,
ସିଦ୍ଧାର୍ଥ ପ୍ରକାଶନୀ,
ମଧୁସୂଦନ ନଗର
ଭୁବନେଶ୍ୱର

ଶିଳ୍ପୀ —



କୁମାରୀ ମନୋରମା ପଣ୍ଡା

ମୂଲ୍ୟ ଧନ —



✱ ସାଢ଼େ ତିନି ଟଙ୍କା ✱
(କୁଣ୍ଡଳିନୀ ସ୍ମରଣେ)

ସଙ୍କଳ୍ପ—

ଆପଣଙ୍କର ଏହି ମହତ୍ତ୍ୱ ଦାନର ସମ୍ବଳରେ ଏହି ଧରାରେ ସାହସିକ ଭ୍ରମଣ ବୃତ୍ତାନ୍ତ, ବୈଜ୍ଞାନିକ ଭିତ୍ତିରେ ପ୍ରକୃତ ଧର୍ମର ହଗ ଦର୍ଶାଉଥିବା ଓ ଲୋମହର୍ଷଣକାରୀ ଅମାନୁଷିକ ରାକ୍ଷସ ପ୍ରବୃତ୍ତିର ରୂପ୍ରଚର ଓ ଚୌର୍ଯ୍ୟବୃତ୍ତି (ରାଜନୈତିକ, ସାମାଜିକ ଓ ଧର୍ମସମ୍ବନ୍ଧୀୟ) ଉନ୍ମୋଚନ କରାଯାଉଥିବା ଧନ୍ୟ କୌଶଳ ସହିତ ହତାଳ ସାହସିକ ଅନୁଭୂତିର, ଏବଂ ପ୍ରାନ୍ତଲକ୍ଷ୍ମୀବରେ ସମର, ଗଣିତ ଓ ବିଜ୍ଞାନ ସୂତ୍ର ସମ୍ବଳିତ ଆଉ ଅନେକ ପୁସ୍ତକ ପ୍ରଣୟନ କରାଯାଇ ଲୁପ୍ତ, ଗୁପ୍ତ ଓ ନୂତନ ସାହିତ୍ୟର ସୃଷ୍ଟି କରାଯିବ ।

ସତ୍ୟ ସତ୍ୟ ସତ୍ୟ

ଆବାହନ: —

ଓଁ ବନ୍ଧୁ ! ଓଁ ବନ୍ଧୁ ! ଓଁ ବନ୍ଧୁ !

ହେ ଅମୃତର ସନ୍ତାନ !

ସୁଧା ଓ ସୁରା ଭିତରେ ପାର୍ଥକ୍ୟ ଅଛି, ପରନ୍ତି ନାହିଁ । ପାର୍ଥକ୍ୟ ରହିଛି ବ୍ୟବହାରରେ, ମାତ୍ରାରେ । ଜାଣି, ବୁଝି ଓ ଭାବି କର୍ମରେ ଲାଗନ୍ତୁ । ଅମୃତତ୍ୱକୁ ସନ୍ଦିଗ୍ଧ କରି, ମୃତ୍ୟୁକୁ ବଳ ଦିଅନ୍ତୁ, ସାମର୍ଥ୍ୟ ଦିଅନ୍ତୁ । ସେ ହେବ ଧର୍ମ, ସେ ହେବ ବାଟ ।

ଅନ୍ୟ ସବୁ କଥା କଥିତ 'ଧର୍ମ, ହେଲା ଅଧର୍ମ ବାଟ ( ଚଳାଧାରା ) ହେଲା ଅବାଟ । ଏହାର ଅନୁସନ୍ଧାନ କରେ,

ଭଲ        ଅଭଲ

ଯାହା ଘଟିଛି        ତାହା ରହିଛି

ଶୁଣନ୍ତୁ—

କିନ୍ତୁ, ଗୋଟିଏ କଥା ମନେ ରଖନ୍ତୁ—

ପ୍ରାଣ ପ୍ରତିଷ୍ଠା, —

ମୋର ପରିଚୟ ହେଲା ଯେ, ମୁଁ ଜଣେ ଆବାଲ୍ୟରୁ ସତ୍ପଥଗାମୀ ହେବାରେ ବାଞ୍ଛା ଏବଂ ବ୍ରାହ୍ମଣ ଓ ବୈଜ୍ଞାନିକ ଧର୍ମ ପାଳିବାରେ ସତତ ସଚେଷ୍ଟ । ବ୍ରତଜନିତ ଓ ରାକ୍ଷସ ମାଧ୍ୟମ ଘଟିତ ଜାଣି ହିଂସ୍ରା ପ୍ରବାହ ହେଉ କର୍ଷଣ, ଘର୍ଷଣ ଓ ସଂଘର୍ଷର ଅନୁଭୂତ ଅଛି । କିନ୍ତୁ ସାହିତ୍ୟ କ୍ଷେତ୍ରରେ ଓ ମୁଦ୍ରଣ ଜଗତରେ ନୂତନ ଓ ଏ ପର୍ଯ୍ୟନ୍ତ ଥିଲି ଅଜ୍ଞ । ଯାବତୀୟ ଭୁଲ ଦୋଷ ତ୍ରୁଟି ଯାହା ରହି ଯାଇଛି ତାକୁ ନଜରକୁ ନ ନେଇ, କ୍ଷମାକରି, ଦୟା ଓ ସୂକ୍ଷ୍ମ ଚକ୍ଷୁର ପ୍ରତିଷ୍ଠାରେ ଚେଷ୍ଟାକରି, କେବଳ ସାରାଂଶ ନେବାକୁ ବିନୀତ ଅନୁରୋଧ — ହଂସ ଯେପରି ଖିର ପିଏ ।

[illegible]

# କୈଳାସ ଦର୍ଶନ

ରାମାୟଣ ଓ ମହାଭାରତର କୈଳାସ ଭାରତର ହିନ୍ଦୁ ଓ ତିବ୍ବତର ବୌଦ୍ଧମାନଙ୍କର ଶ୍ରେଷ୍ଠ ତୀର୍ଥ । କେବଳ ସେତିକି ନୁହେଁ, ପୃଥିବୀର ବିଶିଷ୍ଟ ସାଧୁ, ସନ୍ଥ, କବି ଓ ସାହିତ୍ୟିକ, ବିଶ୍ୱ ପ୍ରକୃତିର ପୂଜାରୀ ଓ ବୈଜ୍ଞାନିକର ଜ୍ଞାନ ଓ ଶାନ୍ତିର ଗବେଷଣା କେନ୍ଦ୍ର ଏହି ସେହି ମହାତୀର୍ଥ କୈଳାସ ।

ଅନ୍ୟାନ୍ୟ ତୀର୍ଥମାନଙ୍କଠାରୁ ଏହାର ଯାତ୍ରା ବେଶି କଷ୍ଟସାଧ୍ୟ ଓ ଆଧ୍ୟାତ୍ମିକତା ଦୃଷ୍ଟିରୁ ମହତ୍ତ୍ୱପୂର୍ଣ୍ଣ । ଜୀବ ଓ ଭଗବାନ ସମ୍ବନ୍ଧ ବିଦ୍ୟମାନ, ମନୁଷ୍ୟକୁ ଦେବତ୍ୱରେ ରୂପାୟନ କରିବା ପାଇଁ ପ୍ରତ୍ୟେକ ଧର୍ମରେ ନାନାପ୍ରକାର ଅନୁଷ୍ଠାନ ରୂପିତ ହୋଇଛି । ତୀର୍ଥ ଯାତ୍ରା ଏକ ପ୍ରକାର ଅନୁଷ୍ଠାନ । ତହିଁ ଜନିତ ଦୈହିକ କଷ୍ଟ, ମାନସିକ ଉଦ୍‌ବେଗ ଓ ସାହସ ସହିତ ନିୟମାବଳୀର ପାଳନ ସାଧନା ସଙ୍ଗେ ସମାନ । ଦେବତାତ୍ମା ହିମାଳୟ ଅନନ୍ତ ତୁଷାର ରାଶିରେ ଆବୃତ ହୋଇ ଅନନ୍ତ ବ୍ରହ୍ମକୁ ସୂଚାଉଛି ଯେପରିକି ମହୋଦଧି ତାର ଅନନ୍ତ ଜଳରାଶିରେ ସୂଚିତ କରେ ।

ଯାତ୍ରୀ ଯେତେବେଳେ ଧୀରେ ଧୀରେ ପର୍ବତ ଉପରକୁ ଆରୋହଣ କରେ ଭୂମିର ଦୃଶ୍ୟ ସବୁ କ୍ରମଶଃ ତା ନିକଟରୁ ଦୂରେଇ ଯାଏ ଓ ସେ ନିଜକୁ ସଂସାରଠାରୁ ଊର୍ଦ୍ଧ୍ୱରେ ଅନୁଭବ କରେ ।

ସେତେବେଳେ ନାର ଚେତନ୍ତ୍ର ଯୁଦ୍ଧ ଅହଂ ବସ୍ତୁର ବସ୍ତୁ ସତ୍ତରେ ଲୀନ ହୋଇପାଏ ଓ ସେ ନିଜଠାରେ ଭଗବତ୍ ସତ୍ତା ଅନୁଭବ କରେ । କଥାରେ ଅଛି, ଭଗବାନ ଭୂଷାର ବାହାରେ । ହିମାଳୟରେ ଏପରି ଅନେକ ଦୃଶ୍ୟଅଛି ଯାହାର ବର୍ଣ୍ଣନା କରି ହୁଏନା । ସେ ସବୁ ଦୃଶ୍ୟର ଦର୍ଶନରେ ଦର୍ଶକ ସ୍ତବ୍‌ଧ ହୋଇ ପଡ଼େ । ତାର ଚିତ୍ତବୃତ୍ତିର ନିରୋଧ ଘଟେ; ଯୋଗାନୁଭୂତି ହୁଏ ।

ଯୋଗଃ ଚିତ୍ତବୃତ୍ତି ନିରୋଧଃ ।

ମାତ୍ର କେତୋଟି ଅଲୌକିକ ଅନୁଭୂତିକୁ ଭିତ୍ତିକରି, ବାଲ୍ୟ କାଳରୁ ପୁରାଣ ପଢ଼ି କୈଳାସ ଯାତ୍ରାଦ୍ୱାରା ଜଣେ ଯୋଗୀର ଅସାମାନ୍ୟ ପ୍ରେମାଞ୍ଚଳର ଅନୁଭବ ହାସଲ କରିବା ପାଇଁ ମୋର ବଳବତ୍ତର ଇଚ୍ଛା ଓ ଚେଷ୍ଟା ଥିଲା । ପ୍ରସ୍ତୁତି ଭିତରେ ଥିଲା—ଶୀତ ସହିବା, କୌଣସି ନିର୍ଦ୍ଦିଷ୍ଟ ଖାଦ୍ୟ ପ୍ରତି ଆକୃଷ୍ଟ ନ ହେବା, ଆସନ ଇତ୍ୟାଦି କରି ଯଥା ସାଧ୍ୟ ବ୍ରହ୍ମଚର୍ଯ୍ୟ ପାଳନ କରିବା ଓ ପାହାଡ଼ ଜଙ୍ଗଲ ବୁଲି ଅଭ୍ୟାସ ହାସଲ କରିବା । ଇଚ୍ଛା ଥିଲା ଯେ ନିଆଁରେ ନିଆଁ ହେବି, ମାଟିରେ ମାଟି ହେବି, ବରଫରେ ବରଫ ହେବି ଓ ଶରୀରର ଦୁଃଖ କଷ୍ଟର ବାହାରେ ରହିବି । ସତ୍ ସଙ୍କଳ୍ପ ପଛରେ ଆସିଲା ଧକ୍‌କା-ଧାଡ଼ ବାଧା ବଢ଼ି ବଢ଼ି । ସମ୍ଭାଳି ନେଇ ସମୟ ଗଡ଼ୁଥାଏ ।

ଶେଷରେ ସାମ୍ପ୍ରତିକ ଭାବରେ ବାଧା ବନ୍ଦ ହେଉଥିବା ପରେ, ପ୍ରସ୍ତୁତି ଯଥେଷ୍ଟ ହୋଇଛି ଭାବି, ଆତ୍ମସ୍ତୁତିକୁ ଦେଖାଇବା କରି, ଉଣେଇଶ ସତାବନ ସାଲରେ କୈଳାସ ଉଦ୍ଦେଶ୍ୟରେ ବାହାରି, କୈଳାସ ଯାତ୍ରାର ସଠିକ ରାସ୍ତା ଓ କଷ୍ଟର ପ୍ରକୃତ ଅନୁଭବ ନଥିବା ହେତୁ ମୁଁ କେଦାର ବଦ୍ରୀ ଯାତ୍ରା କରି ଫେରି

ଥିଲି । ଭାବିଥିଲି ହିମାଳୟ ଯାତ୍ରା ସେଇଠାରେ ଶେଷ ହେବ । ହିମାଳୟ ଦେଖି ଭୟ ପାଇଯାଇଥିଲି । ହରିଦ୍ୱାରଠାରେ ନମସ୍କାର କରି ବିଦାୟ ନେଇଥିଲି । କିନ୍ତୁ ଦୁଇ ତିନିବର୍ଷ ପରେ ହିମାଳୟ ଓ କୈଳାସ ଦର୍ଶନ କରିବାର ଆକାଂକ୍ଷା ପ୍ରବଳ ହେଲା । କେଦାର ବଦ୍ରୀ ଯାତ୍ରାର ଗୋଟିଏ ଘଟଣା ମନେ ପଡ଼ିଲା ।

## ଟଙ୍କା ଲଙ୍ଘୟତେ ଗିରିଂ

କେଦାରନାଥ ମୋଟେ ଦୁଇ ତିନି ମାଇଲ ବାକିଥାଏ । ମୋର ହାତରେ ଆତ୍ମରକ୍ଷା ନିମିତ୍ତ ଥାଏ ଗୋଟିଏ ବାଡ଼ି । କାନ୍ଧରେ ପୁଟୁଳି, ଗୋଡ଼ରେ ମୋଜା ଓ ଯୋତା, ଦେହରେ ଗରମ ପୋଷାକ । ମନରେ ଗର୍ବ ହେଲା ଯେ ମୋର ବାପ ଦାଦା ପୂର୍ବ ପୁରୁଷ ଯାହା କରିପାରି ନାହାନ୍ତି ମୁଁ ତାହା କରିପାରୁଛି । ଚରଣଙ୍କୁ ଗୋଡ଼ରେ ଚଳି ଏଗାର ହଜାର ଫୁଟ ଆସି ପାରିଛି । କେବଳ କେଦାରନାଥ ଦର୍ଶନ ଯାହା ବାକି ଅଛି ।

ହଠାତ୍ ଦେଖେଁ, ଉପର ଠାରୁ ଦର୍ଶନ କରି ଫେରୁଛନ୍ତି ଜଣେ ବୃଦ୍ଧ । ସେ ପିନ୍ଧିଛନ୍ତି ଗୋଟିଏ ଅଣ୍ଟା ଲମ୍ବ ଗାମୁଛା । କାନ୍ଧରେ ବି ପଡ଼ିଥାଏ ଗୋଟେ ଛିଣ୍ଡା ମଇଳା ଗାମୁଛା । ହାତରେ ତାଙ୍କର ଥିଲା ଗୋଟେ ସରୁ ବେତ ରକମର ବାଡ଼ି । ପ୍ରକୃତରେ ସେ ଥିଲେ ଅନ୍ଧ । ପାହାଡ଼ିଆ ରାସ୍ତା ସବୁର ଓସାର ପ୍ରାୟ ଦୁଇରୁ ତିନିଫୁଟ ପର୍ଯ୍ୟନ୍ତ ଥାଏ । ଗୋଟିଏ ପାଖରେ ପାହାଡ଼ର କାନ୍ଥ ଓ ଅନ୍ୟ ପାଖରେ ଶହଶହ ଫୁଟ ତଳେ ବହି ଯାଉଥିବା ଫେଣ ସହିତ ପ୍ରଖର ସୁଅର ପାହାଡ଼ିଆ ନଦୀ । ଯେ ଗଲା ସେ ଗଲା । ତାର ଶବକୁ ଉଦ୍ଧାର କରିବା ଅସମ୍ଭବ । ବୃଦ୍ଧ ଗଲେ,

ଦେଖିଲେ କଣ ? ଆସିଲେ ବା କପରି ? ସ୍ତବ୍ଧ ହେଲି । ତାଙ୍କୁ ବାଟ ଛାଡ଼ି ଦେଲି । ପ୍ରକୃତିସ୍ଥ ହୋଇ ଦେଖେଁ, ପାହାଡ଼ଗାଙ୍କରେ ସେ ଅଦୃଶ୍ୟ ହୋଇ ଯାଇଛନ୍ତି । ମନରେ ସ୍ଫୁରଣ ହେଲା—

ମୂକଂ କରୋତି ବାଚାଳଂ
ପଙ୍ଗୁ ଲଙ୍ଘୟତେ ଗିରିମ୍

କୈଳାସ ଦର୍ଶନ ଆଶା ରଖି ହୃଦୟର ପ୍ରବଳ ଆବେଗରେ ସେହି ମାଧବଙ୍କୁ ଡ଼ାକଲି, ସେପରିକି ହିମାଳୟ ଗିରି ଲଙ୍ଘନ କରି ତିବ୍ବତ ମଧ୍ୟସ୍ଥିତ କୈଳାସ ଦର୍ଶନ ଆକାଂକ୍ଷା ମୋର ପରିପୂର୍ଣ୍ଣ ହୁଏ ଓ ଏ ଅସମ୍ଭବ ସମ୍ଭବ ହୁଏ । ଅନ୍ତରର ସେହି ସ୍ମୃତିକୁ ଗମ୍ଭୀର ଭାବରେ ଭାବୁଥାଏ ଓ କେବଳ ଭଗବାନଙ୍କୁ ଡ଼ାକୁଥାଏ ।

ଆଶ୍ଚର୍ଯ୍ୟ, କିଛି ଦିନପରେ ଖବର କାଗଜରେ ଦେଖିବାକୁ ପାଇଲି ଯେ ଚୀନା କର୍ତ୍ତୃପକ୍ଷ କୈଳାସ ଦର୍ଶନାର୍ଥୀ ଯାତ୍ରୀଙ୍କୁ କେବଳ ଲିପୁଲେଖ ତଥା ଅଲମୋଡ଼ା ବାଟଦେଇ ଯିବା ଉପରେ ନିଷେଧାଜ୍ଞା ଉଠାଇ ନେଇଛନ୍ତି । ଧରିନେଲି-ଡ଼ୋର ଟାଣୁଛି । ମନ ପ୍ରାଣ ବ୍ୟାକୁଳ ହୋଇ ଉଠିଲା । ପରେ ପରେ ଅଶ୍ଚର୍ଯ୍ୟଜନକ ଭାବେ ଆଉସବୁ ପ୍ରତିବନ୍ଧକ ଛୁଟି ଗଲା ।

କିନ୍ତୁ ଏଥିରେ ଆଶ୍ଚର୍ଯ୍ୟ ହେବାର କଣ ଅଛି ? ଯେଉଁଠି ଗମ୍ଭୀର ଆବେଗ ଓ ପୂର୍ଣ୍ଣ ବ୍ୟାକୁଳତା ଥାଏ ସେଠି ସମସ୍ତ ବାଧା ବିଘ୍ନ ଓ ପ୍ରତିବନ୍ଧକ ଛୁଏଁ ଛୁଏଁ ଦୂର ହୋଇଯାଏ । ଏହାହିଁ ମାନବ ଜୀବନର ଗୋଟିଏ ମହା ସତ୍ୟ—ଧ୍ରୁବ ।

ମୁଁ ଯାତ୍ରା ପାଇଁ ପ୍ରସ୍ତୁତ ହେଲି ।

ସାଙ୍ଗରେ ନେଲି ଗନ୍ଧିଧାରୀ ମନ୍ତ୍ର ଅର୍ଥାତ୍, ଦୁଇଟି କମ୍ବଳ, ଗୋଟିଏ ଗରମ ପେଣ୍ଟ, ଗୋଟିଏ [illegible] ଥିବା ଓ ଗୋଟେ ଠିକ୍ ମାପର ଗରମ ସ୍ୱେଟର, ହଳେ ମୋଜା, ହଳେ ଦସ୍ତାନା, ଗୋଟିଏ ଲେଖା ପେଣ୍ଟ, ଶାର୍ଟ, କୋଟ ଓ ପାଇଜାମା, ଦୁଇଟି ସ୍ଥୁଳ ଥଳି, ଗୋଟିଏ ହେଭର ସେକ୍, ଗୋଟିଏ ଓଭଲଆ ଓ ଗୋଟିଏ ଗାମ୍ବୁଛ-ତେବେତ ଘଣ୍ଟା ଓ ବୃଦ୍ଧିଙ୍କୁ ପାଇଁ ନିତାନ୍ତ ଦରକାର ।

ଏହି ଦୁର୍ଗମ ଯାତ୍ରାର ପଥରେ ବଡ ଧରଣର ଦୁର୍ଘଟଣା ଘଟିଲେ, ରକ୍ଷା କରିବା ପାଇଁ ତ କେହି ମିଳିବେ ନାହିଁ, କିନ୍ତୁ ଛୋଟ ଧରଣର ଝଣ୍ଡିଆ ଖାବରି ପାଇଁ ନିଜେ ପ୍ରସ୍ତୁତ ରହିବା ଉଚିତ । ରୋଗ ଭିତରେ ଡ଼ିସେଣ୍ଟ୍ରି, ଇନ୍‌ଫ୍ଲୁଏନ୍‌ଜା, ନିମୋନିଆ, ଥଣ୍ଡା ଓ କାଶ ସକାଶେ ପ୍ରସ୍ତୁତ ରହିବା ଦରକାର । ସେ ଦିନ ଡାକ୍ତରଙ୍କ ପାଖକୁ ଯାଇ ଉପରୋକ୍ତ ସମ୍ଭବପର ବିଭିନ୍ନ ରୋଗର ନିରାକରଣ ପାଇଁ ଔଷଧ ଲେଖାଇ ନେଲି । ଝଣ୍ଡିଆ ଖାବରି ସକାଶେ କିଛି ବେନ୍‌ଜିନ୍, ଟିଂଚର ଆଇଡ଼ିନ, ତୁଳା ଓ ବେଣ୍ଡେଜ୍ ଜନୈକ କମ୍ପାଉଣ୍ଡର ପାଖରୁ ନେଇ ଆସିଲି । ଏ ସବୁ ରୋଗର ଚାପରେ ଯେପରି ଅଧା ରାସ୍ତାରୁ ବାହୁଡ଼ିବାକୁ ନପଡ଼େ ।

ବାହାରିବା ଦିନଠୁ ଛୁଟି ମିଳିଥାଏ । ଟଙ୍କା ଯୋଗାଡ ସରିଥିଲା । ଧରିଥିଲି ତିନିଶହ ପଚିଶ ଟଙ୍କା । ଜନୈକ ବନ୍ଧୁ କହିଲେ —'କଣ ଆଜି ଯାଉଛନ୍ତି' ?

କହିଲି—'ହଁ'

ସେ—'ଆମ ଘରକୁ ଆଜି ଜଣେ ବ୍ରହ୍ମଚାରୀ ଆସିଛନ୍ତି ।

ସନ୍ଧ୍ୟାରେ କୀର୍ତ୍ତନ ହେବ । ଆପଣ ଆସିବେ ଓ ଆମଘରେ ଖାଇବେ' ।

ସନ୍ଧ୍ୟାରେ ଗଲି । ବ୍ରହ୍ମଚାରୀଙ୍କର ଅପୂର୍ବ ବୈଷ୍ଣବ କୀର୍ତ୍ତନ ମନପ୍ରାଣରେ ଐଶ୍ବରୀୟ ଆନନ୍ଦ ଆଣିଦେଲା । ଜାଣିଲି, ତୋର ଠିକ୍ ହେଉଛି । ତୀର୍ଥ ଯାତ୍ରା ଆରମ୍ଭରୁ ଶେଷ ପର୍ଯ୍ୟନ୍ତ ଗୋଟିଏ ଅବଚ୍ଛିନ୍ନ ପୂଜା । ପୂଜା ଆରମ୍ଭରେ ବିଷ୍ଣୁଙ୍କ ନାମ ଉଚ୍ଚାରଣ କରାଯାଏ—

ତଦ୍ବିଷ୍ଣୋଃ ପରମଂ ପଦମ୍
ସଦାପଶ୍ୟନ୍ତି ସୂରୟଃ
ଦିବୀବ ଚକ୍ଷୁରାତତମ୍

ମନରେ ଗୋଟିଏ ସନ୍ଦେହ ଥିଲା । ତିଥି, ବାର ନକ୍ଷତ୍ର ସବୁ ଭଲ । କିନ୍ତୁ ଘାତ ଚନ୍ଦ୍ର । କଥାଟା ବ୍ରହ୍ମଚାରୀଙ୍କୁ ଜଣାଇଲି । ସେ ଅଭୟ ଦେଇ କହିଲେ ଯେ ସେଥିରେ କିଛି ଯାଏ ଆସେ ନାହିଁ । ଭଗବାନ ସବୁ ଇଚ୍ଛା ପୂରଣ କରନ୍ତି । ଘାତ ପ୍ରତିଘାତରେ ହିଁ ଜୀବନର ବିକାଶ ଘଟିଥାଏ ।

'ମାତ୍ରା ସ୍ପର୍ଶାସ୍ତୁ କୌନ୍ତେୟ ଶୀତୋଷ୍ଣ ସୁଖ ଦୁଃଖଦା ।'

---

ବିଃ ଦ୍ରଃ-ଯାତ୍ରାରୁ ବାହୁଡ଼ିବା ଦିନ ମଧ୍ୟ ସେହି ବ୍ରହ୍ମଚାରୀ ଆସି ଯାତ୍ରାଟାକୁ ପୂର୍ଣ୍ଣାଙ୍ଗ ଓ ସାଙ୍ଗ କରିଥିଲେ । ଏଥିଲା ଭଗବାନଙ୍କ ଘଟସୂତ୍ର । ଯାତ୍ରାପୂର୍ବରୁ ବା ତାପରେ ତାଙ୍କୁ ଦେଖିନାହିଁ । ତାଙ୍କର ନାମ ଥିଲା ବୈକୁଣ୍ଠ ନାଥ ବ୍ରହ୍ମଚାରୀ-ରହନ୍ତି ଜଲୋକାରେ ।

ଯାତ୍ରାରମ୍ଭ ଶୁକ୍ରବାର ଜୁନ୍ ୨

ମନେ ପଡ଼େ ସେହି ବର୍ଷ, ଘରେ ସେହି ଦିନର ଭୋଜନ ଥିଲା—ରୁଟି, ଡ଼ାଲମା ଓ ଆମ୍ବ । ମନପ୍ରାଣର ଆନନ୍ଦ ଅବସ୍ଥା ସଙ୍ଗେ ସେହି ମିଠା ପାଚିଲା ଆମ୍ବ ଦେହରେ ଶାନ୍ତି ଆଣିଦେଲା ଓ ଇନ୍ଦ୍ରିୟ ତୃପ୍ତ କରିଥିଲା । ସେହି ତୃପ୍ତି ଭାବ ମନରେ ଧରେଇ ଶୁକ୍ରବାର ଜୁନ ଦୁଇ ତାରିଖ ୧୯୭୧ ରେ ଘର ଛାଡ଼ିଲି ।

ଘର ଆଗରେ, ଷ୍ଟେସନ ଫେରନ୍ତା ରିକ୍ସା ବାଲାକୁ ପଚାରିଲି—

ଗାଡ଼ି ମିଳିବ ?

ସେ ମୁଣ୍ଡ ଟେକି ଆକାଶକୁ ଚାହିଁ କହିଲା—

ହଁ ।

ରିକ୍ସା ଚାଲିଲା ଷ୍ଟେସନ ଅଭିମୁଖରେ । ଉତ୍ଫୁଲ୍ଲ ମନରେ ଉପଭୋଗ କରୁଛି ସୁଲୁ ସୁଲିଆ ପବନ । ଝଡ଼ ଝଞ୍ଜାର ସଂସାର ଛାଡ଼ି ଆଗେଇ ଚାଲିଛି କୈଳାସ ଦର୍ଶନାର୍ଥେ । ସଙ୍କଳ୍ପିତ ସତ୍ୟେ, ପୂଜାର ଯୋଗାଡ଼ ତ ସରିଛି, ବସି ଶେଷ କରିବାକୁ ହିଁ ହେବ । ନିଜକୁ ସମର୍ପି ଦେଇଛି କୈଳାସ ପତିଙ୍କ ନିକଟରେ । ମହାକାଳ ସେ । ସେହି ମହାକାଳ ଗର୍ଭରେ ସବୁ ଲୀନ ହୋଇଛି । ସମୟ ମଧ୍ୟ । ସମୟର ବା କି ମୂଲ୍ୟ ? ସମୟ ମାୟା ଭରା ମନର ଗୋଟିଏ ବିକାର । ମନ ଥିଲା ବିକାର ଶୂନ୍ୟ । ସମୟ ଜାଣି ନଥିଲି ।

ପୁରୀ ହାବଡ଼ା ଏକ୍ସପ୍ରେସ୍ ଅନେକ ଆଗରୁ, ଚାଲି ଯାଇଥିଲା । ଭାବିଲି, ଏ ହୁଏତ ଭଗବାନଙ୍କ ଇଚ୍ଛା । ତେବେ କଣ ସେ ଇଚ୍ଛା ?

ଅନ୍ୟ ତୀର୍ଥ ଯାତ୍ରା ସମୟରେ ଠିଆ ହେବା ପାଇଁ ଜାଗା ନଥିଲେ ମଧ୍ୟ, ଭଗବାନଙ୍କ ଇଚ୍ଛା ହେତୁ ମୁଁ ଶୋଇବା ପାଇଁ ଜାଗା ପାଇ ଯାଇଥାଏ, ଏବଂ ଦେହକୁ ଅଯଥା କଷ୍ଟ ଦେବା ନିୟମ

ବଢୁଛି । କିନ୍ତୁ ଅଗେଇବାକୁ ହିଁ ହେବ । ସେ ହେତୁ ଟିକେଟ ଭଳି କଟକ ପର୍ଯ୍ୟନ୍ତ । ଭାବିଲି, ଯଦି ଶୋଇବା ଜାଗା ପାଏ ଅଗେଇବି ନ ହେଲେ କଟକଠି ଓହ୍ଲାଇବି ।

ଟିକିଏ ସମୟ ପରେ ଆସନ୍‌ସୋଲ ଗାଡ଼ି ଧରିଲି । ଗାଡ଼ିରେ ଖୁବ୍ ଭିଡ଼ ଥିଲା । ଯାତ୍ରା ଅସମ୍ଭବ । କଟକଠି ଓହ୍ଲାଇ ସକାଳେ କାଳୀ ମନ୍ଦିରରେ ପୂଜାପୂଜି କରି ଯାତ୍ରା ପାଇଁ ଅନୁମତି ନେଲି ଓ ଯାତ୍ରା ସମୟରେ ରକ୍ଷା କରିବା ପାଇଁ ଅନୁରୋଧ ଜଣାଇଲି ।

ଭାବିଲି-ଏ ଥିଲା ବୋଧହୁଏ ଭଗବାନଙ୍କ ଇଚ୍ଛା ।

ଯୋଗାଡ ଭିତରେ ଦେଢ଼ ଲିଟର ପାଣି ଧରେଇଲା ଭଳି ଗୋଟିଏ ଡେକ୍‌ଚି କିଣିଲି, ଯେପରି ସେଟା ସବୁ କାମରେ ଲାଗି ପାରିବ; ମୁଣ୍ଡ ଧୋଇବା ଶୌଚଶୁଦ୍ଧ ଓ ରନ୍ଧା ରନ୍ଧି ସବୁ କିଛି । ଉଦ୍ଦେଶ୍ୟ ଥିଲା ଯେ ତିବ୍ବତର ରହଣି କାଳରେ ଯେଉଁଠି କି କାଠ ଓ ଖାଦ୍ୟ ମିଳେନାହିଁ ସେଠି ସୁଜି ଓ ଗୁଣ୍ଡ ଦୁଧ ନେଇ ସ୍ପିରିଟ ଷ୍ଟୋଭ ଦେଇ କିଛି କ୍ଷୀରି ତିଆରି କରିପାରିବି । ଡେକ୍‌ଚିର ଦାମ ଥିଲା ଏକ ଟଙ୍କା ଦଶ ନୂଆ ପଇସା । ଦିନ ଗୋଟାଏ ତିରିଶିରେ କଟକରୁ ପୁରୀ-ହାବଡା ପାସେଞ୍ଜର ଧରିଲି । ଶୋଇବା ଜାଗା ପାଇବାରୁ, ଭଗବାନଙ୍କୁ କୃତଜ୍ଞତା ଜଣାଇ, ନିଜକୁ ତାଙ୍କଠି ସମର୍ପଣ କରି କଲିକତା ଅଭିମୁଖେ ଯାତ୍ରା କଲି ।

[illegible] ତାରିଖ ସକାଳେ କଲିକତାରେ ପହଞ୍ଚିଲି । କୈଳାସ ଯାତ୍ରା ବିଷୟରେ କିଛି ତଥ୍ୟ ସେଠୁ ପାଇବି ବୋଲି ମୋର ଆଶା ଥିଲା । ସାଥି ମଧ୍ୟ ମିଳି ପାରନ୍ତି ବୋଲି ଭାବିଥିଲି ।

ପାହାନ୍ତିଆ ସମୟଟା । ପାଞ୍ଚ ଗଡ଼ିଆ ବସ୍‌ରେ ମୋଟେ ପାଞ୍ଚ ଜଣ ଯାତ୍ରୀ ଥିଲେ । ଜଣେ ଯାତ୍ରୀ ଉତ୍ତର ଭାରତର । ତା ପାଖରେ ଟିକେଟ ପାଇଁ ଦୁଇ ନୂଆ ପଇସା କମଥିଲା । ମୁଁ ଯାଚିଲି ।

ଚନ୍ଦ୍ରକାନ୍ତ ବାବୁ ମନାକାଂକ୍ଷା ତାହା ପୂରଣ କଲେ । ଏହି ଭ୍ରାତୃଭାବା-ପନ୍ନ ସହାନୁଭୂତି ମନରେ ଅପାର ଆନନ୍ଦ ଆଣି ଦେଲା । ବାହାରୁ ଆସିବା ଲୋକଙ୍କ ପ୍ରତି ପୂର୍ବର ଭକ୍ତି ଅନୁଭବ ମନେ ପକାଇ ବର୍ତ୍ତମାନ ପରିସ୍ଥିତିକୁ ତୁଳନା ନକରି ରହିପାରିଲି ନାହିଁ । ଦେଶ ଆଗେଇଛି । ଭଗବାନଙ୍କ କରୁଣା ଦୃଷ୍ଟି ଯୋଗୁ ମୁଁ ଖାଲି ପ୍ରେମମୟ ଜଗତ ଦେଖିବାକୁ ପାଉଛି । ଢ଼ୋର ପଡ଼ୁଛି ।

ମୋର ଭଲ୍‌ଭ ବିଛଣା ପତ୍ର ଦେଖି ମୁଁ କେଉଁଆଡ଼େ ଯାଉଥିବା କଥା ପଚାରିଲି । ଖବର ଟିକକ ଦେବାରୁ ଆନନ୍ଦ ପ୍ରକାଶ କଲା । ଠିକଣା ଜାଗାରେ ମୁଁ ଓହ୍ଲାଇବା ପାଇଁ ଗାଡ଼ି ପୁରା ବନ୍ଦ କରାଇଲା । ଏ ଶୁଭାବସ୍ଥା ଦେଖି ସେତେବେଳେ ମୁଁ ମନେ ମନେ କୈଲାସପତିଙ୍କୁ ନମସ୍କାର କରୁଥାଏ ।

ଯାତ୍ରାଟା ବେଶି ଦୂର ଓ କଷ୍ଟ ସାଧ୍ୟ; ସମୟ ସାପେକ୍ଷ । ପଦେ ପଦେ ବିପଦ ଓ ଅନିଶ୍ଚିତତା ଦେଇ ଗତି କରିବାକୁ ହେବ । ଯୁଦ୍ଧ ଭୂମିରେ ଯେଉଁ ସେନାନାୟକ ଯେତେ କମ ସୈନ୍ୟ ନେଇ ଶତ୍ରୁ ସୈନ୍ୟକୁ ହତସନ୍ତ୍ର କରିପାରେ ଓ ଯେତେ ବେଶି ସୈନ୍ୟ ଯୁଦ୍ଧ କ୍ଷେତ୍ର ବାହାରେ ଠୁଳ କରିପାରିଥାଏ ତାର ଜିତିବାର ସମ୍ଭାବନା ସେତେ ବେଶୀ । ହିମାଳୟ ଗିରି ଲଙ୍ଘନ ଯୁଦ୍ଧଠାରୁ ମଧ୍ୟ କଠିଣ । ମନ ଓ ଦେହର ଶକ୍ତିକୁ ଯେତେ ଦୂର ସମ୍ଭବ ସଞ୍ଚିତ ରଖି ଶେଷ ପର୍ଯ୍ୟାୟରେ ଖଟାଇବା ଥିଲା ମୋର ଉଦ୍ଦେଶ୍ୟ । ହାବଡ଼ା ଷ୍ଟେସନ ଯାଇ, ସାତ ତାରିଖ ବୁଧବାର ଦିନ ସ୍ଥାନ ସଂରକ୍ଷଣ ହୋଇ ପାରିବ ଶୁଣି ସେଇଆ କଲି ।

ସେ ଦିନ ରାତିରେ ରହିବା ହୋଟେଲରେ ଜଣେ ଭଦ୍ରଲୋକ ସହିତ କଥା ହେଲି ।

ସେ କହିଲେ—'ବର୍ତ୍ତମାନ କୈଳାସ ଯିବାଟା ବୁଦ୍ଧିମାନର କାର୍ଯ୍ୟ ହେବନାହିଁ । କାରଣ ଦେଖାଇ ସେ ବୁଝାଇଲେ ଯେ, ଯେଉଁ ପ୍ରଥମ ଦଳଟା କୈଳାସ ଯାଇଥିଲେ, ଭାରତୀୟ ଗୁଇନ୍ଦା ମନେ କରି ଚୀନାମାନେ ସେ ସମସ୍ତଙ୍କୁ ଗୁଳି କରି ଦେଇଛନ୍ତି । ତାପରେ ଭାରତ ସରକାର ଆଉ ଛାଡ଼ୁ ନାହାନ୍ତି ।

ମୁଁ କହିଲି—ତାର ପ୍ରତିକାର ପାଇଁ ମୁଁ ପ୍ରସ୍ତୁତ ଅଛି । ଅଧିକନ୍ତୁ ଭଗବାନ ମୋ ସାଥିରେ ଅଛନ୍ତି । ଆଜନ୍ମ ପ୍ରତୀକ୍ଷା କରି ପାଇଥିବା ସୁଯୋଗ ଏତେ ସହଜରେ ହରାଇବାକୁ ଚାହେଁ ନାହିଁ ।

ସେ କହିଲେ—ଠିକ ଖବର ଯାଣି ସୂଚନା କେନ୍ଦ୍ରରୁ ପାଇବେ । ଆଉ ସେ କଥା ଛାଡ଼ନ୍ତୁ । ସେ ସବୁ ଜାଗାରେ ବାଘ, ଭାଲୁ ଇତ୍ୟାଦି ହିଂସ୍ର ଜନ୍ତୁ ନଥିଲେ ମଧ୍ୟ ଅନ୍ୟାନ୍ୟ ଭୟ ଥାଏ । ଯାତ୍ରିକୁ ଆଗେଇବାକୁ ଦେବେ ନାହିଁ । କଥାଟା ବୁଝି ପାରିଲି, କହିଲି—

ମୋର ସେ ସବୁ ଭୟ ନାହିଁ । ମୁଁ ଚଣ୍ଡି ପାଠକରେ । ମୋର କଥା ତାଙ୍କର ଆଦୌ ବିଶ୍ୱାସ ହେଲା ନାହିଁ । ତେଣୁ ମୋର ଜୀବନର ଗୋଟିଏ ଘଟଣା ତାଙ୍କୁ କହିଲି ।

ଊଣେଇଶ ସତାବନ ସାଲ । କେଦାର ଅଭିମୁଖେ ଅଗସ୍ତି-ମୁନିଠାରୁ ପଦଯାତ୍ରା ଆରମ୍ଭ କରିଛି । ଟିକିଏ ଆଗରୁ ଦୁଇଦିନର ସାଥି ଜଣେ, ତରତରିଆ ଯାତ୍ରା କରିବାକୁ ଯାଇ, ମୋତେ ଛାଡ଼ି ଚାଲି ଯାଇଛି । ମୁଁ ଏକୁଟିଆ ଆଗେଇ ଚାଲିଥାଏ । ଘଞ୍ଚ ବନସ୍ପତି ଦେଖି ମନରେ ଟିକିଏ ଭୟ ଆସିଥାଏ । ଆଗରେ ଲମ୍ବା ଗୋଟ

ଥିବା ଗୋଟେ ବେଶ ବଡ଼ ଠେଙ୍ଗାକୁ ସଙ୍ଗୀନ ପ୍ରୟୋଗ ଠାଣିରେ ଧରଥାଏ । କାରଣ, ଭାବଥିଲ ଯେ ବାଁ ପଟରୁ ପାହାଡ଼ ଉପରୁ ଯଦ କୌଣସି ଜୀବ ଜନ୍ତୁ ଝାମ୍ପ ଦଅନ୍ତ ତାର ସେଇ ଶକ୍ତ ବେଗକୁ ଅଡ଼େଇ ନେଇ, ବାଙ୍କେଇ ଦେଇ, ତାକୁ ଆରପଟ ଗମ୍ଭୀର ଗହ୍ୱର ଭିତର ନଦୀ ଗର୍ଭକୁ ଠେଲି ଦେବ ।

ହଠାତ୍ ଦଶ ପନ୍ଦର ହାତ ଦୂରରେ, ପାହାଡ଼ ଉପରେ, ଶୁଣିବାକୁ ପାଇଲି 'ଝନ୍, ଝନ୍, ଝନ୍' ଘୁଂଗୁର ଶବ୍ଦ । ଚମକ ଚାହିଁଲି ଉପରକୁ, ଡ଼ାଳ ପତ୍ର କିଛି ହଲୁ ନାହିଁ । ଅଥଚ ଶବ୍ଦଟା ମୋ ସଙ୍ଗେ ସଙ୍ଗେ ଆଗଉଛି । ଭୟରେ ଡ଼ାକିଲି ଦୁର୍ଗାଙ୍କୁ—

ସର୍ବ ସ୍ୱରୂପେ ସର୍ବେଶେ
ସର୍ବଶକ୍ତି ସମନ୍ୱିତେ ।
ଭୟେଭ୍ୟ ସ୍ତ୍ରାହିନୋ ଦେବୀ
ଦୁର୍ଗେ ଦେବୀ ନମୋସ୍ତୁତେ ॥

ଦୂରେଇ ଗଲା ଶବ୍ଦଟି । କିନ୍ତୁ ଏ କଣ ? ସେ ଶବ୍ଦଟି ଏକ୍-ଦମ୍ ମୋ ଗୋଡ଼ ପାଖକୁ ଫେରି ଆସିଲା ଓ ମୋ ସାଙ୍ଗରେ ରହିଲା, ସତେ କି ଯେପରି ମୋ ସାଙ୍ଗରେ ଜଣେ ଘୁଙ୍ଗୁର ପିନ୍ଧି ଚାଲିଛି; ମାନେ ଚାଲିବା ତାଳରେ ଶବ୍ଦ ଦେଉଥିଲା । ଦାନ୍ତ ଚିପି ଜୋରରେ ଡାକିଲି ଶକ୍ତିମୟୀ ଦୁର୍ଗାଙ୍କୁ । ଚାଲିଗଲା କିଛି ଦୂର—ଫେରି ଆସିଲା ଧାଇଁ ଧାଇଁ ଓ ମୋର ଗୋଡ଼ ପାଖରେ ଶୁଣା ଗଲା କ୍ଷିପ୍ର ନାଚର ତାଳ । ଦାନ୍ତ ଚିପି ମନପ୍ରାଣରେ ଦୁର୍ଗା ନାମ ଜପିଲି । ଶବ୍ଦଟି ଚାରି ପାଞ୍ଚ ହାତ ଦୂର ଚାଲିଗଲା କିନ୍ତୁ ମୋ ସାଥିରେ ସାଥିରେ ଥାଏ; ସତେକି ଯେପରି ଜଣେ ମୋ ସାଙ୍ଗରେ ସାଙ୍ଗରେ ଚାଲୁଥାଏ । ସେ

ଦିନର ଯାତ୍ରା ଶେଷ ପର୍ଯ୍ୟନ୍ତ ସେହି ଶବ୍ଦଟି, ନା ଦୂରରେ ନା ପାଖରେ, ବରାବର ମୋ ପାଖେ ପାଖେ ଥାଏ । ବେଳେବେଳେ ତାଳର ସାମାନ୍ୟ ପରିବର୍ତ୍ତନ ହେଉଥାଏ । ବୁଝିଲି ଯେ ଦେବୀଙ୍କ ଅଂଶର କେହି ସେଭଳି ଶବ୍ଦ କରି ତାଙ୍କର ଉପସ୍ଥିତି ସମ୍ବନ୍ଧରେ ମୋତେ ସଚେତନ କରୁଛନ୍ତି । ଯେପରିକି ବିପଦ ସଂପର୍କରେ ତାଙ୍କର ଆଶ୍ରୟ ନଏ ଓ ଯଦ୍ୱାରା ମୋର ଖାପଖିଆଇ ଯାତ୍ରାଟା ଏକ ପରିକ୍ରମା ତୀର୍ଥ ଯାତ୍ରାରେ ପରିଣତ ହୁଏ ଓ ମୁଁ ତୀର୍ଥଯାତ୍ରୀର ଗ୍ରନ୍ଥରେ ପଡ଼ି ସେହି ହିସାବରେ ପରିଗଣିତ ହୁଏ ଓ ଫଳ ପାଏ ।

ଭଦ୍ର ଲୋକଟି ଜୋର କରି ଯାଚିଲେ ଦୁଇ ଟଙ୍କା-କିଛି ପୂଜା କରିବାକୁ ନ ହେଲେ କାହାକୁ ଖାଇବାକୁ ଦେବାକୁ । ତାଙ୍କର ପରଂପରାରେ ସାଧନା ଓ ତୀର୍ଥଯାତ୍ରା ଥିଲେ ମଧ୍ୟ, ପରିବେଶର ଚାପରେ ତାହା କରିପାରି ନାହାନ୍ତି । ସମାଜ ଭାଙ୍ଗି ପଡ଼ୁଛି । ସେଥି ପାଇଁ ସେ ନିତାନ୍ତ ଦୁଃଖିତ । ସନ୍ତାନ ସନ୍ତତି ମଧ୍ୟ ନିତାନ୍ତ ଅଯୋଗ୍ୟ । ସେଥିରେ ସେ ମର୍ମାହତ ଓ ପ୍ରିୟମାଣ ହୋଇପଡ଼ି ଥାନ୍ତି । ଦଯ୍ୟା ଆସିଲା ଓ ପରୋକ୍ଷରେ ଦିଆଯାଇଥିବା ତାଙ୍କର ଦାନ ଗ୍ରହଣ କଲି । କୈଳାସରୁ ତାଙ୍କ ପାଇଁ କିଛି ପଥର ଓ ପାଣି ଆଣି-ବାକୁ ଅନୁରୋଧ କରିଥିଲେ ।

ତା ପର ଦିନ ଅନ୍ୟଜଣେ ବନ୍ଧୁ ସେହି ଉଦ୍ଦେଶ୍ୟରେ ଟଙ୍କାଟିଏ ଦେଇଥିଲେ ।

ଯାତ୍ରୀ ସୂଚନା କେନ୍ଦ୍ରରେ ଶୁଣିବାକୁ ପାଇଲି ଯେ ଚୀନା ମାନେ ଗୁଳିକରି ମାରୁଥିବା କଥା ଅମୂଳକ । ସମସ୍ୟା ହୋଇ ନାହିଁ ବୋଲି ଯିବା ଲୋକେ ଫେରି ନଥାନ୍ତି । ବସ୍ତୁତଃ ସେ ସମସ୍ୟାକୁ ଆଜ

ଟିକିଏ ଆଗରୁ ଯା ଆୟ କରୁଥାଏ । ଦରବାର, ଅଲମୋଡ଼ାଠାରୁ ଗୃହଖର୍ଚ୍ଚ ଟଙ୍କା । ଗୃହଲବ୍‌ଧ ବାଟ ଏକ ଶତ ତେର ମାଇଲ ।

ବେଲୁଡ ମଠରେ କିଛି ଖବର ମିଳିଲା ନାହିଁ । ଅଲ୍‌ମୋଡ଼ା ସ୍ଥିତ ମଠରୁ ଖବର ମିଳିଲା । କଲିକତାରେ ଗୋଟିଏ ଫ୍ଲେଟ ଟର୍ଚ୍ଚ-ଲାଇଟରେ ଧମକ ଲାଗିଲା । ଗୋଟିଏ ସ୍ପିରିଟ ଲେମ୍ପ ଓ ଗୋଟିଏ ସ୍ପିରିଟ ବୋତଲ କିଣିଲି ।

କଲିକତା ଛାଡ଼ିଲି ଜୁନ୍ ୭ ତାରିଖ ବୁଧବାର ।

ସାତ ତାରିଖ ବୁଧବାର ଦିନ କଲିକତା ଛାଡ଼ିଲି । ତାରକେଶ୍ୱର ଏକ୍ସପ୍ରେସର ଗୃହର ବସ୍‌ରେ ବସାଇବାକୁ ଆସି କହିଲା—

'ଜୟ କୈଳାସ ପତିଙ୍କର ଜୟ' ।

ବସରେ ଖୁବ୍ ଭିଡ଼ । ପରେ ପରେ ଜଣେ ଓହ୍ଲାଇଲେ ଓ ମୋତେ ଜଣେ ଭଦ୍ରଲୋକ ବସିବା ପାଇଁ କହିଲେ । ଭଗବାନଙ୍କ ଅସୀମ ଦୟା ।

ମାୟା ବଡ଼ ଭଲ—ଦାନ୍ତରେ ଧରିବ; ରାଗଥିଲେ ମୂଷାକୁ ଧରିଲା ଭଳି, କିନ୍ତୁ ଦୟା ଥିଲେ ଛୁଆକୁ ଧରିଲା ଭଳି ।

ମୋ ବିଛଣାକୁ ଛୁଇଁ କଣ୍ଡକ୍ଟର ଗୃହଲିଗଲା । ପରେ ଆସି କହିଲା—

'ଯଦି କିଏ ଆସି ପଚାରେ "ମୁଁ ଟିକେଟ ମାଗିନି" ବୋଲି କହିବ' ।

ତାର ମଧ୍ୟ ଦୟା ।

ରୁଷ୍ଟାଙ୍କୁ କାମାନ୍ ସକଳାନଭିଷ୍ଟାନ୍
ତ୍ୱାମାଶ୍ରିତାନାଂ ନ ବିପନ୍ନରାଣାଂ
ତ୍ୱାମାଶ୍ରିତା ହ୍ୟାଶ୍ରୟତାଂ ପ୍ରୟାନ୍ତି ॥

× × × ×

ଆରେ ଏ କଣ ? ବସ୍‌ର ଅଟକ ଗଲା । ଚତୁର୍ଦ୍ଦିଗ ଖାଲି ଗାଡ଼ିମୟ । ଧକ୍କାରେ, ତା ଉପରକୁ ଧାଡ଼ ବନ୍ଦି ଚାଲିଛି । ଗାଡ଼ିଗୁଡ଼ିକ ପାଖଦେଇ ଲୋକଙ୍କର ସୁଅ ଛୁଟିଛି--ଷ୍ଟେସନ ଆଡ଼େ । ହାଓଡ଼ା ଷ୍ଟେସନଠାରେ ଅଚଳ ଅବସ୍ଥା--ଟ୍ରାଫିକ ଯାମ !

ଦୁଃସାହସିକ କର୍ମପାଇଁ ଲୋଡ଼ା ମାନସିକ ପ୍ରସ୍ତୁତି । ସମୟ ଅପେକ୍ଷା କରେ ନାହିଁ । ତଟସ୍ଥ ନ ହୋଇ, ପ୍ରକୃତସ୍ଥ ହୋଇ କାର୍ଯ୍ୟ କରିବାକୁ ହେବ ।

ପ୍ରାୟ ଗାଡ଼ି ଛାଡ଼ିବା ସମୟ । ଧଡ଼ ଧାଡ଼ ସବୁ ଓହ୍ଲାଇ ପଡ଼ିଲି । ଧାଇଁଲି ଷ୍ଟେସନ ଦିଗକୁ । ଅପେକ୍ଷିକ ଭାବରେ, ମନୁଷ୍ୟ ଗତିର ଲୋକଙ୍କୁ କଟେଇ ଧାଇଁଲି । ମାଇଲଏ ଖଣ୍ଡେ ଧାଇଁବାକୁ ପଡ଼ିଲା । ପ୍ଲାଟଫାରମ୍‌ରେ ପହଞ୍ଚି ଦେଖିଲି ଗାଡ଼ି ଛାଡ଼ିବା ଉପରେ । ବଗି ସାମନା ଲେଖା ଦେଖି ଦେଖି ଇନ୍‌ଜିନ୍ ପଟେ ଧାଇଁଲି । ବଗିକୁ ଠାବ କଲି । ପଶିବାକୁ ଯାଉଛି, କିଏ ଦୂରରୁ ପାଟି ଶୁଭିଲା—

'ଏଇ ଏଇ ଏଟା ରିଜର୍ଭ ବଗି' ।

କହିଲି—ମୁଁ ମଧ୍ୟ ରିଜର୍ଭ କରିଛି ।

ସେ ଥିଲେ ବର୍ଗି କଣ୍ଡକ୍ଟର । ନମ୍ବର କହି, ଅନୁମତି ପାଇ ଗାଡ଼ି ଭିତରେ ଚଢ଼ିଲି । ମୋର ବେଶଭୂଷା ବା ଚରିତ୍ରଗତ ଭାବ ହେତୁ ତାଙ୍କର ସନ୍ଦେହ ହୋଇଥିଲା ।

ଗାଡ଼ି ଚାଲିଲା—ବାଃ ରେ ଭଗବାନ-ଯାତ୍ରାଟା ସରଗରମ ହେବ । ବଗିଟା ଥିଲା ଗୋଟେ ଜନତା ବଗି । ମୋର ଜାଗା ଥିଲା ଧାରକୁ-ଗୋଟେ ସିଟ୍ । ପ୍ରାରମ୍ଭିକ ସହାସ୍ୟ ସମ୍ଭାଷଣ କରି, ଦୁଇପାଖର ଦୁଇଜଣଙ୍କଠୁଁ ଅନୁମତି ନେଇ ବସିଲି । ସମ୍ଭାଷଣର ପ୍ରତ୍ୟୁତ୍ତରଟା ଥିଲା ନମ୍ରପଟ । ମେରୁଦଣ୍ଡଗ୍ରୀବା ସଳଖି ବସିଥିଲେ । ସତେକି ସେମାନେ ମୋର ଜାଗ୍ରତ ପ୍ରହରୀ । ଫରଷିତ ବଗିର ପରିବେଶ ସେମାନଙ୍କ ସାଧାରଣ ଜୀବନର ମାନର ଉପରେ ।

ଡାହାଣ ପଟକୁ ଝରକାକୁ ଲାଗି ବସିଥିଲେ ଜଣେ କାଶ୍ମୀରୀ; ନିଷ୍କପଟ, ବିନମ୍ର ଓ ନିର୍ମଳ ଭାବ, ପଣ୍ଡିତ । ବାଁପଟକୁ ଥିଲେ ଉତ୍ତର ପ୍ରଦେଶର ଜଣେ ଖଟିଖିଆ-ଖାଟେଣି ତାର ଦେହସୁଦ୍ଧା । ଦେହଟାଣ ଓ ହୃଦୟ ନରମ । କଥା କହେ କମ୍ଭ ଚଲା ଶୂନ୍ୟ । ଆଖି ଆଗରେ ଝଲସି ଗଲା, ଅଦୃଶ୍ୟ ହାତର ନିର୍ଦ୍ଦେଶ । 'ବିନମ୍ର ଭାବ ସହିତ ନିର୍ମଳ ଜ୍ଞାନ-ପୂତ କଠୋର କର୍ମ କରି ଯାତ୍ରା କରିବୁ" ।

ମାନି ନେଲି ।

ତହଁ ଯାଉଁ ଯାଉଁ ପହଞ୍ଚି ଗଲେ ହେଲା ।

ଅଖି ପଡ଼ିଲା ସାମନା ବେଞ୍ଚ ଉପରେ । ବସିଥିଲେ ଗୋଟିଏ ବଙ୍ଗାଳି ପରିବାର । ପରିବାରଟି କହିଲେ—ଜଣେ ପ୍ରୌଢ଼ା, ଜଣେ କମ ବୟସ୍କା ସ୍ତ୍ରୀ, ଦୁଇଟି ବାଳକ ଓ ପିଲାଟିଏ ଧରି ଜଣେ ଯୁବତୀ । ଯୁବତୀ ଜଣକ ପ୍ଲାଟଫାରମ କଡ଼କୁ ବସିଥିଲେ । ଆଉ-

ପଡ଼ୁ, ପ୍ଲାଟଫର୍ମ ଧାରରେ ଗାଡ଼ି ଝରକାକୁ ଲାଗି ଥିଲେ ଜଣେ ଯୁବକ । ବସି, ପଶ୍ଚିମଦିଗକୁ ଠେଲିହୋଇ ନେଇଯାଉଛି-ଘଣ୍ଟା ବାଜିଲା । ଗାର୍ଡ଼ ସିଟି ଦେଲେ । ଝରକାକୁ ଆଉଜିଥିବା ଯୁବକ କହିଲା—

ଆଜି କେତେ ଡେରି, ଏଇତ ସମସ୍ତ ହୋଇଗଲା ।

ବ୍ୟଥାଭରା କଥା । ଯୁବତୀ ଜଣକ ପିଲାଟିକୁ ଖେଳେଇବା ଢଙ୍ଗ କରି କହିଲା—

'ପିଲାଟି କମିତ ଗୁଲୁଗୁଲିଆ ହୋଇଛି ଦେଖନ୍ତୁ' ! ଆଖି ଛଳଛଳ କରି ଗୋଟିଏ ବାଙ୍କ ଚାହାଣି ପରେ ଗାଡ଼ି ଆସ୍ଥାନ ଛାଡ଼ିଲା ।

ଗାଡ଼ି ଚାଲିଲା । ସେ ଦୁଇଜଣଙ୍କର ଭିତର ଝଙ୍କାର ମୋର ମୁଁ ଅନୁଭବ କଲି । ମିଳନ ସକାଶେ ମୁଁ ବ୍ୟାକୁଳ ହୋଇ ଉଠିଲି । ମନକୁ ଆଶ୍ୱାସନା ଦେଲି--

ସମସ୍ତ ତ ହୋଇଗଲା, ଆଜି କେତେ ଡେରି ; ଡେରି ତ ହାଣୁଛି-ହେବହିଁ ହେବ ।

କଲିକତାର ଆଲୋକରଶ୍ମି କ୍ରମେ ଦୂରେଇ ଗଲା । ବାହାରେ ଘନ ଅନ୍ଧାର । ଅନନ୍ତମୟୀ ଢାଲୀ ମାର କୋଳରେ ତାକୁ ଆଶ୍ରିତ ମନେ କଲି ।

ସେ ଘରବାରଟି ସହଜ ପରିଚୟ ହେଲା । ଯେଉଁ ବାଳକଟି ପ୍ଲାଟଫାରମ କଡ଼କୁ ବସିଥିଲା ସେ କଲିକତା ପାଖରେ, ହେନ-ନଗରରେ ଓହ୍ଲାଇଥିଲା । ସେ ସ୍ତ୍ରୀଟିର ଝିଅ । ବାହାରେ ଥିବା ନେଜଟି ଭଗ୍ନ ଜୋଡ଼ି । ଲଭ୍ ମେରେଜ ବା ଗାନ୍ଧର୍ବ ବିବାହ

କରୁଥନ୍ତି । ବାହାଘରଂ ନଙ୍କଟରେ । ସେଠାରୁ ବେରେଲ ଅର-ପଟରେ ଥିବା ପ୍ରୌଢ଼ାର ବଡ଼ ପୁଅ ପାଖକୁ ଯାଉଥନ୍ତି ।

ଅଉ ସ୍ତ୍ରୀଟି ତାର ବୋହୂ, ଦ୍ୱିତୀୟ ପୁଅର ସ୍ତ୍ରୀ । ମା ଘର ବାଲିପଦାରେ । ଶାଶୁ କେମିତି ଏ ଖବରଟି ଦେଇଛନ୍ତି, ବୋହୂଟି ତୁହିଁ ରହିବାକୁ ଯେତେବେଳେ ସେ ଓଡ଼ିଆରେ କଥାବାର୍ତ୍ତା ହେବାପାଇଁ ଇଚ୍ଛୁକ । ଶାଶୁ ବୁଝି ନ ପାରିଲେ କଣ ଭାବିବେ ବୋଲି ମୁଁ ତା ସହିତ କଥା ହୋଇ ନଥିଲି ।

ଦେଖିଲି, ପ୍ରୌଢ଼ାଟି ଭାରି ବୁଦ୍ଧିମତୀ । କହିଲା ଯେ ସେ ତା ସ୍ୱାମୀଙ୍କ ମହାନ ଦକ୍ଷିଣ ମୂଳ ଏସିଆ ବୁଲିଛନ୍ତି । ଯୁଦ୍ଧ ସମୟର କଥା । ସେ ହେତୁ ସେ ଏଡ଼ା ଅଭିଜ୍ଞତାରେ ନାନା କହିପାରୁଛନ୍ତି । ଝିଅ କୋଉଁ ପ୍ରେମାଳାପ ଚଳ ସମୟରେ ସେ ମୁହିଁ ଆଉଜେଇ ଥିଲା । ଅସନ୍ନ ସାଲଠାରେ ବୋହୂକୁ କଣ କହିଲା । ସେ ଧାଇଁଲା ଦୁଆର ପାଖକୁ । ବାଟ ଆବୋରି ଠିଆ ହୋଇ କାହାକୁ ଖୋଜିଲା । ମୁଁ ଭାବୁଥିଲି ଠିଆ ହୋଇଥିଲି, ବାଟ ଛାଡ଼ିଲେ ବାହାରକୁ ଯିବ ବୋଲି । ଜଣେ ଛୁଟି ଆସିଲା । ତୃତୀୟପକୁ ଥରେ ଆଖି ବୁଲାଇଲା । ମୋତେ ନଜରକୁ ନ ନେଇ, ମୁଣ୍ଡ ଶୂନ୍ୟ ଆକାଶକୁ ଚାହିଁ, 'ଏଇ ଏଥର କୁଆଡେ ଯିବୁ' ଭଙ୍ଗି କରି ଦୁଇ ଗାଲରେ ଧଡଧାଡ଼ ଚାରି ପୁଞ୍ଜା ଚାପଡ଼ା ବଜାଇ କୁଣ୍ଢାଇ ପକାଇଲା । ସେଠୁ ଆସି ପ୍ରୌଢ଼ାଟି ସହିତ ମାମୁଲି କଥାବାର୍ତ୍ତା କରିଥିଲା । ପରେ ବୁଝିଲି ଯେ ସେ ପ୍ରୌଢ଼ାଟିର ଦ୍ୱିତୀୟ ପୁଅ ।

ପ୍ରୌଢ଼ାଟି ଭାରି ଚତୁର । ଧର୍ମର ବନ୍ଧନୀ ଭିତରେ ଝିଅ ଓ

ବୋଦ୍ଧାଙ୍କୁ ସମବେଦନା ଅନୁଭବ କରି ସୁବିଧା ସୁଯୋଗ ଓ ବୁଦ୍ଧି ଦେଇଛୁ ଯୌବନ ଉପଭୋଗ କରିବା ପାଇଁ ।

ଦୁଇଜଣ ବାଳକ ପ୍ରୌଢ଼ାଟିର ପୁଅ—ସ୍କୁଲଯେ ପଢ଼ନ୍ତି ।

ଗାଡ଼ି ନଦୀ ମାଡ଼ି ଆସିଲା । ଦୁଇ ପଟେ ଦୁଇ ଜଣ ମୂର୍ତ୍ତି ସାଜି ବସିଥାନ୍ତି । ସାମନା ବେଞ୍ଚରେ ସମସ୍ତେ ଅବୁଡ଼ା ଖାବୁଡ଼ା ହୋଇ ଶୋଇଥାନ୍ତି । ଦୁଇ ବେଞ୍ଚ ମଝିରେ କମ୍ବଳ ପାରି ନିଦ୍ରା ଦେବୀର ଆଶ୍ରୟ ନେଲି । ପ୍ରାଣ ଗଲେ; ଜ୍ଞାନ ଗଲେ ସବୁ ଜାଗା ସମାନ ଓ ସାଧକଟି ପ୍ରାଣ ରହି ଜ୍ଞାନ ଥିଲେ ଭେଦ ଭାବ ନଥାଏ । କେବଳ ଲକ୍ଷ ହେଲା ମୂଳ । ସେଥିରେ ରହିବା ଅଟଳ । ବାକି ସବୁ ଭଗବାନଙ୍କ ହାତରେ ।

ସକାଳ ହେଲା । ଗାଡ଼ି ଛୁଟୁଛି । ସହଜରେ, ଅନାୟାସରେ ଧୀର ସୁସ୍ଥିରେ ଗଡ଼ୁଥାଏ ସମୟ । ଗାଡ଼ି ଓ ମୁଁ ଆଗେଇ ଚାଲିଥାଉଁ । ତିନିଙ୍କ ଭିତରେ ସମ୍ପର୍କ । ଅଜଣା ସାଇଜର କୁହୁକ, କୈଳାସ ସେତିକି ପାଖେଇ ଆସୁଥାଏ, ଗାଡ଼ି ଯେତିକି ଗଡୁଥାଏ । କେ ଜାଣେ କଣ ହେବକି । ଦେଖାଯାଉ ।

ଚିନ୍ତାର ସୁଅର ସହଜ ଗତିରେ ସୁଖ, ମନ- ସରଳ ସରସ ଥିଲେ ଏହା ସୁଲଭ ହୋଇଥାଏ । ଦେହଟି ଥାଏ ତାର ଚାହିଦାଟି । ତାର ଚାହିଦା ତାକୁ ଦେବାକୁ ହେବ । ନ ଦେଲେ ସେ ବିଘ୍ନ ଦେଖାଇ କଷ୍ଟ ଦେବ ଓ ଶେଷରେ ସେହି କେବଳ ହେବ ଚିନ୍ତାର ବିଷୟ ।

ମୋଗଲସମ୍ରାଟଙ୍କଠାରେ ଯେ ଭୋଜନ କଲା । ଦେହର ଗୃହିଦା ପୂରଣ ହେଲା, ଆଖି ପଡ଼ିଲା । ଯେଉଁଠି ଗହଳି ଥିଲା କୌତୂହଳ ସେଠାକୁ ଟାଣିନେଲା । ଯାଇ ଦେଖେ ଗୋଟାଏ ଲୋକକୁ ଧେଇ-ଚନ୍ଦ୍ର । ଦେହ ତାର ହୃଷ୍ଟ ପୁଷ୍ଟ । ବେଶ ଫରଚ୍ଛ ଚେହେରା । ସର୍ବାଙ୍ଗ ତେଲ ସରସର । ମୁଣ୍ଡରୁ ତେଲ ବୋହି ପଡ଼ୁଥାଏ । ହାତରେ ଧରିଥାଏ ଗୋଟେ ଭାଠାରୁ ଟିକଏ ବଡ଼ ଲୁହାର ଶାବଳ । ଅର୍ଦ୍ଧଚନ୍ଦ୍ରାକାର ଲୁହା ଖଣ୍ଡକୁ ସେ ଶାବଳ ସହିତ ଯୋଡ଼ ତ୍ରିଶୂଳ ଆକାରରେ ଧରିଥାଏ ।

ଶୁଣିଲା ସେ ଗୋଟାଏ ପାଗଳ । ରେଳ ଷ୍ଟେସନ ଘୋରମୋନ ଥିଲା । କଣ ମନ ହେଲା, ଚୃକଟା ଘୁଞ୍ଚି ବୁଲୁଛି ।

ଭାବିଲା--'ମୁଁ ମଧ୍ୟ କଣ ଗୋଟାଏ ଏହିପରି ପାଗଳ ?'

ଖାପଛଡ଼ା ହୋଇ ଭୁଲକାର୍ଯ୍ୟ କଲେ ପାଗଳ କୁହାଯାଏ । ଅଜ୍ଞାନ ହେତୁ କାର୍ଯ୍ୟ ଖାପଛଡ଼ା ହୋଇଥାଏ । ଜ୍ଞାନ ନଥିବା ହେତୁ ପାଗଳ-ସେ କଣ କରେ ଜାଣି ପାରୁ ନ ଥାଏ । କୈଳାସ ଦର୍ଶନରେ ବ୍ରତୀ ହୋଇ, ଅଟଳ ସଙ୍କଳ୍ପ ନେଇ ଲକ୍ଷ ହାସଲ ପାଇଁ ମୁଁ ଆଗେଇଛି । ଫଳାଫଳ ପାଇଁ ମୁଁ ପ୍ରସ୍ତୁତ ଅଛି । ଆଗେଇବାଟା ଯଦି ଖାପଛଡ଼ା, ଦୋଷ ହେଉଛି ପଶ୍ଚାତ୍‌ବେଶର । ପଛରୁ ଟାଣିବା ଖାପରେ ପକାଇବା ସମାନ ନୁହେଁ । ଗାହା ହେଲେ ସେଇମାନେ ହେଲେ ଖାପଛଡ଼ା ଓ ସେଇମାନେ ହିଁ ପାଗଳ । ଚାଲ, ଚାଲ ।

ସେ ପରିବାରଟି ସହିତ ଘନିଷ୍ଠତା ବଢ଼ି ଉଠିଲା । ବେଳେ ବେଳେ ଚା, ଜଳଖିଆ ଓ ପାଣି ଆଣିବାକୁ ପଡ଼ୁଥାଏ । ସରକାରିତ

ବଡ଼ି ହେଲେ ମଧ୍ୟ ସେମାନଙ୍କୁ ଭିତରୁ ରକ୍ଷା କରିବାକୁ ପଡ଼େ । ଛାଣିଠାରେ ଦଳେ ତାମିଲଭାଷୀ ସ୍ତ୍ରୀ ଉଠିଲେ । ସାମନାରେ ଖାଲି ଥିବାରୁ ଜଣେ ସେଠାରେ ବସିବାକୁ ଚାହିଁଲା । ମୁଁ ମନା କରିବାରୁ ଆଖି ତରାଟି ତେଲୁଗୁରେ 'ଧର୍ମ ଅଛୁ ଅଣ୍ଣା ଧର୍ମ ଅଛୁ' କହି ଚାଲି ଗଲା । ଶୁଣି, ମନ ପ୍ରାଣ ବଦଳି ଗଲା । ତା ସଙ୍ଗେ ସଙ୍ଗେ ମନର ପ୍ରଶାନ୍ତତା ଓ ଉତ୍ଫୁଲ୍ଲତା ପୂର୍ବ ଯାତ୍ରାକାଳ ପାଇଁ ଉଭେଇ ଗଲା । ମନରେ ରହିଲା ଖାଲି ଦୁଶ୍ଚିନ୍ତା ।

'କପର ଯିବ ? କଣ ହେବ ?

ଦୈବଚକ୍ର ହୋଇ ଆଗେଇଲା ।

ଭାବିଲି କଣ ବାହୁଡ଼ି ଯିବ ?

ପ୍ରଶ୍ନ ଆସିଲା-ସାଧନା ଛାଡ଼ି, ଧନ, ଯୌବନ, ମାନ ମର୍ଯ୍ୟାଦାରେ ମଧ୍ୟ ଭୋଗ କଲେ କଣ ସୁଖ ପାଇବ ? ନା, କିଏ ପାଇଛି ?

ଉତ୍ତର ମିଳିଲା-ନା କେବଳ ଜ୍ଞାନରେହିଁ ଜୀବନର ସାର୍ଥକତା । ସାଧନା ବିନା ଜୀବନ ବ୍ୟର୍ଥ, ଯିବାକୁ ହେବ । ଯାହା ହେଲେ ହେଉ । ଭୋଗ ପିପାସାଠାରୁ ଜ୍ଞାନ ପିପାସା ବଳପଡ଼ି ଟାଣି ନେଇଥିଲା ।

ଗାଡ଼ି ବନାରସ ଟପି ଯାଇଥାଏ । ବଗି ଭିତରେ ଦେଖିଲି ଯେ ଦଳେ ଯୁବକ ତାସ ଖେଳୁଥାନ୍ତି । ପଚାରି ବୁଝିଲି ଯେ ସେମାନେ କେଦାରନାଥ ଓ ବଦ୍ରୀନାଥକୁ ଯାତ୍ରା କରୁଛନ୍ତି । ମୋର କୈଳାସ ଯାତ୍ରା ଲକ୍ଷ ଥିବା ଶୁଣି ସେମାନେ ହସିଲେ, ନା ପସନ୍ଦ କଲେ । କହିଲେ ଯେ ସେ ସମୟର ରାଜନୈତିକ ପରିସ୍ଥିତିରେ,

ଛଡ଼ାଇ ଯିବା ବୁଦ୍ଧିମାନର କାର୍ଯ୍ୟ ହେବ ନାହିଁ । ସେମାନଙ୍କର ସାଙ୍ଗରେ ଯିବାକୁ ଅନୁରୋଧ କଲେ । ମନା କଲି ।

ଆଜ ଜଣେ କେରଳ ଯୁବକ ବସିଥିଲେ । ସେ କେବଳ କେଦାରନାଥ ଯାଆନ୍ତି । ବାପା ମାଁ ଝାଝାନଗରରେ ଚାକିରି କରନ୍ତି । ଦୁଇ ବର୍ଷ ତଳେ ସେମାନେ କେଦାର-ବଦ୍ରୀ ତୀର୍ଥ କରି ଯାଇ ଥିଲେ । କିନ୍ତୁ ଏଥର ସେ ଯାଉଥାନ୍ତି ତୀର୍ଥାଟନରେ ନୁହେଁ, କେବଳ କେଦାରନାଥରେ ବାରମାସ ଯାଇ ରହୁଥିବା ଜଣେ ସାଧୁଙ୍କ ସହିତ ସାକ୍ଷାତ କରିବା ପାଇଁ ।

## ଫଳାହାରୀ ବାବା

ମନେ ପଡ଼ିଲା ସେହି ଫଲ୍‌ହାରି ବାବା କଥା । ସେ ଦିନ ସନ୍ଧ୍ୟାରେ କେଦାରନାଥରେ ପହଞ୍ଚିଥିଲି । ବେଳ ବୁଡ଼ି ଯାଇଥିଲା । ଜଣେ ଗଣ୍ଡା ଗୋଟିଏ ଧର୍ମଶାଳାରେ ରହିବା ବନ୍ଦୋବସ୍ତ କରି ଦୁଇଟି ରେକେଇ ଦେଇ ଚାଲିଗଲା । ଗୋଟିଏ ପାରିବା ପାଇଁ ଓ ଆରଟି ଘୋଡ଼ାଇ ହେବା ପାଇଁ କହିଲା । ବର୍ତ୍ତମାନ ଆରାମ କରନ୍ତୁ, ସକାଳେ ପୂଜା ଓ ଦର୍ଶନ କରିବା ।

ସକାଳ ହେଲା । ମନ୍ଦାକିନୀରେ ଗାଧୋଇ ବିଧି ପୂର୍ବକ ପୂଜା ସାରିଲା ପରେ କହିଲା—

'ଏଠି ଜଣେ ସାଧୁ ଅଛନ୍ତି, ତାଙ୍କୁ ଦର୍ଶନ କରିଯିବା ଚାଲ' ।

ମୁଁ କହିଲି—'ମୋର ସାଧୁ ଫାଧୁ କିଛି ଦରକାର ନାହିଁ । ମୁଁ ଆସିଛି ତୀର୍ଥାଟନ ଆଶାରେ; ହିମାଳୟ ଦର୍ଶନ କରିବା ପାଇଁ ।

ସାଧୁ, ମନ୍ଦିର ପ୍ରତି ମୋର ବିଶେଷ ଭକ୍ତି ନଥିଲା । ଯାହା କିଛି ଥିଲା, ସେଥିରେ ପଣ୍ଡାର ସାହାଯ୍ୟ ନେଲେ ଅଯଥା ଅତି-ରିକ୍ତ ଭାବେ ଶୋଷିତ ହେବି ମନେ କରି, ତାର ସେହି ଆଗ୍ରହକୁ ଶିଥିଳ କରିବା ଉଦ୍ଦେଶ୍ୟରେ ସେହିପରି କହୁଥିଲି । ପଣ୍ଡାଙ୍କ ସହିତ ତାଙ୍କ କବଳରୁ ରକ୍ଷା ପାଇବା ପାଇଁ, ଅନେକ ସମୟରେ ମୁଁ ଏହି ପନ୍ଥା ଗ୍ରହଣ କରେଥାଏ । ସେହି ସାଧୁର ଦର୍ଶନ ତୀର୍ଥ ଦର୍ଶନର ଗୋଟିଏ ବିଶେଷ ଅଙ୍ଗ ବୋଲି ଯୁକ୍ତି ବାଢ଼ିବାରୁ ଓ ଛ ଅଣା ଠାରୁ ଅଧିକ ଖର୍ଚ୍ଚ ହେବନାହିଁ ବୋଲି କହିବା ପରେ ଆମେ ସେ ସାଧୁଙ୍କୁ ଦର୍ଶନ କରିବା ପାଇଁ ବାହାରିଲୁ ।

ଗୋଟିଏ ଗୁଡ଼ଆ (ହାଲୁଆଇ) ଦୋକାନରୁ ଛ ଅଣାର ବରଫି କିଣି ସାଧୁଙ୍କ ପାଖକୁ ଗଲୁ । ଆମେ ପହଞ୍ଚିବା ପୂର୍ବରୁ ସେଠାରେ ଅନ୍ୟ ଦୁଇଜଣ ଥିଲେ ।

ଜଣେ ହେଲା—ଗେରୁଆ ଧୋତି ପଞ୍ଜାବି ପିନ୍ଧିଥିବା ଆମେରିକାନ୍ ଯୁବକ, ଆଉ ଜଣକ ହେଲା—ହାଫ୍ ପେଣ୍ଟ, କମିଜ, ସ୍ଵେଟର ପିନ୍ଧିଥିବା ଜଣେ ପ୍ରୌଢ଼—ଅନୁବାଦ କାରୀ ।

ବରଫିଟା ଭେଟି ଦେଇ, ନମସ୍କାର କରି ବସିଲି । ବାବାଜୀଙ୍କ ସାମନାରେ ତାଙ୍କର ଷ୍ଟୋଭ ଜଳୁଅଛି, ପଛରେ ପାଞ୍ଚହାତ ଦୂରରେ—ମନ୍ଦିର ଆଗର ମଣ୍ଡପ । ମଣ୍ଡପ ଉପରେ ଅଷ୍ଟ ପଥରର ବୃଷଭ । ମୁଁ ମୁଣ୍ଡିଆ ମାରି ସାରିବା ପରେ, ସେ ମୋତେ କୋମଳ ଦୃଷ୍ଟିରେ ବସିବାକୁ ଇଙ୍ଗିତ କରି, ସେହି ଆମେରିକାନ୍ ସାଧୁ ସହିତ କଥାବାର୍ତ୍ତା କରିବାରେ ଲାଗିଲେ ।

ସାଧୁ ପଚ୍ଚାରିଲେ—ମୁଁ ଆପଣଙ୍କ ଆଶ୍ରମରେ ଥିବା ସମୟରେ, ଶୁଣି ତାଙ୍କୁ ପାଇଥିଲି ଯେ କେଦାରନାଥର ଏହି ପଥରର ବୃଷଭ କଥା କହେ । କିନ୍ତୁ ଆସି ଦେଖେ ସେହି ପଥର କାହିଁ କଥା ତ କହୁ ନାହିଁ । ଏଥିରେ ଧର୍ମ ପ୍ରତି ବିଶ୍ୱାସ ଭାଙ୍ଗି ଯାଉଛି । ଧର୍ମ ବା କଣ ?

ଉତ୍ତରରେ ବାବାଜୀ କହିଲେ ଯେ ଏହା ସୂକ୍ଷ୍ମ ଚକ୍ଷୁର ଅଭାବ ହେତୁ ଘଟୁଛି । ସେ ସେଠି ବର୍ଷରେ ବାରମାସ ଯାଇ ରହନ୍ତି । ଯେତେବେଳେ ମନୁଷ୍ୟମାନେ ଛ'ଟା ଗରମ ମାସ ଶେଷରେ, ଶୀତ ଦିନ ଆସିଲେ, ମନ୍ଦିରକୁ ଛାଡ଼ି ଚାଲି ଯାଆନ୍ତି, ବାକୀ ଥଣ୍ଡା ଛ ମାସ ଦେବତାମାନେ ଏଠି ଆସି ପୂଜା ଅର୍ଚ୍ଚନା କରନ୍ତି । ସେ ନିଜେ ସୂକ୍ଷ୍ମ ଚକ୍ଷୁ ଥିବା ହେତୁ ଦେଖିଛନ୍ତି । ସେ ସମୟରେ ମୁଁ ଭାବିଲି—

'ଏ ଜଣେ ଭଣ୍ଡ । ପଦ୍ମାଶ୍ରୀ କରିଛି ବୋଲି ଚାଲାକରେ କଥା କହୁଛି ।'

ହଠାତ୍ ବୁଲିପଡ଼ି ସେ ମୋତେ ତୀକ୍ଷ୍ଣ ଦୃଷ୍ଟିରେ ଚାହିଁଲେ । ବୁଝିବାର ବାକି ରହିଲା ନାହିଁ ଯେ, ସେ ମନର କଥାକୁ ଜାଣି ପାରିଛନ୍ତି । ନିଜକୁ ସଂଶୋଧନ କଲି । ଫେରିପଡ଼ି ସେ କହିବାକୁ ଲାଗିଲେ ଯେ, ସେହି ସୂକ୍ଷ୍ମ ଚକ୍ଷୁ ପାଇଁ ସାଧନା ଦରକାର । ସେ ଆହୁରି କହିଲେ ଯେ ସେ ଲେଖି ଜାଣନ୍ତି ନାହିଁ, ଦସ୍ତକ ଦେବେ ଟିପ ଚିହ୍ନରେ; କିନ୍ତୁ ଏହି ଦେହରେ ଚାରି ବେଦର ଅନୁଭୂତି ହୋଇଛି । ମୁଁ ସେଠୁ ବୁଝିଲି ଯେ ବେଦର ମନ୍ତ୍ରଗୁଡ଼ିକ ମନୁଷ୍ୟର ଅନୁଭୂତିପାଇଁ ହୋଇଛି ବା ମନୁଷ୍ୟର ସମ୍ପ୍ରଦାୟ ଅନୁଭୂତିଗୁଡ଼ିକୁ ବେଦରେ ସଙ୍କଳିତ କରାଯାଇଛି । ଇଏ ପ୍ରକୃତିରେ ସାଧନାର ଫଳ

ପାରନ୍ତି ଓ ସେ ସାଧୁଙ୍କ ଅଜ୍ଞତା ଦୂର କରିବା ପାଇଁ, ଶ୍ରଦ୍ଧା ବଢ଼ାଇବା ପାଇଁ ନିଜର ଅନୁଭୂତି ବଖାଣୁଛନ୍ତି । ଏଟା ବଢ଼ିମା ନୁହେଁ । ଆମେରିକାନ୍ ସାଧୁ ଗଲେ । ସେ ବୁଲିପଡ଼ି ମୋତେ ପଚାରିଲେ—

ତୁମର ଘର କେଉଁଠି ?

ତାଙ୍କର ବା ମୋର ସେଥିରେ ଯାଏ ଆସେ କେତେ ? ଓ 'କୌଣସି ପ୍ରକାରେ ଗୋଟିଏ ଉତ୍ତର ଦେଲେ ହେଲା' ଭାବରେ କହିଲି—ଗଞ୍ଜାମ ।

ସେ କଣ ଜଗଦୀଶ ପାଖରେ ।

ମୁଁ ତ ଜଗଦୀଶ କଣ ଜାଣି ନ ଥିଲି । କହିଲି—

ହିଁ ହିଁ ଜଗନ୍ନାଥଙ୍କ ପାଖରେ ।

କାରଣ, ମୁଁ ଜାଣିଥିଲି ଯେ, ଜଗନ୍ନାଥ କହିଲେ ମୋଟା ମୋଟି ଓଡ଼ିଶାକୁ ବୁଝାଏ । ଏଥିରୁ ମୋର ଅଜ୍ଞତା ଜଣା ଯାଉଛି ବୋଲି ମୋର ମନେ ହୁଏ ନାହିଁ । କିନ୍ତୁ ସେ ବୁଝି କହିଲେ--

ଜଗନ୍ନାଥଙ୍କୁ ହିଁ ଜଗଦୀଶ କୁହାଯାଏ ।

ଆଶ୍ଚର୍ଯ୍ୟ ଲାଗିଲା, ଲୋକଟିର ଜ୍ଞାନ ଦେଖି । ଲୋକଟି ବସିଛି ଏଗାର ହଜାର ସାତଶହ ଫୁଟ ଉପରେ । ଜନ ବସତି ଠାରୁ ବହୁ ଦୂରରେ । କେତେଜଣ ବର୍ଷ ଧରି ଭଗବାନଙ୍କୁ ଲକ୍ଷ କରି ଏକ ମନପ୍ରାଣରେ ଚିତ୍ତ ନିବେଶ କରିଛି । କିନ୍ତୁ ଏତ ସାଧାରଣ

ସ୍ଥାନରେ ଖୁବ୍ ପାରଙ୍ଗମ । ମୁଁ ଏଠେ ପାଠ ପଢ଼ି, ଏଠେ ବୁଲି, ଓଡ଼ିଶାର ପୁରୀ ଜିଲ୍ଲା ଓ ତାହା ସଲଗ୍ନ କେତୋଟି ଜିଲ୍ଲା ଛଡ଼ା ଅନ୍ୟ ଜିଲ୍ଲାର ନାମ କହି ପାରିବି ନାହିଁ । କାଶୀକୁ ଲାଗି କେଉଁ ଜିଲ୍ଲା ଅଛି, ଅଯୋଧ୍ୟା କେଉଁ ଜିଲ୍ଲାରେ ଏହା ମନେ ରଖିବା ମୋ ପକ୍ଷରେ ଖୁବ୍ କଷ୍ଟ । ଜାଗେଶ୍ୱର ମଧ୍ୟ । ମୁକ୍ତ ଆହୁରି ନଇଁଗଲା । ଶିବାନନ୍ଦଙ୍କର ଗୋଟିଏ କଥାରେ ପଢ଼ିବାକୁ ପାଇଥିଲି ଯେ ସେହି ପାଖରେ ଗୋଟିଏ ବସ୍ତ୍ରା ଦେଇ ପଞ୍ଚପାଣ୍ଡବ ସ୍ୱର୍ଗାରୋହଣ କରି-ଥିଲେ । ସ୍ୱର୍ଗରୋହଣ ଶୃଙ୍ଗ ବୋଲି ଗୋଟାଏ ଶୃଙ୍ଗ ସେଠି ଅଛି । ପାଣ୍ଡବଙ୍କ ପରେ ମଧ୍ୟ ଅନେକ ଲୋକ ସେହି ରାସ୍ତାରେ ଯାଇଛନ୍ତି ଓ ନିଜର ନାମ ଖୋଦିତ କରିଯାଇଛନ୍ତି । ମୋର ଇଚ୍ଛା ଥିଲା ସେହି ରାସ୍ତାର ପ୍ରାରମ୍ଭଟା ଟିକିଏ ଦେଖିବା ପାଇଁ—ଅନ୍ତତଃ ଜଣେ ଦୁଇ ଜଣଙ୍କର ଖୋଦିତ ହୋଇଥିବା ନାମ ।

ପଚାରିଲି—ସ୍ୱର୍ଗାରୋହଣ କେଉଁଠି ?

ପଲକ ପାଇଁ ତାଙ୍କର ଦୃଷ୍ଟି ଭଙ୍ଗି ପୋଲିସ ଜେରା କରିବାର ସମୟ ପରି ହୋଇଥିଲା ଓ ହାତ ଉଠାଇ ସେ ଗୋଟିଏ ଦିଗକୁ ଦେଖାଇ ଦେଲେ । ପରେ କହିଲେ—ଏଠାରେ ଶଙ୍କରାଚାର୍ଯ୍ୟଙ୍କ ସମାଧି ଅଛି, ଦର୍ଶନ କରିବ ।

ହିମାଳୟ ଦର୍ଶନର ପ୍ରେରଣା ମୁଁ ତାଙ୍କ ଜୀବନରୁ ନେଇ-ଥିଲି । ମୋର ଯୁକ୍ତି ଏଡ଼ାଇ ସେ ଜାଣିଲା ପରି କହିଲେ ଯେ, ସେଠା ପ୍ରକୃତରେ ତାଙ୍କର ସମାଧି । ମାନି ନେଲି । ଫେରି ସେ ଦିନ ସନ୍ଧ୍ୟାରେ ସମାଧି ଦେଖିଗଲି । ଜଣେ ସନ୍ନ୍ୟାସୀ ଆନୁଗତ୍ୟ ଦେଖାଇ ଦଣ୍ଡ ଟାଣୁଥାଏ । ସେ ଦିଗରେ ମନ ଲାଗିଲା ନାହିଁ ମୁଁ ଶିଖର ଆଡ଼େ ଦେଖି ଆରୋହଣର ବାଟ ଠିକ୍ କରିନେଲି । ପରଦିନ ସକାଳେ ଖୁବ୍ ଭଲକରି ପୂଜା ପାଠକରି, କବଚର

ପ୍ରୟୋଗ କରି, ଠେଙ୍ଗା ଧରି ବାହାରେ ପଡ଼ିଲି—ପ୍ରାୟ ଦିନ ଏଗାରଟାରେ ।

ମନ୍ଦିର ପାଖରେ ଗଲି । ଗପ୍ତାଟି କୁଡ଼ିଆ ଓ ମନ୍ଦିର ପାଖ-ଦେଇ ଲମ୍ବି ଯାଇଥାଏ । କୁଡ଼ିଆ ସାମନାରେ ଗଲା ସମୟରେ ଦେଖିଲି ଯେ ସେଟା ଭିତରୁ ବନ୍ଦ । 'ରକ୍ଷା ପାଇଲି, ନମସ୍କାର କରିବାକୁ ଯେ ପଡ଼ୁଥାନ୍ତା'—ଏଇଆ ଭାବି, ଗୁରୁ ଚାହାନ୍ତି ଝଟେ୍ ଆଗେଇଛୁ, ହଠାତ୍ କଣ୍ଠ ଶୁଣିବାକୁ ପାଇଲି । ପଛକୁ ବୁଲି ଇଙ୍ଗିତ କଲେ ପାଖକୁ ଯିବାକୁ । ଦୁଆରକୁ ଦେଖେକ ସେଟା ଗୁରୁ ପାଞ୍ଚ ଆଙ୍ଗୁଳି ଫାଙ୍କା । ଧରିନେଲି, ସେ ମୋତେ ନିରୁତେଇବା ପାଇଁ ସିଦ୍ଧି ପ୍ରୟୋଗ କରି ଏକ ପଲକରେ ଭିତରୁ ବାହାରକୁ ଆସିଛନ୍ତି । ସାଧାରଣତଃ ସେ ମଣ୍ଡପ ଓ ସୂର୍ଯ୍ୟକୁ ପିଠି କରି ବସିଥାନ୍ତି । କିନ୍ତୁ ବର୍ତ୍ତମାନ ମୋତେ ଓ ମନ୍ଦିରକୁ ମୁହଁ କରି ବସିଛନ୍ତି । ପାଇ ମୁଣ୍ଡିଆ ମାରିଲି । ଆଦର ସହକାରେ ବସିବାକୁ କହିଲେ— କୁଆଡ଼େ ଯାଉଥିଲ ?

ଦେଖିଲି, ମୋର ଅନୁମାନ ଠିକ୍ । ଭାବିଲି ଯେ ସେ ଯେତେ ବଡ଼ ହୁଅନ୍ତୁ, ମୁଁ ମୋର ସଙ୍କଳ୍ପରେ ଅଟଳ ରହିବି ! ସାଧୁ ଅପମାନ କରାଯାଏ ନା । ଆଜ୍ଞା ଅବଜ୍ଞା କରାଯାଏ ନା । ହେଲେ ବି, ସେ ଯଦି ଡାକିଲେ ଡାକିଲେ ଯାନ୍ତୁ ମୁଁ ପଛରେ ପଛରେ ଯିବି ।

କହିଲି—'ଟିକଏ ଉପରକୁ' ।

ସେ ପୁଣି ଥରେ ପଚାରିଲେ—

'ମୁଁ କହୁଛି, କୁଆଡ଼େ ଯାଉଥିଲ ?'

ମୁଁ ଟେଟେହିଲଇ ହୋଇ କହିଲି— 'ଟିକଏ ଉପରକୁ'

ବାପ୍‌ରେ । ସେ କି କଡ଼ା ଗୁହାଣି, ତା ସାଙ୍ଗକୁ ଫେର ଅଧିକ ଜୋର ଦେଇ··· 'ମୈନେ କହା,' କହା ଯାରହେଥେ ?

ମୁଁ ଡ଼ରିଗଲି । କିନ୍ତୁ ସମ୍ଭାଳି ନମ୍ରତା ସହକାରେ ଫେର
ସେହି କଥା କହିଲି—'ଯେଗ୍ୱସା ଉପର'

ସେଠୁ ସେ କହିଲେ— ଦୂର ମଳ୍ହ ଯାନା,

ମୁଁ ଦେଖିଲି, କିଛିଟା ମାନିବାକୁ ପଡ଼ିବ । ମୋର ବଳବତ୍ତର
ଇଚ୍ଛାଥିଲା ଯେ ଅନ୍ତତଃ ଚିର ବରଫ ଶ୍ରେଣୀ ଯେଉଁଠାରୁ ଆରମ୍ଭ
ହେଇଛି ଠିକ ଦେଖି ଫେରି ଆସିବି । ରଜତ ସମ ବରଫଶ୍ରେଣି
ଚୁମ୍ବକ ଭଳି ଆକର୍ଷଣ କରି ଆହ୍ୱାନ କରୁଥିଲା । ଦେଖା ଯାଉ-
ଥିଲା, ପ୍ରାୟ ପାଖରେ ହେବ । କିନ୍ତୁ ସେ ଯେ ବହୁତ ବହୁତ
ଦୂର ଓ କଷ୍ଟସାଧ୍ୟ ତା ମୋର ଖିଆଲ ନ ଥିଲା ।

କହି—'ବରଫ ତକ୍ ହମ୍ ଯାଉଁଗା'

ସେ—'ଅଚ୍ଛା ଯାଓ' ।

କାନ୍ଧରେ ପୁଟୁଳି ନାହିଁ । ଦେଢ଼ ଦିନର ବିଶ୍ରାମ ପରେ ଉଦ୍ଦାମ
ଯୌବନରେ ମସ୍ତ ହୋଇ ଆଗକୁ ମାଡ଼ି ଚାଲିଲି ।
ପ୍ରାୟ ଦୁଇ ମାଇଲ ଖଣ୍ଡେ ଉଠିଛି, ଗୋଡ଼ ତଳେ କିଛି କାଚ ଭଙ୍ଗି
କଡ଼ମଡ଼ ହୋଇ ଚୂର୍ଣ୍ଣ ହେଲା ପରି ଲାଗିଲା । ଦେଖିଲି, ସେହି
ଜାଗାଟା ଖୁବ୍ ପତଳା ବରଫ ଦ୍ୱାରା ଆବୃତ । ଚିର ବରଫ ଶ୍ରେଣୀର
ଧାର ପୂର୍ବପରି ଦୂରରେ ଅଛି । ମନେ ପଡ଼ିଲା ବାବାଜୀଙ୍କ ଦେଇଥିବା
ପ୍ରତିଶ୍ରୁତି କଥା । ଭାବିଲି- ଠିକ ଦେଲା । ହଉ ଠିକ୍ ଅଛି; ମୁଁ ପତ୍ରରେ
ଯିବି । ସେଠାରେ ମଧ୍ୟ କମ ପକ୍ଷେ ପ୍ରାୟ ଦଶ ଘଣ୍ଟା ହେବ । ଆଗେଇ
ଚାଲିଥିଲି ଘଣ୍ଟାଏ ବାଁ ପଟେ । ଭାବିଲି—ଏପଟେ ଯିବା ଆଗେଇ
ଯିବାକୁ ହେବନି, ଆଉ ଏଠୁ ତଳକୁ ନଜର ରଖି ରଖି ଚାଲିବା ।
ସେହି ଚିର ବରଫାବୃତ ଜାଗାଟା ନିଶ୍ଚୟ ଦେଖିବ । ଓହ୍ଲାଇଲି
ମନ୍ଦାକିନୀ କୂଳକୁ । ଥରକରେ ପହଞ୍ଚିବା ଯଦି ନହୁଏ, ପଥର
ସନ୍ଧିରେ ଯଦି ଗୋଡ଼ ପଡ଼ିଥାଏ, ସେହି ଦେଢ଼ ଘଣ୍ଟା ଉପର ପାଣି

ବାହେରି କବୃତ୍ରଦେବ । ଦହ୍ମଙ୍କୁ ଥେବ ପିଙ୍ଗି, ଦୁଇଲମ୍ବରେ
ନଦୀକୁ ପାର୍ ହେବାକୁ ଚେଷ୍ଟା କରୁଛୁ, ଦୃଷ୍ଟି ପଡ଼ଲ ନାସ୍ତଦେଁକୁ ।
ସେପଟେ, ନଦୀଟଏଁ ଦୁଇ ପାହାଡ଼ ମଧ୍ୟ ଦେଇ ଯାଉଛୁ, ସେ ଦୁଇ
ପାହାଡ଼ ମଞ୍ଚିର ଖଣ୍ଡେ ଗାଲକାର ବାଷ୍ପରାଶି ଦେଖିବାକୁ ପାଇଲ—
ଦୂରେ ବୁଲମାଡ଼ ଆସୁଛୁ ଜପ-ରକୁ । ମୋର ମନେଥିଲ ନଦୀକଳରେ
ସେଥିରେ ଅସଂଖ୍ୟ ଜଳକଣା ଥିବ ଓ ଯଦ ଉନ୍ତ୍ରାଏ ଥଣ୍ଡାଥରେ
ନମୋନିଆ ଜ୍ୱର ହେବ । ଯେମିତ ଭୟ କରିଛୁ, ଏକ ନିଶ୍ବାସରେ
ଧାଇଁଲ ତଳକୁ । ସେହୁ ଧୂମ୍ରପଣ୍ଡଳଟି ଠପି ଚାଲଗଲ । ଉନ୍ତ୍ରଲ
ନାହିଁ । କେବଳ ଭଲ ଦେଖାଯାଉ ନ ଥାଏ । ବାଟ ଠଉରେଇ
ଧାଇଁଲ । କାଗାଟି ଟିକଏ କମ୍ ଗଡ଼ାଣିଆ ଥିଲ । ଦୋର ଦାଖରେ
ମାତ୍ର କୋଡ଼ଏ ମଦର ମିନଟ ପରେ ପହଞ୍ଚିଲ । ପଛକୁ ଚାହିଁ
ଦେଖେତ ଧୂଆଁଟା ତରେ ବରଫାବୃତ ଖଣ୍ଡର ପ୍ରାୟ ମଞ୍ଚି ପର୍ଯ୍ୟନ୍ତ
ଚାଲ ଯାଇଛୁ । ମୋର ଆଉ କଛୁ କରବାର ନ ଥିଲ । ଚେଷ୍ଟା
କରିଥିଲ । ଫଳାଫଳ ପ୍ରତ ମୁଁ ଦାୟିନୁହେ, ସେହେତୁ ମନ ଶାନ୍ତ
ଥିଲ । ଅନୁଭୂତଟା ଟିକଏ ରୋମାଞ୍ଚ କରିଥିଲ ।

ତା ପରଦନ ସକାଳେ, ସ୍ୱତଃପ୍ରବୃତ୍ତ ହୋଇ, ବନମ୍ରତଥା
ଭକ୍ତ ସହକାରେ; ଛ ଅଣାର ବରଫି କଣି, ହେ ସାଧୁଙ୍କ ପାଖକୁ
ବେଲ ନଟା ସମୟରେ ପୁଣି ଗଲ । ବାବାଜୀ ମହାଶୟ ସୂର୍ଯ୍ୟଙ୍କୁ
ପଛକର ବସିଥିଲେ । ହସି ନମସ୍କାର କର ବସିଲ ।
କହୁଲେ—ଏ ସବୁ ଆଣିବା କଛୁ ଦରକାରନଥିଲ । ସେବୋଧ ହୁଏ
ମୋର ଆର୍ଥିକ ଅବସ୍ଥା କମ୍ବା କାର୍ପଣ୍ୟ ପ୍ରକୃତ ଜାଣି- ଥିଲେ ।
ପୂର୍ବ ଦନ ମୁଁ କେତେ ଦୂରକୁ ଯାଇଥିଲ, ପଚାରଲେ । କହିଲ-
ଯେମିତ ବରଫ ପଡ଼ୁଛୁ ସେମିତ ବାହୁଡ଼ ଆସିଛୁ ।

ସେ କହୁଲେ—'ଦେଖ, ଅଯଥା କଷ୍ଟ କଲେ କଛୁ ଲାଭନାହିଁ,

ଦେଖି ଜାଣିଲି । ଜୀବନରେ ଯାହାସବୁ କରୁଛୁ ଅପୂର୍ଣ୍ଣ ରହି ଯାଉଛି । ଅଯଥା କଷ୍ଟ ସହୁଛୁ । କାର୍ଯ୍ୟର ପୂର୍ଣ୍ଣତ୍ୱ ପ୍ରାପ୍ତି ନ ହେବାରୁ ଫଳ ପାଉନାହିଁ । କାର୍ଯ୍ୟ ଆରମ୍ଭରୁ ଶ୍ରମଟା ଫଳଦାୟକ ହେବ କି ନାହିଁ ତାହା ଚିନ୍ତା କରୁ ନାହିଁ । ମୋତେ ସେ ବିଷୟ ନେଇ ସେ ସତର୍କ କରାଇ ଦେଲେ, ଏହି ଘଟଣାକୁ ଆଳକରି— ଭବିଷ୍ୟତରେ ଯେପରି ସେପରି ଭୁଲ ନ ହୁଏ ।

ଯୋଗଃ କର୍ମସୁ କୌଶଳମ୍ ।

କିନ୍ତୁ ସେ ଶିଷ୍ୟ ପ୍ରଶିଷ୍ୟରେ ଘିରା ଲୋକ । କଥାକୁ ବାଗେଇ ଘଟିଥିବା କଥାର ଖିଅ ଧରି କହିଲେ—

'ଦେଖ, ନଦ ଉପରକୁ ଯାଉଥାନ୍ତି, ପଥର ପଡ଼ୁଥାନ୍ତା, ଅଯଥା ଦୁଃଖ କଷ୍ଟ ପାଉଥାନ୍ତି । ସେଥିରେ କଣ ବା ଲାଭ ହୋଇଥାନ୍ତା ?

ଗୋଟିଏ କେମେରା ଥିଲା । ମୋର ଖିଆଲ ଥିଲା ଯେ ରିଲରୁ ଛଅଟି ଫୋଟ ନେଇଛି । ଆଉ ଦୁଇଟି ବାକି ଅଛି । ମୋର ଆନ୍ତରିକ ଇଚ୍ଛା ଥିଲା କେବଳ ପ୍ରାକୃତିକ ଦୃଶ୍ୟଗୁଡ଼ିକର ଫୋଟ ନେବା । କିନ୍ତୁ ଏ ସାଧୁ ବାବାଙ୍କର ଫୋଟ ନେବାରେ ପ୍ରବଳ ଇଚ୍ଛା ହେଲା। ଅନୁରୋଧ କଲି ।

କହିଲେ—'କଣ ଉଠିବନି ?

ସେହି କେମେରାରେ ମୁଁ ଅନେକ ଫୋଟ ଉଠାଇଥିଲି ।

କହିଲି—ନିଶ୍ଚୟ ।

ଅନୁମତି ଦେଲେ ଓ କେମରା ପାଇଁ ପୋଜ ଦେଲ, ଖସି ତଥା ଅନେକ ପ୍ରତି ଦୃଷ୍ଟି ରଖି । ଫୋଟ ଉଠାଇଲି, ତାହାକୁ ଫେରି ପରେ ଯେତେବେଳେ ଫିଲ୍ମ ଧୁଆଇଲି, ଦେଖିଲି ଫଲ୍‌-ବାବ୍ ବାବାଙ୍କ ଫୋଟ ସେଥିରେ ନାହିଁ । କିନ୍ତୁ ସମ୍ପ୍ରଦାୟ ଅଠଟି ଯାକ ଫୋଟ ସେଥିରେ ଅଛି ।

ଫୋଟ ଉଠାଇବା ପରେ ପରେ ଦୁଇଜଣ ବାଳକ ଆସି ପହଞ୍ଚିଲେ । ତରବରିଆ ଗ୍ରାମ୍ୟ ଭାଷାରେ କଣଗୁଡ଼ାଏ କହିଲେ । ମୁଁ ଦେଇଥିବା ବରଫିରୁ କିଛିଟା କାଢ଼ି ଅଗରେ ଲଗାଇ ବଳକା-ତିକ ଆମ ତିନିଜଣଙ୍କୁ ବାଣ୍ଟିଦେଲେ । ଭାରି ବଢିଆ ଲାଗିଲା ।

ପଚାରିଲି—ଆପଣ କଣ ଖାଆନ୍ତି ନାହିଁ ?

ସେ କହିଲେ—'ଖାଏତ'

ସାଙ୍ଗେ ସାଙ୍ଗେ ଜଣେ ଲୋକ ଗୋଟିଏ କାଠର ଗ୍ଲାସରେ ପାଏ ଖଣ୍ଡେ ଦୁଧ ଧରି ଆସିଲା । ଡେରି ହୋଇ ଯାଇଥିବାରୁ କାରଣ ଦର୍ଶାଇ କ୍ଷମା ମାଗିଲା । ବାବାଜୀ ସେହି ଦୁଇଜଣ ବାଳକଙ୍କୁ କୁଡ଼ିଆ ଭିତରୁ ବାଟି ଆଣିବା ପାଇଁ କହିଲେ । ଆଖି ପଲକରେ ଦୌଡ଼ିଯାଇ ସେମାନେ ତିନୋଟି କାଠର ଗିନା ଧରି ଆସିଲେ । ବାବାଜୀ କୁଞ୍ଚିତ ଦାନ୍ତ ଦେଖାଇ ଗ୍ଲାସରୁ ଟିକିଏ ଶୋଷି ନେଲେ । ସେହି ଗ୍ଲାସରୁ ଦୁଇ ଚାରି ଚାମଚ ଲେଖାଏଁ ପ୍ରତ୍ୟେକ ଗିନାରେ ଢାଳିଦେଲେ । ନଜର ଥାଏ ଆମ ଉପରେ । ମନରେ ବିଚାର ଆସୁଥିଲା । କିନ୍ତୁ ପ୍ରସାଦ ଭାବି ନିଜ ମନକୁ ସଂଶୋଧିତ କରିନେଲି ଓ ଆଦର ଥାଇ ସେ ଟିକିକ ନିଜକୁ କୃତାର୍ଥ ମନେକରି ପିଇ ନେଲି ।

ଘୁରିଲି—ଫୋଟ୍ ହିନା ନେଲି, ସୂର୍ଯ୍ୟଙ୍କୁ କଣ ବୋଲି ମନେ ପଚାରିବ । ଏହାଙ୍କର ନାମ କଣ ?

ସେହି ସିଦ୍ଧ ପୁରୁଷଙ୍କୁ ନାଁ ପଚାରିବାରେ ସାହାସ ହେଉ ନ ଥାଏ । ଠିକ୍ ସେତିକବେଳେ ଜଣେ ବାଳକ କେମେରାକୁ ଲକ୍ଷ କରି କହିଲା—

କେମେରାଟି ଅଛି, ଫଲହାରୀ ବାବାଙ୍କ ଗୋଟେ ଫୋଟ ନିଅନ୍ତୁ ।

ବାବାଜୀ କହିଲେ—ଜରା ସବୁରୁ ।

ପରେ, ସେହିପରି ମୋତେ ପଚାରିଲେ—

'କେବେ ଯାଉଛ'

ମୋର ଇଚ୍ଛାଥିଲା ଯେ ଏପରି ସୁନ୍ଦର ଜାଗାରେ ଓ ଏପରି ସାଧୁଙ୍କ ସଙ୍ଗରେ ମାସକର ଛୁଟିର ବେତନ ମଗାଇ ମାସେ ଖଣ୍ଡେ ରହିଯାଆନ୍ତି । କହିଲି—ଯିବାରେ ଡରବର ବା କଣ ଅଛି ? କିଛିଦିନ ରହିବି ।

କହିଲେ—ଆଜ ଚାଲିଯାଅ ।

କହିଲି—ଦେଖିବା ।

ତୀକ୍ଷ୍ଣ ଦୃଷ୍ଟି ସହ ଜୋର ଦେଇ କହିଲେ—

ଆଜ ହିଁ ଚଲେ ଯାନା ।

କହିଲି—ଅଚ୍ଛା, ସନ୍ଧ୍ୟା ବେଳକୁ ଯିବି ।

କହିଲେ—ଅଚ୍ଛା ।

ମୁଣ୍ଡିଆ ମାରି ଆସିଲି ।

ପଦ୍ମଶ୍ରୀଙ୍କ ସମ୍ପର୍କରେ ଯେଉଁ ମନୋମୁଗ୍ଧକର ସୌନ୍ଦର୍ଯ୍ୟ ଦେଖି ନିଜକୁ ଭୁଲି ଯାଇଥିଲି, ସେ ଜାଗାଟା ଖୁବ୍ କଦର୍ଯ୍ୟ ଦେଖାଗଲା । ଜାଣିଲି ତାଙ୍କର ପ୍ରଭାବ ମୋ ଉପରେ ପଡ଼ୁଛି । ରକ୍ଷା ହେଲା ନାହିଁ । ପନ୍ଦର ମିନଟ ଭିତରେ ଜିନିଷ ପତ୍ର ମୋଡ଼ାମାଡ଼ି ବାନ୍ଧି, ଜାଗା ଛାଡ଼ିଲି । ମନ ଭିତରେ ପ୍ରତିଧ୍ୱନିତ ହେଉଥାଏ—

ଅପଥା କଷ୍ଟ କଲେ ଲାଭ ନାହିଁ ।

କୈଳାସ ଯାତ୍ରା ସଫଳ ହେବା ପାଇଁ ଫଲ୍‌ହାରି ବାବାଙ୍କ ଉଦ୍ଦେଶ୍ୟରେ ଗୋଟିଏ ନମସ୍କାର କଲି ।

ଲକ୍ଷ୍ନୌରେ ବଡ଼ ସମ୍ମାନ ହେଲା ନାହିଁ । ମୁଁ ଦେରା ଦନ-ରାକୁ ଯାଉଛି, ଗୋଟିଏ ବଣିଆ ପରିବାର ମୋ ବେଞ୍ଚରେ ବସିଲେ । ବୁଢ଼ି ମନା କରୁଥିଲା । ଜବର ଦଲେ ବସିଥିଲେ । ଆସି ଦେଖେନ୍ତି, ଦୁଇଜଣ ସ୍ତ୍ରୀ ଓ ଜଣେ ମୁସଲମାନ ସେ ବେଞ୍ଚରେ ବସିଛନ୍ତି । ମୁସଲମାନ ଜଣକ ଠିଆ ହୋଇଛି । ଯାହାହେଉ ସଂସ୍କାର ହେଉ ବା ମୋର ଗରମାଗରମ ଯୁକ୍ତି ହେଉ ସ୍ତ୍ରୀଟି ଓ ମୁସଲମାନ ଜଣକ ଭିତରେ ଅଡ଼୍‌ଜଷ୍ଟ ହୋଇ ବସିବା ପାଇଁ ଅନୁରୋଧ କରା-ଗଲା । ମୋ ଜାଗାଟା ପାଇଲି, କିନ୍ତୁ ଚିପି ହୋଇ ବସିଥାଏ । ସ୍ତ୍ରୀଟିର ଦେହର ରଙ୍ଗ ଦୁଧ ଅଳତା ମିଶା । ମୋଟିଟିଏ । ତାର ଏଇତକ ଗୁଣ ଉପଲବ୍ଧି କରୁ କରୁ ମୋର ନାଁରେ ନାଲିଶ କରି କଣ ଆରମ୍ଭ କଲା ।

ବୁଢ଼ି ହାଁମହେଇ କହିଲା—'ମୁଁ ଜେଲ ଚାହିଁପାରେ, ଏ ବଡ଼-ସିଧା ମଣିଷ । ସ୍ତ୍ରୀ ବନ୍ଧୁଙ୍କରେ କିଛି କହି ପାରିବୁ ନାହିଁ ।

ସେତିକିରେ ମୁହିଁ ବନ୍ଦ । ମୋ ମନ ଭିତରେ ଯାହା ଟିକିଏ ଅହଙ୍କାରିଆ ଦୁଷ୍ଟାମିର ଭାବ ଗଜେଇ ଆସୁଥିଲା, ସେତିକିରେ ଝାଉଁଳି ପଡ଼ିଲା ।

ଅଲ୍‌ମୋଡ଼ାରେ ପହଞ୍ଚି ଘରକୁ ଚିଠି ଦେବାକୁ ବୁଢ଼ି ଉପଦେଶ ଦେଲା । ମୁଁ ସୁନାପୁଅ ଭଳିଆ ମୁଣ୍ଡ ହଲେଇଲି ।

ରାତିରେ ଗୃହରତି ପୁରୀ କିଣି ଖାଇଲି । ଖାଇ ସାରିଛି, ବୁଢ଼ି ତାନଟା ଲୁଚି ଯାଚିଲା । ମନା କରି ପାରିଲି ନାହିଁ । ସାଙ୍ଗକୁ ଗୋଟାଏ ଗୋଟା ଅମ୍ବ ଆଚାର ଦେଲା । କିନ୍ତୁ ତାହାରି ଲୁଚି ଧରି ଆଙ୍ଗୁଠି ଟିପରେ ପୁଳାଏ ଆଚାର ଧରି ଖାଇବାକୁ ଲଗିଲି । ଭାବିଲି—ମୁଁ ତ ଖାଇ ସାରିଥିଲି । ମୋର ଖାଇବା ଦରକାର ନ ଥିଲା । ତା ପରେ ତନୋଟି ଲୁଚି ସହିତ ଏତେ ଆଚାର ଦେବା କି ଦରକାର ଥିଲା ? ଉତ୍ତରରେ ସେ ମୋତେ କହିଲା—

ଯେବେ କାହାକୁ ଖାଇବାକୁ ଦେବ, ମନକୁ ମାନିଲା ଭଳିଆ ଖାଇବାକୁ ଦେବ ।

ଦେହ ସିହରି ଉଠିଲା । ଏ ତ ଦୈବୀ ବାଣୀ । ଏ ହେଲା ଗୋଟିଏ ମନ୍ତ୍ର । ଜୀବନର କର୍ମକ୍ଷେତ୍ରରେ ଆଗେଇବାକୁ ହେଲେ, କର୍ମବନ୍ଧନରୁ ମୁକ୍ତ ହେବାକୁ ହେଲେ, ସମସ୍ତଙ୍କୁ ସନ୍ତୁଷ୍ଟ କରିବାକୁ ହେବ । କିନ୍ତୁ—ମନରେ ରହିଗଲା ଗୋଟେ ମସ୍ତବଡ଼ 'କିନ୍ତୁ' । କାରଣ ସନ୍ତୁଷ୍ଟ ହୋଇଥିଲା ମୋର 'ମୁଁ' ଯାହାର ଅଭାବ ନାହିଁ ଓ ଗୃହେପଟ ଛୁଟିରେ ବୃହଦା ମେଣ୍ଟି ଯାଇଥିଲା ।

କ୍ରମଶଃ ବେରେଲି ପାଖେଇ ଆସିଲା । ଆଉ କେତୋଟି ଷ୍ଟେସନରେ ସେମାନେ ଓହ୍ଲାଇ ଯିବେ । ସେମାନଙ୍କର ଅନୁରୋଧ

କମେ ସେମାନଙ୍କର ବେଡ଼ିଂ ପତ୍ର ବନ୍ଧାବନ୍ଧି ଚାଲ । ସ୍ତ୍ରୀଙ୍କୁ ଆଶୀର୍ବାଦ କରି, ବୁଢ଼ିକୁ ନମସ୍କାର କରି ବେବେଇଲରେ ଓହ୍ଲାଇ ପଡ଼ିଲି ।

ସମୟ ଥିଲା ମଧ୍ୟରାତ୍ରି ପାଖାପାଖି । ପ୍ଲାଟଫର୍ମର ଠାଏଁ ଠାଏଁ ଥିଲା ବିଜୁଳି ବତି । ଚଲ ପ୍ରଚଳ ପାଇଁ ଯଥେଷ୍ଟ ଆଲୋକ ଥିଲା । ଶୋଇବା ପାଇଁ ସୁବିଧା ଥିଲା ।

ଲାଠ ଗୋଦାମ ଗାଡ଼ି ଛାଡ଼େ ପ୍ରାୟ ସାତ ଘଣ୍ଟାରେ । ତେଣୁ ପ୍ଲାଟଫର୍ମରେ କମ୍ବଳ ପକାଇ ଗଡ଼ୁଛି, ଦେଖିଲି ଛ ସାତ ହାତ ଦୂରରେ ଜଣେ ଧଳାଲୁଗା ପିନ୍ଧା ସାଧୁ ଶୋଇଛନ୍ତି ଓ ତାଙ୍କ ପାଖରେ ଦୁଇଜଣ ଭଦ୍ରପ ଲୋକ ଅଛନ୍ତି ।

ସେମାନଙ୍କ ଆଡ଼କୁ ଦୃଷ୍ଟି ରଖିବାରୁ ଜଣେ ଲୋକ ଆସି ମୋ ସାଙ୍ଗରେ କଥାବାର୍ତ୍ତା କଲା । ଭଦ୍ରଲୋକ ବଙ୍ଗାଳୀ, ଭାରତ ସେବକ ସମାଜର ସଦସ୍ୟ । ଲୋକ ଦୁଇଜଣ ଘର ଛାଡ଼ି ଘରେ ନ ଜଣାଇ ଚାଲି ଆସିଛନ୍ତି । ଏ ପର୍ଯ୍ୟନ୍ତ ଘରକୁ ଖବର ଦେଇ ନାହାନ୍ତି । ଚେହେରାରେ ସରସତା, ସରଳତା ଓ ଶାନ୍ତି ଫୁଟି ଉଠୁଛି । ମୋର ଯାତ୍ରାର ଉଦ୍ଦେଶ୍ୟ ଓ ମନ ଭିତରର ଆନ୍ଦୋଳନ ପ୍ରକାଶ କରିବାରୁ ସାଧୁବାବା ଖୁବ୍ ଆଶ୍ୱାସନା ଦେଇ କୋମଳ ମଧୁର ଭାବରେ କଥାବାର୍ତ୍ତା କଲେ । କହିଲେ ଯେ ଅଲ୍‌ମୋଡ଼ାରେ ସଠିକ୍ ଖବର ମିଳିଯିବ ଓ ଭଗବାନ ମୋତେ ନିଶ୍ଚୟ ସାହାଯ୍ୟ କରିବେ । ସାତ ଘଣ୍ଟାରେ ମିଟରଗାଜ (ଗ୍ରେଟ) ଗାଡ଼ିରେ ବସିଲି । ଗାଡ଼ିଟିରେ ପାହାଡ଼ିଆ ଲୋକ ଭରି ରହିଥିଲେ । ହିମାଳୟରେ ପହଞ୍ଚି ସାରିଛି ବୋଲି ମୋର ମନେ ହେଲା ।

ଅନେକ ଦିନ ତଳେ, ଗ୍ରୀଷ୍ମାବକାଶରେ, କ୍ରିଶ୍ଚିଆନ କଲେଜର ହିମାଳୟ ଭ୍ରମଣ ଦଳରେ, ହିମାଳୟର ପ୍ରଥମ ଦର୍ଶନ ଲାଲସାରେ ଏ ବାଟ ଦେଇ ନଇନିତାଲ ଯାଇଥିଲି । ସେ ଦିନର ହିମାଳୟର ପ୍ରଥମ ଦର୍ଶନ ମନରୁ କେବେ ଲିଭି ଯାଇନାହିଁ । ଜୀବନରେ ଯେତେ ଥର ହିମାଳୟ ଦର୍ଶନ ହୋଇଛି, ସେପରି ମନ ଭୁଲାଣିଆ ଦୃଶ୍ୟ କେବେ ଦେଖି ନାହିଁ ।

ବାହାର୍ ହିମାଳୟର ଚୀନା ଶୃଙ୍ଗ ଉପରୁ ଦେଖିବାକୁ ପାଇଲି ଉତ୍ତର ହିମାଳୟର ଅମୂଲଚୂଳ ପାଞ୍ଚ ଛଅଟି ଉତ୍ତୁଙ୍ଗ ଶିଖର । ଶୃଙ୍ଗ ମୂଳରେ, ପ୍ରଥମ ସ୍ତରରେ ସବୁଜ ବନରାଜି । ଦ୍ୱିତୀୟ ସ୍ତରରେ ଶୀତ ଦେଶୀୟ ଗଛ, ବେଶ୍ ଧାଡ଼ି ଧାଡ଼ି ସିଧା ସଳଖ ଭାବେ ଠିଆ ହୋଇଛନ୍ତି । ଉପରକୁ ସ୍ତରଟି କ୍ରମଶଃ ପତଳା ହୋଇ ଆସିଛି । ତା ଉପର ଅଂଶଟି ସବୁଜ ପାହାଡ଼—ଖାଲି ଘାସ । ତା ଉପରକୁ ମାଟିଆ ବର୍ଣ୍ଣ ଝାଙ୍ଗର ଜମିର ସ୍ତର । ସବା ଶେଷରେ ଚିର ବରଫ ରାଶିରେ ଆବୃତ ଶୃଙ୍ଗ ।

ହିମାଳୟର ପ୍ରେମରେ ପଡ଼ିଥିଲି ମୁଁ ଏହି ପ୍ରଥମ ଦର୍ଶନରେ । ପୁଣି ଥରେ ସୁବିଧା ଦେଖି ଆସିବି ବୋଲି ଠିକ୍ କରିଥିଲି । ଅସମ୍ଭାଳ ଶୀତ ଯୋଗୁଁ ଚବିଶ ଘଣ୍ଟା ହେବାଣି ପରେ ଛୁଟିପିଟି ହୋଇ ବାହାରି ଆସିଲି । ସେ ଦିନ ଅକ୍ଟୋବର ମାସର ବାଇଶି ତାରିଖ ଥିଲା । ପାହାଡ଼ିଆ ଶୀତ କଣ ଓ କେତେ ପ୍ରବଳ ତାହା ସେତେବେଳେ ଜାଣିବାକୁ ପାଇଥିଲି । ପ୍ରସ୍ତୁତ ରହିବାକୁ ଶିଖିଥିଲି ।

ହାଲ୍‌ଦୁଆନ—

ଗାଡ଼ିରେ ଉପଦେଶ ମିଳିଲା ହାଲ୍ ଦୁନଆରେ ଓହ୍ଲାଇବାକୁ । ହାଲ୍‌ଦୁଆନଠାରୁ ସବୁଯାକ ବସ୍ ବାହାରନ୍ତି । ବସିବା ପାଇଁ ସୁବିଧା ହେବ । ଜାଠ ଗୋଦାମଠାରୁ ମୋଟେ ଦୁଇ ମାଇଲ ଦୂର । ଟିକଟର ମୂଲ୍ୟର ଫରକ ବେଶି ନ ହେବା କଥା ।

ସକାଳେ, ସୂର୍ଯ୍ୟ ଉଦୟ ପରେ ପରେ ହାଲ୍‌ଦୁଆନଠି ଓହ୍ଲାଇଲି । ଷ୍ଟେସନ ବାହାରେ ବଜାର ଓ ବସ୍‌ଷ୍ଟାଣ୍ଡ । ସେତେବେଳକୁ ଦୁଇଦିନ ଧରି ଗାଧୋଇ ନ ଥିଲି । ଉଥବରଆ ଯାତ୍ରା ଅପେକ୍ଷା ଟିକିଏ ଆଶ୍ରମରେ ଯିବା ପାଇଁ ଇଚ୍ଛା କଲି ।

ଆଶ୍ରମ କହିଲେ ଦେହର ଶୁଦ୍ଧତା ଦେଇ ମନର ଟଣାଟଣିକୁ ଓହରେଇ ନେବା । ତାହା ହୋଇ ପାରିବ ଯେବେ ଶୌଚ, ଦାନ୍ତଘସା, ଗାଧୋଇବା, ଖାଇବା ଓ ଶୋଇବା ଏ ସବୁ କର୍ମର ନିୟମିତ ପାଳନ ହୁଏ । ଏହା ସାଙ୍ଗକୁ ମନରେ ସନ୍ତୋଷ ଭାବ ରହିବା ଦରକାର । ନୂତନ ପରିବେଶ ଯେପରି ଅସହ୍ୟ ନ ହୁଏ ସେଥିପ୍ରତି ଦୃଷ୍ଟି ଦେବାକୁ ହେବ । ନିରବଚ୍ଛିନ୍ନ ଯାତ୍ରା ସେତିକି କେବଳ କରି ପାରିବ ଯାହାକୁ ଏହି ନିୟମଗୁଡ଼ିକ ପାଳିବା ପାଇଁ ଅଟକିବାକୁ ନ ପଡ଼େ ।

ଆଖି ଦୃଷ୍ଟିଆ ଦୁଇଟି ହୋଟେଲରେ ଟଙ୍କେ ଆଉ ଦେଢ଼ ଟଙ୍କା ଲେଖାଏ ଦୈନିକ ରହିବା ଖର୍ଚ୍ଚ । କେବଳ ଗାଧୋଇ ଚାଲି ଯିବାକୁ ମଧ୍ୟ ହେଣ୍ଟିକ ଦେବାକୁ ପଡ଼ିବ । ଅଧା ନେବାକୁ ମଧ୍ୟ ସେମାନେ ଅମଙ୍ଗ । ଦ୍ୱିତୀୟ ହୋଟେଲର କର୍ତ୍ତା କିନ୍ତୁ ଭଲ ଲୋକ । ସାମନାରେ ଗୋଟାଏ ହୋଟେଲକୁ ଦେଖାଇ କହିଲେ ଯେ ମୁଁ

ସେଠି ଶହଣା ପଦ .ରଖି ଗାଁ ବାହାରେ ଗୋଟିଏ ନାଳରେ ଗାଧୋଇ ଆସି ସେଠାରେ ଖାଇ ପାରିବ । ସେହି ହୋଟେଲ ସାମନାରେ ଚୂଲଟା ପଛକୁ ଚେୟାର, ଟେବୁଲ, ଚୂଲି ପାଖରେ ଥାକରେ ଖାଇବାଟା ସଜଡ଼ା ହୋଇଥିବ । ଏହି ପ୍ରକାର ହୋଟେଲ ଉତ୍ତର ଭାରତରେ ଅନେକ ଥାଏ ଓ ଉତ୍ତର ଭାରତର ଲୋକେ ଅନ୍ୟାନ୍ୟ ଜାଗାରେ ମଧ୍ୟ ଏ ଭଳି ଧରଣର ହୋଟେଲ କରି-ଥାନ୍ତି । ଏଠି ଖାଇବାଟା ଶସ୍ତା ଓ ଅଚଢ଼ା ସୂହରେ ଶକା ଯାଇଥାଏ । ମାନେ ଖାଦ୍ୟର ଗୁଣ ଦେଖି ଦରକାର ଅନୁଯାୟୀ ପରିମାଣ ନେଇ ପଇସା ଦେବା କଥା । ସମସ୍ତ ସମୟରେ ଯଦ ସନ୍ଧିପାପନ କରିବାକୁ ହୁଏ, ଚୃରଅଣା ଆଠଅଣା ଦେଇ ଅଧିକା ଥିଲେ ଖଟିଆ ଖଣ୍ଡେ ମଧ୍ୟ ପାଇ ହୁଏ ।

ସେହି ହୋଟେଲରେ ବେଡ଼ିଂ ରଖି ନାଳ ଖୋଜି ବାହାରିଲେ । ପହଞ୍ଚି ଦେଖେ ଏକୁଟିଆ ନୁହେଁ । ଖୁବ୍ ଭିଡ଼ । ନାଳଟିର ଓସାର ପାଞ୍ଚ ଛ' ଫୁଟ ଓ ସୁଅ ବେଶ୍ ପ୍ରଖର । ସହରର ମଇଳା ମଧ୍ୟ ସେଠି ମିଶୁଥିଲା । ଶକାର ଭାବକୁ ଦବାଇ ସେଠି ଗାଧୋଇଲି । ଗାଧୋଇବାଟା ନିତାନ୍ତ ଦରକାର ହୋଇ ପଡ଼ିଥିଲା । ଅନ୍ୟ ଲୋକେତ ଫେରେ ଗାଧୋଉଛନ୍ତି । ମଇଳା କଥାଟା ମଧ୍ୟ ଆପେକ୍ଷିକ । ସାଧକ ମଧ୍ୟ ବିକାର ଶୂନ୍ୟ ଓ ସହନଶୀଳ । ବାହାରର ଅବସ୍ଥାରେ କୌଣସି ବିକାର ଆଣିବା ଉଚିତ ନୁହେ । ପାହାଡ଼ ଦେହରୁ ପାଣିଟା ଆସୁଛି । ଥଣ୍ଡା ଅଛି । ଗାଧୋଇ ବିଶେଷ ଆରାମ ପାଇଲି । ଯାତ୍ରାଜନିତ ଶ୍ରମର ଗଲା, ବରଂ ଅଧିକ ଫୂର୍ତ୍ତି ଲାଗିଲା । ହୋଟେଲକୁ ଆସି ପୂଜାପାଠ ସାରି ଖାଇଲି ।

ଅଲ୍‌ମୋଡା ବାସ୍‌ ଦଶଟାରେ । ଟିକଟ ଘର ଓ ବସ୍‌ ଷ୍ଟାଣ୍ଡ ସେହି ପାଖରେ । ଟିକଟ ହେଲା ଓ ବସ୍‌ରେ ବସିଲି । ଗାଡ଼ିଟି ଛୋଟ ତେଣୁ ବସିବାରେ ଅସୁବିଧା ହେଲା । ବାଟରେ ଖୁବ୍‌ ଅସରାଏ ବର୍ଷା ବି ହୋଇଗଲା ।

ଅଲ୍‌ମୋଡ଼ା ୫୦୦୨ ଫୁଟ ୯, ଜୁନ୍—

ଅଲ୍‌ମୋଡ଼ାରେ ପହଞ୍ଚିଲି ଜୁନ୍ ନ' ତାରିଖ, ଦିନ ଅଢ଼େଇଟାରେ । ସହରର ହୋଟେଲ ଫାଠ ୨ ପାଖରେ ସମସ୍ତେ ଓହ୍ଲାଇ ଚାଲିଗଲେ । ସେଠାରେ ଜଣପିଛା ଟଙ୍କାଟିଏ ଲେଖା ଦେବାକୁ ପଡ଼େ । ରହିଲି ମୁଁ ଆଉ ଜଣେ ବୃଦ୍ଧା ଏଜେଣ୍ଟ । ସେ ଅଲ୍‌ମୋଡାର ସୂଚନା କେନ୍ଦ୍ରକୁ ଯିବାକୁ ଉପଦେଶ ଦେଲେ ।

ଗିରିବନର ପବନ, ଝଙ୍କାର ଓ ମୂର୍ଚ୍ଛନା ଏହିଠାରୁ ଆରମ୍ଭ । ଲୋକଙ୍କ ମୁହଁରେ ଥାଏ ସରଳ ଜୀବନ ଧରି ବଞ୍ଚି ରହିବା ପାଇଁ କରୁଥିବା କଠୋର ସଂଗ୍ରାମର ଛାପ । ଜାଗାର ଉଚ୍ଚତା ପ୍ରାୟ ପାଞ୍ଚ ହଜାର ଫୁଟ । ବେଶ୍ ଥଣ୍ଡା । ଥଣ୍ଡାଟା ଅଣ୍ଟା କସିବାରେ ସାହାଯ୍ୟ କରେ । ମନର ଜିଦ୍ ବଢ଼େ । ଗୋଡ଼ରେ ଦମ୍ଭ ଆସେ । ଅନାବନା ବନସ୍ପତି ଶ୍ରେଣୀର ସମାପ୍ତି ପରେ ,ଚିଡ଼୍ ବୃକ୍ଷରାଶିର, ଆରମ୍ଭ ଏହି ଠାରୁ । ପାରିପାର୍ଶ୍ୱିକ ଅବସ୍ଥା ଅନୁକୂଳ ହେଲେ ମନରେ ଅପାର ଆନନ୍ଦ ଆଣିଦଏ ଓ ଉତ୍ସାହ ବଢ଼େ ।

ବର୍ତ୍ତମାନ କୈଳାସ ଯାତ୍ରୀ ହିସାବରେ ମୁଁ ଜଣେ ଗଣ୍ୟମାନ୍ୟ ବ୍ୟକ୍ତି । ନାଗରିକ ଓ ଯାତ୍ରୀ ହିସାବରେ ମୋର ପୂର୍ଣ୍ଣ ଅଧିକାର ରହିଛି, ଯେଉଁ ଟିକକ ମୋର ଅସୁଲ କରିବା କଥା ।

ବସ୍ଥାଣ୍ଡକୁ ଲାଗିଥିଲା ସୂଚନା କେନ୍ଦ୍ର । ଜନୈକ ପଣ୍ଡା ବାରଣ୍ଡାରେ ଫିଙ୍ଗିଦେଇ ପଶିଗଲି ଭିତରକୁ ।

ସେଠାକାର ବାବୁଜଣକ ସହାନୁଭୂତିଶୀଳ ଓ ବନ୍ଧୁଭାବାପନ୍ନ । ସମ୍ଭାଷଣ ଭଳେ, ସତେକି ମୁଁ ତାଙ୍କର ଅନେକ ଦିନର ପୁରୁଣା ବନ୍ଧୁ । ତାଙ୍କଠାରୁ ଅନେକ କଥା ଜାଣିବାକୁ ପାଇଲି ।

ସେ କହିଲେ ଦୁଇଦିନ ପୂର୍ବେ, ଅର୍ଥାତ ସାତ ତାରିଖ ଦିନ ସକାଳେ, ଦଳେ ଯାତ୍ରୀ ଯାତ୍ରା କରିଛନ୍ତି । ସେମାନଙ୍କର ନେତୃତ୍ୱରେ ଅଛନ୍ତି ଆନନ୍ଦଣା ଆଶ୍ରମର ଶ୍ରୀ ଦତ୍ତାନନ୍ଦସ୍ୱାମୀଜୀ । ଶୁଣିଲି ଯେ ସେ ଭାରି ଭଲ ଲୋକ । ଯଦିଓ ପୂର୍ବେ ଚାଲିବାଟ ଅଲ୍‌ମୋଡାଠାରୁ ଆରମ୍ଭ ହେଉଥିଲା, ବର୍ତ୍ତମାନ ଧାରଚୁଲା ପର୍ଯ୍ୟନ୍ତ ସଡ଼କ ତିଆରି ହୋଇଛି ଓ ବସ ମଧ୍ୟ ଚାଲୁଛି । ଧାରଚୁଲାଠାରୁ ପଦଯାତ୍ରା ଆରମ୍ଭ । ମାସକ ପରେ ଆଉ ଗୋଟାଏ ଦଳ ବାହାରିବ । ଏକୁଟିଆ ଯିବାଟା ବିପଦଜନକ । ବର୍ତ୍ତମାନ ଆଗେଇ ଯାଇ ଏ ଦଳ ସହିତ ମିଶିବାକୁ ସେ ମୋତେ ଉପଦେଶ ଦେଲେ । ତିବ୍ବତରେ ଜାଡଲାଣି ଓ ଖାଦ୍ୟର ଅଭାବ । ମରୁଭୂଇର ଅବସ୍ଥା । ତିବ୍ବତରେ କୋଡ଼ିଏ ଦିନର ରହଣି ପାଇଁ କିଛି ଖାଦ୍ୟ ନେବାକୁ କହିଲେ । ଖାଦ୍ୟ ଭିତରେ କିସ୍‌ମିସ୍, କାଜୁବାଦାମ, ବିସ୍କୁଟ, ଚକଲେଟ ଇତ୍ୟାଦି କିଣି ନେବା ପାଇଁ ସେ ମୋତେ ଉପଦେଶ ଦେଲେ, ଯାହା ପାଇଁକି ମୋର ସମ୍ବଲ ନଥିଲା । ସେହି କଥା ଜଣାଇବାରୁ ଅଟାକୁ ଘିଅରେ ଛାଣି ଗୁଡ଼ ପାଗକରି ନେବାକୁ କହିଲେ । ପାବତୀୟ ଉପକରଣ ଅଲ୍‌ମୋଡ଼ାଠାରୁ ନେବାଟା ସୁବିଧାଜନକ ବୋଲି ସେ ଉପଦେଶ ଦେଲେ । ତାଙ୍କର କହିବା ଅନୁସାରେ ପାଖରେ ଥିବା ନିଜ ହିମାଳୟ ହୋଟେଲକୁ ଗଲି ।

ହୋଟେଲ ମାଲିକର ବ୍ୟବହାର ପ୍ରଥମେ ମୋ ପ୍ରତି ଟିକିଏ ରୁକ୍ଷ ଥିଲା । ସତେକି ଯେପରି ମୁଁ ଗ୍ରେଉରଙ୍କର ଲୁଚି ପଳାଇ ଆସିଛୁ ବା ସେପରି କିଛି । କିନ୍ତୁ ଯେତେବେଳେ ସଂଧରେ ହୋଟେଲ୍ ଖାତାରେ 'କୈଳାସ ଯାତ୍ରୀ' ବୋଲି ଲେଖେଁ ମୁହଁରେ ତାର ହସ ଫୁଟି ଉଠିଲା । ବୁଝିଲି, ରହିବା ଖର୍ଚ୍ଚ ଦେଢ଼ଟଙ୍କା । କିନ୍ତୁ, ଯେହେତୁ ମୁଁ ଜଣେ କୈଳାସ ଯାତ୍ରୀ, ମୋ ନିକଟରୁ ପଇସା ନେବାର ଲାଳସା ତାର ଆଦୌ ନଥିଲା ।

ସହର ଟିକିଏ ବୁଲି ଆସିଲି । ଅଲ୍‌ମୋଡ଼ା ଗୋଟିଏ ଗ୍ରୀଷ୍ମ ନିବାସ । ତାର ବଜାର ପୁରୁଣା ଓ ପ୍ରସିଦ୍ଧ । ବଜାରର ଲମ୍ବ ଏକ ମାଇଲ ଓ ଦାଣ୍ଡଟି ପଥର ଯୋଖାଯାଇ ପକ୍‌କା କରାଯାଇଛି ।

ଗୋଟିଏ ଅଷ୍ଟରମିଲ୍‌କ ଗୁଣ୍ଡଦୁଧ ଡବା, ଗୋଟିଏ ଓଭ-ମାଲ୍‌ଟି ଡବା, ସୁଜି, ଚିନି, ଗ୍ଲୁକୋଜ୍-ଡ଼ି, କିଛି ଏଣ୍ଟ୍ରୋକ୍ୱିନୋଲ, କିଛି ଭିଟାମିନ୍-ସି, ହଲେ କାନ୍‌ଭାସ ଯୋତା ଓ ପାଞ୍ଚଟଙ୍କା ଦେଇ ଗୋଟିଏ ଛତା କିଣିଲି । ମୁଣ୍ଡ ଢାଙ୍କିବା ପାଇଁ ଗୋଟେ ମିଲିଟାରୀ ମଙ୍କିକେପ୍ ଦୁଇଟଙ୍କା ଆଠଅଣା ଦେଇ କିଣିଲି । ଦୋକାନରେ ଯାବତୀୟ ମିଲିଟାରୀ ଓ ପର୍ବତାରୋହୀର ପ୍ରୟୋଜନୀୟ ପୁରୁଣା ଜିନିଷ ମିଳେ । ଗୋଟିଏ ସୁନ୍ଦର, ମଜବୁତ, ପବନ ନିରୋଧିତ ଚମଡ଼ା ଚାଳିଶ ଟଙ୍କାକୁ ଯାଉଥିଲା ।

ରାତିରେ ଜିଲ୍ଲାସ୍କୁଲରେ ହେଉଥିବା ସାଂସ୍କୃତିକ ସମ୍ମିଳନୀ ଦେଖିଲି । ସେଠି ଘିଅ କଲେକୁ ଛ ଟଙ୍କା ଆଠଅଣା ଲେଖାଏ ମୁତା ଘିଅ ଟିଣରେ ବିକା ହେଉଥିଲା । ଏହି ଘିଅ ଉପର ପଟରୁ ଆସୁଥିଲା ଯେଉଁଠାରେ କି ଡାଲ୍‌ଡ଼ାର ଦାମ ଘିଅଠାରୁ ବେଶି । କାରଣ ବୋହି ନେବାରତ ଫେରେ ଖର୍ଚ୍ଚ ଅଛି ।

ସନ୍ଧରେ ପେଟେ ରୁଟି ଓ ଭାତ ଖାଇ ଶୋଇଲି । ଠିକ୍ ବାଟରେ ଅଛୁ ବୋଲି ମନର ଦୁଶ୍ଚିନ୍ତା ଅନେକଟା କମି ଯାଇଥିଲା ।

ତା ପରଦିନ ଗାଧୋଇ ନିକଟସ୍ଥ ମନ୍ଦିରରେ ପୂଜା ପାଠ କଲି । ଗୋଟିଏ ବାଡ଼ି ଓ କମ୍ବଳ ସେଫଟିପିନ୍ କିଣିଲି । ପାହାଡ଼ିଆ ଖଣ୍ଡରେ ରାସ୍ତାଘାଟ ସବୁ ସନ୍ତସନ୍ତିଆ ହୋଇଥାଏ । କେତେବେଳେ ବା ମୁକ୍ତ ଆକାଶ ତଳେ ଧରଣୀ କୋଳରେ ଶୋଇବାକୁ ପଡ଼ିପାରେ । ସେ ସମୟରେ କେଉଁଠା ଏଡ଼ିବ, ତଳେ ନ ଓଦାଳ ଭଳିଆ କମ୍ବଳ ଓ ଉପରୁ ପଡୁଥିବା ଝାକରକୁ ଅଟକାଇବା ପାଇଁ ଗୁନ୍ଦୁଆ ବା ତମ୍ବୁ ଭଳିଆ କମ୍ବଳ । ପ୍ରଥମଟି ପାଇଁ ଗୋଟିଏ ଅଏଲ୍ କ୍ଲଥ ଖୋଜିଲି । କିନ୍ତୁ ସାରା ବଜାରରେ ପାଇଲି ନାହିଁ । ଦ୍ୱିତୀୟଟି ପାଇଁ କିଣ କରାଯାଇ ପାରେ ତାହା ମୋର ଭାବନାର ବାହାରେ ଥିଲା । ନିହାତି ଦରକାର ପଡ଼ିଲେ ଯୋଡ଼ାଯୋଡ଼ି ହୋଇ ତ ଚଳାଇ ହେବ । ଯାହା କମ୍ବଳ ହାତରେ ନ ହୁଏ ତାକୁ ଦିଆଯାଏ ଭଗବାନଙ୍କ ହାତରେ ।

ଅଭ୍ୟର୍ଥନାକାରୀ ଜଣେ ସକାଳୁ ଯାଉଥିବା ବସରେ ସିଟାକୁ କହିଥିଲେ । ନେପୋଲିଅନ୍ କହିଛନ୍ତି ଯେ ଲୋକେ ପେଟକୁ ଧରି ଯୁଦ୍ଧ କରନ୍ତି । ଯାହାରେ ମଧ୍ୟ ସେହି ନିୟମ ଚାଲେ । ଖାଇ ପିଇ ଦଶଟାକୁ ବସ୍‌ରେ ବସିଲି । ଯାହା ଘନେଇ ଆସିଲା । ନିର୍ଦ୍ଦିଷ୍ଟ ବାଟ ମିଳିଲା ।

ଏହି ଟ୍ରେଲ-ଶକଟରେ ସମୁଦାୟ ଅଠଜଣ ବସିଥିଲେ । ଜଣକୁ ଜ୍ୱର ହୋଇଥାଏ ଓ ସେଥିରେ ଶବ୍ଦ ହେଉଥାଏ । ଜ୍ୱର ହେବାରୁ ଦେହକୁ ବାନ୍ଧିଛନ୍ତି । କୌଣସି ଗୋଟିଏ ଜାଗାରେ

ଓହ୍ଲାଇ ପାହାଡ ଉଠିବ, ଘରକୁ ଯିବ । ପାହାଡ଼ର ଠାଏଁ ଠାଏଁ ନଈ କଡ଼ରେ ଗାଁ ଗଣ୍ଡା ଥାଏ । କିନ୍ତୁ ଅଧିକାଂଶ ସ୍ଥଳରେ କେଉଁଠି ପାହାଡ଼ ଟିପରେ, କେଉଁଠି ପଖାରେ, କେଉଁଠ ମଝିରେ, ପାହାଡ଼ ଭିତରୁ କାଲ ବାହାରିଲ ଜାଗାହା ଉପରେ ଗୋଟିଏ ଗୋଟିଏ ଘର ଥାଏ । ପାଖରେ ଗ୍ଲେଟ ଝରଣାଟେ ଯାଇଥାଏ । କେଉଁଠି କେଉଁଠି ମେଣ୍ଟ ଝରଣା କଡ଼ରେ ଦୁଇ ଚାରିଟା କଦଳୀ ଗଛ ଲାଗିଥାଏ । ଘର ଚାରିପଟେ ଓ ପାହାଡର ଅମୂଳଚୂଳ ଥାଏ ପାହାଚ ପାହାଚ ପରି ବିଲ । ଧାନ ବା ଗହମ କାଟି ପାହାଡ଼ର ପାଦ-ଦେଶରୁ ତାର ଘର ପର୍ଯ୍ୟନ୍ତ ଚାଷୀ ତା ପରିବାର ସହିତ ଶସ୍ୟତକ ବୋହିଁଲ ନେଇଥିବ । କିନ୍ତୁ ଅଟା ପେଷିବା, ଦୂରରୁ ହାଠ, ଡାଲି, ଲୁଣ, କିରାସିନ ଇତ୍ୟାଦି ଆଣିବା ଯୋଗାଡ଼ରେ କିଛି କମ କଷ୍ଟ ତ ହେଉ ନଥିବ ! ଠାଏଁ ଠାଏଁ ପାଖରେ ହାଠ ଥାଇପାରେ । କିନ୍ତୁ ରୋଗ ବୈରାଗ୍ୟ ସମୟରେ ଅବସ୍ଥା କଣ ଯେ ହେଉ ନ ଥିବ ? ଦୁଃଖ ଲାଗୁନ୍ଥି ନା ? ଭବ୍ଯ ଦଅ 'ପାହାଡ଼ିଆ ଲୋକର' ଦୁଃଖ ଚାଲିଯିବ ।

ଆଜ ତଳ ସରଙ୍କରେ ଲୋଇ ଥିବେ ପକେଟମାରୁ, ଉଣ୍ଟି-କଟା, ଛୁରାଭୂଷା, ବ୍ୟାଙ୍କ୍ଚୋର, ଲୁଟତରାଜ ଓ ବୋକଳ ଥିବେ ସଭ୍ୟ । ଅଥଚ ଏଇମାନେ ରକ୍ତ ଦେଇ ରକ୍ଷା କରିବେ ସେମାନଙ୍କୁ ଅର୍ଥାତ ସେମାନଙ୍କର ପକେଟମାରୁ, କଳାବଜାର ସଭ୍ୟତାକୁ । ଭାରତୀୟ ସୈନ୍ୟ ବାହିନୀରେ ଏମାନେ ପ୍ରାୟ ଦଶଅଣା । ଗଡ଼ବାଲ, କୁମାଉଁ, ଗୁର୍ଖା ଇତ୍ୟାଦି ଗଢ଼ି ଉଠିଛି ଏମାନଙ୍କୁ ନେଇ । ଗୁର୍ଖା ପୃଥିବୀରେ ଅପ୍ରତିଦ୍ୱନ୍ଦୀ, ଯେହେତୁ ଏ ସମାଜରେ ଶଠତା ନାହିଁ ।

ଭବର ଗଡ ବନ୍ଦ ହେଲ ଯେତେବେଳେ, ନନ୍ଦୁଙ୍କର ଅସ୍ଥି, ଟିକିଏ ହସି, ପାଖରେ ବସିଲ । [illegible]ରେ ।

ପଚ୍ଚରିଲ—କଲିକତା ପଟେ ସ୍ତ୍ରୀ ଲୋକମାନେ ମନୁଷ୍ୟଙ୍କୁ ଭେଣ ମେଣ୍ଢା କରି ଦେଅନ୍ତି କି ? ସେ ପଟେ କୁଅନ୍ତି ତନ୍ତ୍ର ମନ୍ତ୍ରର ପ୍ରଚଳନ ଅଧିକ।

କହିଲି—ଏ ଗୁଜବଟା ଆସାମର କାମାକ୍ଷା ପ୍ରତି ପ୍ରଯୁକ୍ତ । ପଇସା ଆଶାରେ ସେଠାରେ କେଣେ ପଣ୍ଡା ମୋତେ ଥରେ ସେପରି ଧମକାଇ ଥିଲ । ମୋର ବିଶ୍ୱାସ ଏପରି କିଛି ଗଛ-ଔଷଧ ଅଛି ଯାହାଦ୍ୱାରା ବଚ୍ଚିବ ଶକ୍ତି ଓ ସ୍ମରଣ ଶକ୍ତି ଲୋପ ହୋଇଯାଏ ଓ ସେ ପଶୁଭଳିଆ ରହେ । କିନ୍ତୁ ଶରୀର ଯେ ବଦଳି ଯିବ ଏ କଥାରେ ମୋର ଆଦୌ ବିଶ୍ୱାସ ନାହିଁ । ପାଶ୍ଚାତ୍ୟ ଦେଶରେ ମଧ୍ୟ ବଡ଼ ପାଗଳଙ୍କୁ ବାଧ୍ୟ କରିବ ପ୍ରତି ସଚେତନ କରିବା ପାଇଁ ପାଗଳାଖାନା ଗୁଡ଼ିକରେ ଔଷଧ ବ୍ୟବହାର କରାଯାଇଥାଏ । ତନ୍ତ୍ରମନ୍ତ୍ର କଥା ଯାହା କହିଲ ତାହା ତୁମ ପାହାଡ଼ରେ ଅଧିକ ଅଛି ଓ ପୃଥିବୀର ସବୁ ମଧ୍ୟ ଜଡ଼ିତା ଅଧିକରେ ଅଛି । ନିଜର ମନକୁ ଓ ଭାବଧାରାକୁ ଠିକ ରଖିଲେ ଏ ସବୁ ଆପେ ଆପେ କାଟି ଯାଇଯିବ ।

ଶେଷରେ କହିଲି—ଆମର ଝିଅମାନେ ଦେଖିବାକୁ ଖୁବ୍ ସୁନ୍ଦର ଓ ସ୍ୱାସ୍ଥ୍ୟବନ୍ତ । କିନ୍ତୁ ଏଠାରେ ଗୋଟେ ବସ୍ତୁହବ ବସ୍ତି ଅଛି, ଯେଉଁଠି ମୁଁ ଅନେକ ବଙ୍ଗୀୟ ଯୁବତୀଙ୍କୁ ଦେଖିଛି; ଦେଖିବାକୁ ଆଦୌ ସୁନ୍ଦର ନୁହନ୍ତି ।

ହସି କହିଲ—ହିଁ ଗୋରୁ, ମଇଁଷି, ଛେଳି, ମେଣ୍ଢା ସମସ୍ତେ ଅଲଗା ଅଲଗା । ଗୋଟିଏ ଜାତିର ପୁରୁଷ ଅନ୍ୟ ଜାତିର ସ୍ତ୍ରୀଙ୍କୁ

ତସର ଉପରେ ନାଲି ଓ ଏକ୍ସ ଚନ୍ଦ୍ରା ଆବ୍ରହ୍ମ ଗାଛ ପର୍ଯ୍ୟନ୍ତ ସମସ୍ତଙ୍କୁ ଧାଉଛୁ ।

ସେ ଟିକିଏ ହସି ଦେଲା । ଜ୍ଞାନଦେଇଙ୍କୁ କାମନା ବୃତ୍ତି ମିଳେଇ ଗଲା । ପିଲାଟି ବୁଦ୍ଧିମାନ, ଜିଜ୍ଞାସୁ, ସରଳ ଓ ଖୋଲା ହୃଦୟର । ଅଧିକାଂଶ ପାହାଡ଼ି ଏହିପରି ।

ଅନୁଭବ କଲି ଯେ, ବଦଳୁଥିବା ବାତାବରଣର ନାନାଧ ଧାତ ପ୍ରତିଘାତ, ଶ୍ରଦ୍ଧା ଓ ବିତୃଷ୍ଣା, ଆକର୍ଷଣ ଓ ବିକର୍ଷଣ ଇତ୍ୟାଦି ମାଧ୍ୟମରେ ମୋର ଭ୍ରବଧାରାର ବିମିତ ଜନ୍ମିତ ଘଟୁଛି । ମନର ପରିବାର ବଢ଼ୁଛି । ଶ୍ଲୋକ ଅଛି—

ତ୍ୟଜେତ୍ କୁଳାର୍ଥେ ପୁରୁଷଂ ଇତ୍ୟାଦି

କାରଣ, ଲକ୍ଷରେ ଅଟଳ ରହି ଏକ ମନରେ କୈଳାସ ଉଦ୍ଦେଶ୍ୟରେ ଆଗେଇଛୁ, ଯେପରି ନୌକାର ମଙ୍ଗ ସ୍ଥିର କରି ଅନୁକୂଳ ପବନରେ ପାଣି ଦେହରେ କାଟି ଆଗେଇବାକୁ ହୁଏ । ଜଳାଣି ପ୍ରବାହ ଗତ ମନ୍ଦ କରିପାରେ କିନ୍ତୁ ପଛକୁ ଟାଣି ପାରେନା ।

ସଢ଼କଟି ଏକ ତରଫା । ଦୁଇପଟରୁ ଗାଡ଼ି ଆସି ମଝିରେ ଗୋଟେ ଜାଗାରେ ଠୁଳ ହେଲା ପରେ ଯେଝା ରାସ୍ତାରେ ଓ ଦଗରେ ଯାଆନ୍ତି । ନୂଆଁ ତଯ୍ୟାର ହୋଇଥିବା ସରଯୂ ପୋଲ ପାଖରେ ଦୁଇପଟର ଗାଡ଼ିତକ ଏକଜୁଟ ହେଲେ । ସେତେବେଳେ ଆମ ଗାଡ଼ିରେ ରହିଲେ ମୋଟେ ପାଞ୍ଚଜଣ ।

ପୋଲର ଆର ପଟରେ ଗୋଟେ ଅତ ଉଚ ସିଧା ସଳଖ ପାହାଡ଼ । ସର୍ପିଳ ଗତରେ ରାସ୍ତାଟି ଉପରକୁ ଉଠିଛି—ତାକୁ ଶିଖର ପର୍ଯ୍ୟନ୍ତ । ଶିଖର ଆର ପଟରେ କଣ୍ଟାଟା ତରଙ୍ଗାୟିତ, ଉଦ୍‌ବେଳିତ

ପଡ଼ି ସମୁଦ୍ରର ଢେଉ ଭଳି । ମାଳଭୂମି । ସେଠି ଅଛି ଅମର ପିଠୋରାଗଡ଼ ।

ପିଠୋରାଗଡ଼—

ଆଗ ପିଠୋରାଗଡ଼ ଥିଲା ଅଲ୍‌ମୋଡ଼ାର ଗୋଟିଏ ସବ୍-ଡିଭିଜନ କାର୍ଯ୍ୟାଳୟ । ବର୍ତ୍ତମାନ ସୀମାନ୍ତ ରକ୍ଷା ଦୃଷ୍ଟିରୁ ସେଥିକୁ ଜିଲ୍ଲାରେ ପରିଣତ କରାଯାଇଛି । ସେହିପରି ବଦ୍ରିନାଥ ରାସ୍ତାରେ ଥିବା ରୁଦ୍ରପ୍ରୟାଗ ଓ ଗଙ୍ଗୋତ୍ରି ରାସ୍ତାରେ ଥିବା ଉତ୍ତର କାଶୀକୁ ମଧ୍ୟ ତିନୋଟି ସଂଲଗ୍ନ । କିନ୍ତୁ ଗୋଟିକରୁ ଅନ୍ୟଟିକୁ ଯିବାକୁ ହେଲେ ତଳକୁ ଆସି ଗାଡ଼ି ଧରିଲେ ଚାରି ପାଞ୍ଚ ଦିନ ଲାଗିବ । ପିଠୋରା-ଗଡ଼ର ସୌନ୍ଦର୍ଯ୍ୟରେ ମୁଗ୍‌ଧ ହୋଇ ଯାଇଥିଲି ।

କିନ୍ତୁ, ଦୈନିକ ଟଙ୍କାଟିଏ ଦେଇ ଯେଉଁ ହୋଟେଲରେ ରହିଲି ସେଠି ରହିବା ଜାଗାରେ ଦିନରେ ମଧ୍ୟ ଧୀପ ଆଲୁଅ ଦରକାର ପଡ଼ୁଥିଲା ।

କୁମାଉଁ ବସ୍ ଷ୍ଟାର କନୈକ କର୍ମଚାରୀ କହିଲେ ଯେ ସେ ଦିନ ସକାଳେ ଯାତ୍ରୀ ଦଳଟି ଅସ୍‌କୋଟ ଅଭିମୁଖେ ଯାତ୍ରା କରିଛନ୍ତି । ଆମ ପଟେ ଧରାକୋଟ, ଖଲିକୋଟ, ଜମ୍ବରକୋଟ ଯେପରି ଅଛି, ଏ ପଟେ ମଧ୍ୟ ଅସ୍‌କୋଟ, ବାଲ୍‌ବାକୋଟ, ଡାକଲକୋଟ•ଏପରି ଜାଗା ଅଛି । ଡାକଲକୋଟଟି ତିବ୍ବତରେ । କୋଟ କହିଲେ ଗଡ଼ ବୁଝାଏ ବୋଲି ଶୁଣିଲି । ଧରାକୋଟ ଓ ଖଲିକୋଟ ମଧ୍ୟ ଦୁଇଟି ଗଡ଼ । ଗଡ଼ କହିଲେ ପ୍ରତିଦ୍ୱନ୍ଦୀଙ୍କଠାରୁ ରକ୍ଷା ପାଇବା ପାଇଁ ମଣିଷ ନିଜ ପାଇଁ ତିଆରି କରିଥିବା ବେଷ୍ଟନୀକୁ ସାଧାରଣତଃ ବୁଝାଏ । ଇଂରେଜୀରେ 'କୋଟ'ଟି କୋଟ ଅଫ୍ ଆର୍‌ମସ୍‌'ରୁ ଉଦ୍ଭୂତ ବୋଲି ମନେ ହୁଏ । ବେଦରେ ଅଛି—

## 'ବ୍ରହ୍ମ ବର୍ମ ସମାବ୍ରରମ୍'

ଅର୍ଥ—ବ୍ରହ୍ମ ମୋର କବଚ ।

ବ୍ରହ୍ମ ମୋର କବଚ । ବ୍ରହ୍ମ ମୋର ରକ୍ଷା କର୍ତ୍ତା । ଅଛୁ ବ୍ରହ୍ମଠି, ଯାଉଛୁ ବ୍ରହ୍ମକୁ । ଖାଦ୍ୟ ବ୍ରହ୍ମ, ଖାଇବା ବ୍ରହ୍ମ, ଖ୍ରେଦ ଉପାସ ମଧ୍ୟ ବ୍ରହ୍ମ । ସାଙ୍ଗ ପାଇବା ବ୍ରହ୍ମ, ନିଃସଙ୍ଗରେ ବ୍ରହ୍ମ । ସବୁ ଅବସ୍ଥା ବ୍ରହ୍ମ । ସବୁ ଅବସ୍ଥାରେ ବ୍ରହ୍ମ ।

ତାହାହେଲେ ଦୁଃଖ ରହୁଛି କେଉଁଠି ? ଦୁଃଖ ରହୁଛି—ଏହି ଦେହଧାରୀ ବ୍ରହ୍ମ ଓ ସର୍ବବ୍ୟାପୀ ବ୍ରହ୍ମ ଭିତରେ ଥିବା ସମ୍ପର୍କଟାରେ ଯାହାକୁ 'ମୁଁ' କହନ୍ତି । ଅସଲରେ ମୁଁଟା ଦେହଧାରୀ ବ୍ରହ୍ମକୁ ବୁଝାଏ ନାହିଁ । ବୁଝାଏ ସମ୍ପର୍କଟାକୁ । ସୁଖ ବା ଦୁଃଖ ରହୁଛି ସେହି ସମ୍ପର୍କରେ—ଏ ବ୍ରହ୍ମ ସେ ବ୍ରହ୍ମକୁ କପରି ମୁହାଁ କରିଅଛି—ମାନେ ଦୃଷ୍ଟି କୋଣରେ । ଅର୍ଥାତ ଆମର ଦୃଷ୍ଟି କୋଣରେ ଅଛି ସୁଖ ବା ଦୁଃଖ ।

ସେହି ବ୍ରହ୍ମରେ ବୁଡ, ଟାଣି ନେଉଥିବା ସୁଅରେ ଦେହ ଅଗେଇବାକୁ ଚେଷ୍ଟା କଲି । ସୁଅ ଅନୁକୂଳ ହେବ ବୋଲି ଆଶା ଥିଲା ।

ସେ ହେତୁ କର୍ମଚାରୀଙ୍କ ଯେତେବେଳେ କହିଲେ ଯେ ଯାତ୍ରୀ ଦଳଟି ସକାଳେ ଯାତ୍ରା କରିଛନ୍ତି, ବାଟରେ ରାସ୍ତା ଖରାପ ଥିବାରୁ ଅଟକି ଯାଇଥିଲେ, ବର୍ତ୍ତମାନ ଫେରେ ଅଡଡା ଖସି ରାସ୍ତାଟି ବନ୍ଦ ହୋଇ ଯାଇଛି, କେତେବେଳେ ମରାମତି ହେବ ଠିକ୍ ନାହିଁ, ମରାମତି ପରେ ବସ୍ ପୁଣି ଚାଲିବ, ମୁଁ ଆଉ ଦୁଃଖ କଲି ନାହିଁ । ବରଂ ଖୁସି ହେଲି ଯେ ସେମାନଙ୍କ ସହିତ ସଂଯୁକ୍ତ ବନ

ଦନ ସମୟର ଫରକଟା ଗୋଟିଏ ଦନକୁ ଖସି ଆସିଛୁ । ସମୟକୁ ଦୂରତାରେ ଓ ଦୂରତାକୁ ସମୟରେ ପରିଣତ କରାଯାଇପାରେ ।

ଜପା ଅଜପା, ମାପ ଅମପା, ଅନୁଭୂତ ଗୋଟେ ।

ପିଠୋରାଗଡରେ ସନ୍ଧ୍ୟା ଛ'ଟା ସମୟରେ ପହଞ୍ଚିଥିଲ । ରାତରେ ଜଣେ ଆର୍ମି କମାଣ୍ଡରର ସହତ କଥା ହେଲ ।

ସେ ପଚାରିଲେ—ଏ ପାହାଡ଼ିଆ ଜାଗାଟା ଆପଣଙ୍କୁ କପର ଲଗେ ?

ତାର ଉତ୍ତରରେ ମୁଁ କହିଲ—ଭଲ, ଏହାର ପୁଣି ଗୋଟିଏ ଜବାବ ଅଛି ? ଭଲ ଲଗୁ ନଥିଲେ ଛୁଟି ନେଇ, ଟଙ୍କା ଖର୍ଚ୍ଚ କରି, କଷ୍ଟ ସହ ଏଠାକୁ ଆସି ନଥାନ୍ତି । ଉଚ୍ଚ ଶିଖର ପାଖରେ ଥିବା ନଦୀ କଡ଼ର ସବୁଜ ପଠାଭୂଇଁ ମୋତେ ଖୁବ୍ ସୁନ୍ଦର ଦଶେ । ପାହାଡ଼ିଆ ଲେକଙ୍କର ସରଳତା ଓ ହୃଦୟଭରା ସ୍ନେହ ମୋତେ ଟାଣି ଆଣେ । ଅର୍ଥାତ ଏ ପାର୍ବତ୍ୟ ପ୍ରଦେଶ ପ୍ରତି ମୁଁ ଏକ ପ୍ରକାର ପ୍ରେମରେ ବା ନିଶାରେ ପଡ଼ିଛି ।

ତାଙ୍କର ଘର ସେହିପରି ଗୋଟାଏ ପଠାରେ । ଆସ୍କୋଟ ଠାରୁ ସାତ ମାଇଲ ଦୂର । ବାଟରେ ପଡ଼ିବ । ଘରେ ଅବବାହିତା ଭଉଣିଟିଏ । ଜମିବାଡ଼ି ଅଛି । ଯିବାକୁ ସେ ମୋତେ ଅନୁରୋଧ କଲେ । ସେଠାରୁ ଆଗେଇବା ପାଇଁ ସାଙ୍ଗରେ ଲେକ ଦେଇ ପାରନ୍ତି ।

ମୋର ଲକ୍ଷକୁ ବାଙ୍କେଇବ ନାହିଁ ବୋଲ ଉଚ୍ଚ ମନା କରିଥିଲ ।

ଆର ଦନ ରାତ ଥାଉ ଥାଉ ନଦ ଭାଙ୍ଗିଲ । କୌଣସି ଗୋଟାଏ ବାଡ଼ ଗଛରୁ ଦାନ୍ତକାଠି ଭାଙ୍ଗି ଦାନ୍ତ ଘସିଲି । ଗୋଟିଏ

ବାଲ୍‌ଟି ଆଣି ନାଳ ପାଖରେ ଗାଧୋଇଲ୍‌। ଏହି ସବୁ ଜାଗାରେ କୌଣସି ଝରଣାକୁ ବନ୍ଧେଇ ନଳ ଆଣି ପାଣିକଳ ଭଳିଆ କରିଥାନ୍ତି । ସେଥିରୁ ଅନବରତ ପାଣି ଗୃଳୁଥାଏ । ଧୂପ ଆଲୁଅରେ ପୂଜାପାଠ କଲି । ଦୁଇ ଅଣାର କୁଞ୍ଚିଳ ମୂଗଚଣା ଓ ନମକ କଣି କଲଖିଆ କଲି । ନମକଗୁଡ଼ିକ ନଖ ଆକାରର ହୋଇଥିଲା ।

ଏହାପରେ ନିତ୍ୟକର୍ମ ସାରି, ଯାବାର ଚିନ୍ତା କଲି । ଖବର ଓ ସାଙ୍ଗ ଖୋଜିଲି ।

ହୋଟେଲର ନିମ୍ନଭାଗରେ କେତେଗୁଡ଼ିଏ ଖଟ ପଡ଼ିଥାଏ । ଖଟପିଛା ସାମାନ୍ୟ କିଛି ପଇସା ଦେବାକୁ ହୁଏ । ବାଟରେ ଅଟକ ମୋ ଭଳିଆ ଅନେକ ଯାତ୍ରୀ ଥାଆନ୍ତି । ସେଥିରୁ ଆସ୍‌କୋଟରେ ଥିବା ସଫସ୍ତ୍ର ଆରକ୍ଷୀବାହିନୀ ଦୁଇଜଣ ଥିଲେ । ସେମାନେ ଅଟକ ଯାଇଛନ୍ତି ବୋଲି କର୍ମଚାରୀଙ୍କୁ ଟେଲିଫୋନଦ୍ୱାରା ଜଣାଇଲେ । ମୋର ଯାବତୀୟ ବୋଝଝୁଇବା ପାଇଁ କୁଲି କଣି ଚିନ୍ତା କରିବା ପାଇଁ ସେମାନେ ଉପଦେଶ ଦେଲେ ଓ ମୋର ପୂର୍ବ ଅନୁଭୂତିରୁ ସୁବିଧା ହେବ ବୋଲି ଜାଣି, ସେହିପରି କଲି । କୁଲି ମଜୁରିଗିରି ପାଞ୍ଚଅଣା ଓ ସିଳଇ ଚୁରିଅଣା ପଡ଼ିଲା ।

ସନ୍ଧ୍ୟାବେଳେ ଦଳେ ବୁଲି ଯାଇଥିଲି । ମୋର ଏକୁଟିଆରେ ଯିବା ସାହାସ ଦେଖି ସମସ୍ତେ ଭାରି ପ୍ରଶଂସା କଲେ । ଗୋଟିଏ ସମତଳରେ ଗଡ଼ାଣିଆ ପାହାଡ଼ ଦେହରେ ସମ ଆକାରରେ ବର୍ତ୍ତୁଳ କୁଇଟି ମୁଣ୍ଡିଆ ଦେଖାଇ ଉପମା ଦେବାରୁ ସମସ୍ତେ ହସି ଉଠିଲେ । କହିଲେ—

'ଆରେ ବାଃ ଏତେ ସମୟ ପର୍ଯ୍ୟନ୍ତ କୁଆଡେ ଯାଇଥିଲ ?'

ଗାଡ଼ିରେ ସମସ୍ତେ ବସି ଗପ କରୁଥିଲୁ । ଢେଙ୍କିଶାଳରେ ଢେଙ୍କାନାଳ 'ଛଥା । ପେଟରେ ଚୁଙ୍ଗ ହୋଇ ରହିଥିବା ବାଷ୍ପ ନିଷ୍କାସିତ ହୁଏ ସେଠିକ ବେଳେ । ଜଣେ ଜଣେ କରି ଘୁଙ୍ଗୁଡ଼ିଲେ ଓ ଗାଡ଼ି ଛାଡ଼ିଲା । ଘୋର ପାଣି ପଡ଼ିଲା । ଚୁପ ରହିବା ଭଲ । ମୁଁକର ଶବ୍ଦ ନଥାଏ ।

କହିଲି—ମୁଁ ବା ଘର ଲୋକ ଭଣ କହି ପାରିବ ?

ସେମାନଙ୍କ ମଧ୍ୟରେ ରାଜନୀତି ପଢୁଥିବା ଏମ୍. ଏ. କ୍ଲାସର ଦୁଇଜଣ ଛାତ୍ର ଥିଲେ । ଛୁଟିରେ ଘରକୁ ଆସିଥାନ୍ତି । ସେହି ଅନୁନ୍ନତ ଗ୍ରୋଟ ଜାଗାରେ, ଶିକ୍ଷାଶୀଳ ବ୍ୟକ୍ତି ପାଇଁ, ହୋଟେଲ ଆଡ଼୍ଡ଼ାରେ ଯୋଗ ଦେଇଛନ୍ତି । ଜଣେ କହିଲା—ଓଡ଼ିଶାବିଷୟରେ କିଛି କହନ୍ତୁ ।

କହିଲି—ଯଥା ଭାରତ ତଥା ଓଡ଼ିଶା, ବିଶେଷ କିଛି ଫରକ ନାହିଁ, ଭାଷା ଛାଡ଼ିଦେଲେ ସଂସ୍କୃତି ବି ଏକା ।

ସେମାନଙ୍କର ମନ ମାନିଲା ନାହିଁ । ଗୋଟେ ଝାଡ଼ା ଓ ଗୋଟେ ବାନ୍ତିରେ ବାପା ମରିଗଲେ' କହି ମହାପ୍ରସାଦ ଖାଇବା ଗୃହକ ସେମାନେ ଜାଣିଛନ୍ତି ।

ପଚାରିଲେ—ଓଡ଼ିଶାର ନିଦାନେ କଥା କହନ୍ତୁ ।

କହିଲି—'ସେ ବିଷୟରେ ଶ୍ରଦ୍ଧା, ଜ୍ଞାନ ବା ଅଭିଜ୍ଞତା ମୋର ନାହିଁ । ସେମାନେ ନା ଛେଡ଼ ବନ୍ଧା ।

ଫେରେ ପଚାରିଲେ—ଆପଣଙ୍କ ଅନୁମାନରେ କେଉଁ ଦଳ କ୍ଷମତାକୁ ଆସି ପାରନ୍ତି ? ଦେଖିଲି, କିଛିଟା କହିବାକୁ ହିଁ ପଡ଼ିବ । ବାଷ୍ପ ଛାଡ଼ିବା ପରେ ଅଟକିବା ଅସମ୍ଭବ ହେଲା ।

ଭାବୁଥିଲି ଯେ ରାଜନୈତିକ କ୍ଷେତ୍ରରେ କଂଗ୍ରେସର ହିଁ ସାଧନା ଓ ତ୍ୟାଗ ରହିଛି । କଂଗ୍ରେସର ନୈତିକତା ହିଁ ଉତ୍କୃଷ୍ଟ । ସେମାନେ ହିଁ ଆସିବାର କଥା । କିନ୍ତୁ ଅନ୍ୟାନ୍ୟ ବିରୋଧି ରାଜନୈତିକ ଦଳଗୁଡ଼ିକ ସେମାନଙ୍କର ନିଜ ସ୍ୱାର୍ଥ ଦୃଷ୍ଟିରୁ କଂଗ୍ରେସକୁ ଓ କଂଗ୍ରେସର କାର୍ଯ୍ୟକଳାପକୁ ସମାଲୋଚନା କରି ନିନ୍ଦିତ କରିବାକୁ ଚାହୁଁଛନ୍ତି । ସେ ଦଳର ନୈତିକତାକୁ ଭାଙ୍ଗିଦେବାର ଚେଷ୍ଟାରେ ଅଛନ୍ତି । ସେପରି କଲେ ହିଁ ସେମାନେ କ୍ଷମତାକୁ ଆସି ପାରିବେ ।

ଚାରିପଟକୁ ଚାହିଁଲି । ମୁଣ୍ଡପୋତି ଶୁଣି ଯାଉଛନ୍ତି । ଭାବ ଗ୍ରହଣ କରୁଛନ୍ତି । ଅଟକି ଗଲି ଭାବ ଜଣେ କହିଲା—

'କୁହନ୍ତୁ, କୁହନ୍ତୁ'

ସନ୍ଦେହ ହେଲା । ଭାବିଲି—କିଛି ଗୁଇନ୍ଦା ଗିରି ଚାଲିନି ତ ? ଏମ୍. ଏ. କ୍ଲାସର ଏ ଦୁଇଜଣ ଛାତ୍ର ଏଠି ଆସି ବସି ପଡ଼ିବା କାରଣ କଣ ? ଆରକ୍ଷୀ ଫାଣ୍ଡିର ଦୁଇଜଣ କର୍ମଚାରୀଙ୍କ ସମ୍ଭବତ ସେ ଦୁଇଜଣଙ୍କର ବେଶ ପଟେ । ଦେଖେଇ ହେବାକୁ ଇଚ୍ଛା ହେଲେ, ଭାବ, କଥା ଓ କର୍ମ ଅତିରଞ୍ଜିତ ହୋଇଥାଏ । ବିଶ୍ୱାସଭାଜନ ହେବାକୁ ଯାଇ; ଦେଖେଇ ହେବାକୁ ଯାଇ କହିବାକୁ ଇଚ୍ଛା କରି, ଅଧିକ ବାଷ୍ପ ଛାଡ଼ି କହିଲି—

'ବିଶେଷ କରି ସ୍ୱାଧିନତା ପରଠାରୁ କମ୍ୟୁନିଷ୍ଟମାନେ ଏ ଦିଗରେ ସର୍ବତୋଭାବେ ସଚେଷ୍ଟ । ଏହିମାନେ ହିଁ ବିଭିନ୍ନ ଦଳ ଭିତରେ ପଶି, ଭେଦି ଜାଗାରେ ରହି ସେମାନଙ୍କର ଗତି ବିଧିର ଦିଗ ନିରୂପଣ କରିବାକୁ ଚେଷ୍ଟା କରୁଛନ୍ତି । ମୁସ୍‌ଲିମ ଲିଗ ଭିତରେ ରହି ମୁସଲମାନଙ୍କୁ ଉତ୍ତେଜିତ କରିବେ, ସମାଜବାଦୀଙ୍କ

ଭିତରେ ରହି ଧର୍ମଘଟର ଉତ୍ତେଜନା କରିବେ । ସରକାରୀ କଳ ଭିତରେ ଥାଇ ଟଙ୍କା ଖାଇବେ'ଖୋଇବେ ଓ ସବୋତ୍ତର ଯୋଜନା ଗୁଡ଼ିକୁ ଭଣ୍ଡୁର କରିବେ । ଧ୍ୱାଦେଶିକତା ରୂପକ ବିଷମଞ୍ଜି ଏମାନେ ହିଁ ରୋପଣ କରୁଛନ୍ତି । ଏ ସବୁଥିର ଉଦ୍ଦେଶ୍ୟ ହେଲା ସାମାଜିକ ଓ ରାଜନୈତିକ କ୍ଷେତ୍ରରେ ବିଶୃଙ୍ଖଳା ଆଣିବା ।

ଲୋକଙ୍କୁ କର୍ମର ପ୍ରେରଣା ଯୋଗାଇ ପୃଥିବୀରେ ଦୁଇଟି ସୁଅ ଛୁଟୁଛି । ଗୋଟିଏ ପ୍ରେମର ଓ ଅନ୍ୟଟି ହିଂସାର । କିନ୍ତୁ ପ୍ରେମ ପଥ ଛାଡ଼ି, ଉଗ୍ରପନ୍ଥିମାନେ ହିଂସାର ସୁଅରେ ପହଁରିବାକୁ ଭଲ ପାଆନ୍ତି । ସାଧାରଣ ଚିନ୍ତାହୀନ ଲୋକେ ଏମାନଙ୍କ ଦ୍ୱାରା ମାତ୍ରାନୁପାତରେ ପ୍ରଭାବିତ ହେଉଛନ୍ତି । ସେମାନଙ୍କର ବିଶ୍ୱାସ ଯେ ବିନା ରକ୍ତ-ପାତରେ ସ୍ଥାୟୀ ସମାଜ ବା ରାଜ୍ୟ ପ୍ରତିଷ୍ଠା ହୋଇ ପାରିବ ନାହିଁ । ଅସନ୍ତୋଷ ଓ ବିଶୃଙ୍ଖଳା ରୂପକ ରୋଗ ନ ବ୍ୟାପିଲେ ରକ୍ତପାତ ସର୍ବଥା ଅସମ୍ଭବ । କଥାଟିରେ କିଛି ସତ୍ୟତା ଅଛି ।

ରୋଗୀର ଔଷଧ ଦରକାର । ରୋଗ ବଢ଼ି ସନ୍ନିପାତ ହେଲେ ବିଷ ଦରକାର । କିନ୍ତୁ ରୋଗୀ ମଣିଷକୁ ଭଲ କରିବା ପାଇଁ ସନ୍ନିପାତର ଅବସ୍ଥାକୁ ଆଣି ବିଷ ଦେବାଟା କେତେଦୂର ସମୀଚୀନ ?

ସେହିପରି ସମାଜ ଓ ରାଜନୈତିକ କ୍ଷେତ୍ରରେ ବିଶୃଙ୍ଖଳା ରୂପକ ରୋଗକୁ ବଢାଇ ସରକାର ଓ ସମାଜ ଧର୍ମକୁ ନିଶ୍ଚଳ କରି ରକ୍ତପାତରେ ନୂଆଁ ସମାଜ ଗଢ଼ିବାର ଯେ ଲକ୍ଷ—କଣ ବୁଦ୍ଧି-ମାନର କାର୍ଯ୍ୟ ?

ଏହାର କାରଣ ଅଛି ।

ଏମାନେ ପ୍ରତ୍ୟେକେ ଜଣେ ଜଣେ ଅତୃପ୍ତ ଆତ୍ମା । ଇଭ୍ ଫଳ ଖାଇଲା ଓ ସଇତାନ ମୁଣ୍ଡରେ ପଶିଲା । ମନରେ ଆସିଲା ଅଶାନ୍ତି । ଶାନ୍ତି କଣ ପାଇବେ ଭଙ୍ଗାରୁଜା ଡାମ ଭରି ଓ ଘରର ଛିଦ୍ର ଖୋଜି ? ସବୁ କ୍ଷେତ୍ରରେ ସମାଜବାଦ ପ୍ରତିଷ୍ଠିତ ହେଲେ ମଧ୍ୟ ଏମାନେ ଶାନ୍ତି ପାଇବେ ନାହିଁ । ଏରେବା ବଣରେ ଯଦୁକୁଳ ଧ୍ୱଂସ ପାଇଲା ଭଳି ମନର ଅଶାନ୍ତି ଏମାନଙ୍କୁ ନାଶ କରିବ ।

ଶାନ୍ତି ପାଇବାକୁ ହେଲେ ଆଦମ୍ ଓ ଇଭ୍‌କୁ ସଇତାନ ପ୍ରେରିତ ଫଳ ଭକ୍ଷଣରୁ ନିବୃତ୍ତାଇବାକୁ ହେବ । କାରଣ ସେମାନଙ୍କର ସନ୍ତାନ ଏହିମାନେ ।

ମୁଁ ଯାହା କହୁଛି ତାହା ପୋଥିପତ୍ରରୁ ନୁହେଁ । ଏ ସବୁ ଆଖିରେ ଦେଖିବା କଥା । ଚିନ୍ତା କରି ଗବେଷଣା କରିବା କଥା ।

ନିର୍ବାଚନରେ କଏ ଜିତିବ ତାର ଚିନ୍ତା ମୋତେ ନାହିଁ । ସମାଜ ତାର ସରକାର ଗଢ଼ିବ । ସେ ଅନୁସାରେ ଫଳ ପାଇବ । ଫଳ ଭୋଗି ଜ୍ଞାନ ପାଇ ଆଗେଇବ ।

ଜୀବନର ପ୍ରଥମ ଲକ୍ଷ୍ୟର ହାସଲ ପରେ ହିଁ ମୁଁ ଦ୍ୱିତୀୟ ଲକ୍ଷ୍ୟ ବରିବ ।

କୈଳାସ ଯାତ୍ରା ହେଉଛି ବର୍ତ୍ତମାନ ମୋ ଜୀବନର ଲକ୍ଷ୍ୟ ।

ସେମାନେ ତନ୍ମୟ ହୋଇ ଶୁଣି ଯାଉଥାନ୍ତି । ହିନ୍ଦୀ ମଧ୍ୟ ସୁସ୍ପଷ୍ଟ ହୋଇ ଆସି ଯାଉଥାଏ ।

ପଚାରିଲି—କିପରି ଲାଗିଲା ?

ଉତ୍ତର ମିଳିଲା—ଯ୍ୟେ ଭି କୁଛ୍ ପୁଛନେକି ବାତ୍ ହୈ ? ଆପ୍ ଜ୍ଞାନକି ଗଙ୍ଗା ବହାରହେଁ ହୈଁ, ଔର୍ ହମ୍ ଲୋକ୍ ଥୋଡ଼ା ହାତ୍, ମୁହଁ, ପାଁଓ୍ୱ ଧୋନା ଚାହତେ ହୈଁ ।

ଜଣିଲେ ପୈଶ୍ୱର୍ଯ୍ୟ କ୍ଷତ୍ରୀ, ହାରିଲେ ବ୍ରାହ୍ମଣ ବାପୁଡ଼ା । ମୋର ବା ଯାଏ ଆସେ କେତେ ? ହାର୍ଦ୍ଧିକ ପ୍ରଶଂସାଟି ଖୁବ୍ ଭଲ୍ ଲଗିଲ । ମନେ ହେଲ ଓ ହୋଇପାରେ ଯେ ସେମାନଙ୍କ ଭିତରେ କଏ ଗୁଇନ୍ଦା ଥିଲେ ଓ ତାହାକୁ ଛାଡ଼ିବା ପୂର୍ବରୁ ମୋର ମନୋଗତ ଜାଣିବାକୁ ଚାହୁଁଥିଲେ । ମୋର୍ ଫୁଟବଲ୍‌କୁ ପ୍ରଶଂସା କରିବା ସଙ୍ଗେ ସଙ୍ଗେ ଉସ୍ତ୍ରାହିତ ମଧ୍ୟ କରୁଥିଲେ । ଜଣେ କହିଲ—

ବରଂ ସେ ଗ୍ରୁକରିଟି ଦଳଟି ଯାଇ ନ ପାରନ୍ତି, କିନ୍ତୁ ଆପଣ ଯାଇ ପାରିବେ । କାରଣ ସେମାନଙ୍କର ଗୋଟିଏ ପୁରା ଟ୍ରେନ୍ ଜନାଣ ପନ ଅଛି । ଅନ୍ୟ ଉପରେ ନିର୍ଭର କରିବାକୁ ହେବ । କିନ୍ତୁ, ଆପଣ କିଛି ଅସୁବିଧା ହେଲେ ନିଜେ ବୋହି ଚାଲିଯିବେ—ଠିକ୍ ଠିକ୍ ।

ତା ପରଦିନ ସକାଳୁ, କିଦରୁ କଉ କଉ ଖବର ପାଇଲି ମୋର ଆସ୍‌କୋଟ ଯିବା ପାଇଁ ବସ୍ ସେହିକ୍ଷଣି ଛାଡ଼ିବା ଉପରେ । ତନ୍ତ୍ରସ୍ବାନ୍ଧି ଦୌଡ଼ିଗଲି । ଅଗ୍ରାଧୁଆ ଅଖିଆ ଥାଇ ବସ୍ ଧଲେ ।

ବାଟଯାକ ବର୍ଷା ହେଉଥାଏ । ନିଦ୍ରାପଦରେ ଏଗାରଟାକୁ ଆସ୍‌କୋଟରେ ପହଞ୍ଚିଲି ।

ଆସ୍‌କୋଟ—

ଆମର ବସ୍ ଯାଇ ପହଞ୍ଚିଛି, ଦେଖିଲି ପାଖରେ ଗୋଟିଏ ଟ୍ରକ୍ ଥୁଆ ହୋଇଛି । ସେଥିରେ ଜିନିଷ ପନ ଲଦା ହୋଇ ଗୋଟିଏ ଟାରପୋଲିନ୍ ଢଙ୍କା ହୋଇଛି । ତା ଉପରେ ଆଙ୍କୁଣ୍ଡି ଟୋପି ସହ ବର୍ଷାତି ପିନ୍ଧି, ଛତା ଫିଟାଇ ଜଣେ ବସିଛି । ଟ୍ରକ୍ ଆଗରେ ଜଣେ ଗୌରକାୟ ବଳିଷ୍ଠ ଯୁବକ ସାଧୁ ଶୁଭ୍ର ପୋଷାକ ପରିଧାନ କରି ଦଣ୍ଡାୟମାନ । ମୋର ସାଥି ଜଣେ କହିଲ—

'ଏଇ ସେମାନେ ଯାଉଛନ୍ତି, ଯାଇଛନ୍ତି ଦେଖ ।'

ସେ ଲୋକଟି ଠିକ୍ ଧରି ପାରିଥିଲା । ସାଧୁ ଜଣକ ପାଖକୁ ଯାଇ ପଚାରୁଛନ୍ତି, ମନର ଚୈତନ୍ୟ ବଳେଯ ଦେଖାଇଲା ବୋଧ ହେଲା । ବିସ୍ମୁରଣ ହେଲା । ହତଜମ୍ଭ ବୋଧ ହଲ । ସ୍ୱତଃ ଇଂରେଜୀରେ ବାହାରି ପଡ଼ିଲା—

'You are going to Kailas ?'

ମାନେ 'ଆପଣ କୈଳାସ ଯାଉଛନ୍ତି ?'

ସେ ମୋତେ ଆପାଦ ମସ୍ତକ ଦୁଇଥର ନିରୀକ୍ଷଣ କରି ବଙ୍ଗ-ଳାରେ ପଚାରିଲେ—

'ଆପଣ କଣ ହାବଡ଼ାଠାରୁ ଆସିଛନ୍ତି ?'

ଓଡ଼ିଶା ବାହାରେ, ମୁଁ ଯେତେବେଳେ ଇଂରେଜୀ କହେ, ଲୋକେ ପ୍ରଥମରେ ଧରି ନିଅନ୍ତି ଯେ ମୁଁ ମାନ୍ଦ୍ରାଜୀ, ଯଦି ହିନ୍ଦୀ କହେ ଧରି ନିଅନ୍ତି ମୁଁ ବଙ୍ଗାଳୀ । କିନ୍ତୁ ଇଂରେଜୀ କହିବା ସତ୍ତ୍ୱେ, 'କଲିକତା' ନ କହି 'ହାବଡ଼ା' କହିଛନ୍ତି । ସମୟ ନଷ୍ଟ ନ କରି ପ୍ରଶ୍ନର ଉତ୍ତର ଦେଲି—

ହିଁ ହାବଡ଼ା ଦେଇ ଭୁବନେଶ୍ୱରଠାରୁ ଆସୁଛି ।

ସେ ଜାଣିଲା ଭଳିଆ ମୁଣ୍ଡ ଲାଉଲେ । ସେ କହିଲେ ଯେ ତାଙ୍କୁ ଅନେକ ଲୋକଙ୍କର ବନ୍ଦୋବସ୍ତ କରିବାକୁ ପଡୁଛି । ସେହେତୁ ସେ ସେହିକ୍ଷଣି ବଡ଼ ବ୍ୟସ୍ତ । ସେମାନେ ବାହାରିବା ଉପରେ ଓ ଧାରଚୁଲା ଯାଇ ସେଠାରେ ଦୁଇଦିନ ରହିବେ । ମୁଁ ବରଂ ଧର୍ମ-ଶାଳାରେ ଦିନେ ଖଣ୍ଡେ ରହି ସେମାନଙ୍କୁ ଧାରଚୁଲାରେ ଭେଟିବା ଭଲ । ମୋର ମନ ମରିଗଲା । ମୁହିଁ ଶୁଖିଗଲା ।

ଭାବିଲି—'ଠିକ୍ ଅଛି, ସେତିକି ପାରିବ କରିବ ।'

କହିଲି—ହଉ ।

ପ୍ରକୃତରେ ସେ ଦଳ ଭିତର ରାଜନୀତି ଦ୍ୱାରା ପ୍ରଭାବିତ ହୋଇ ସେପରି କହିଥିଲେ ।

ସୈନିକ ସଂସ୍ଥାର କମାଣ୍ଡରର ଜଣକ ତାଙ୍କର ଘରକୁ ଯିବାକୁ ଅନୁରୋଧ କଲେ । କୌଣସି କାରଣରୁ ଲକ୍ଷଚ୍ୟୁତ ହୋଇପାରେ ବୋଲି ଉପରବର ମନା କଲି । ସେ ମୁହଁ ଶୁଖାଇ ଚାଲିଗଲେ ।

ଆରକ୍ଷୀ ସଂସ୍ଥାର ଦୁଇଜଣଙ୍କ ଭିତରୁ ଜଣେ ଶ୍ରୀବାସ୍ତବ ବାବୁ ମୋତେ ଥାନାକୁ ନେଇ ପରିଚୟ କରାଇ ଦେଲେ, ମୋତେ ଯେପରିକି ସେମାନେ ସବୁମତେ ସାହାଯ୍ୟ କରିବେ ଓ ପରେ ତାଙ୍କର ଛାଉଣୀକୁ ଯିବାକୁ ଅନୁରୋଧ କଲେ । ସାଙ୍ଗରେ ରହିଲେ ସକ୍ସେନା ବାବୁ ।

ଏହି ଭଦ୍ରଲୋକ ଜଣକ ବଦ୍ରିନାଥ ରାସ୍ତାରେ ଥିବା ଯୋଶୀ-ମଠ ଠାରେ ଶିଳ୍ପ ବିଭାଗର କୌଣସି ସ୍କୁଲରେ ଦରଜି ଶିକ୍ଷକ ଭାବରେ କାମ କରୁଥିଲେ । ବଦଳି ହୋଇଛି, ମୋର ରାସ୍ତାରେ ପଡ଼ିବା କୌଣସି ସ୍ଥାନର ସ୍କୁଲକୁ । କହିଲେ—

ଚାଲ, ସାଙ୍ଗ ହୋଇ ଯିବା । ଅନୁନ୍ନତ ଜାଗାରେ ଶିକ୍ଷକ ହିସାବରେ ମୋର ପ୍ରତିପତ୍ତି ବେଶୀ । ମୁଁ ତୁମକୁ ସାହାଯ୍ୟ କରିବି ।

ଦୁଇଜଣ ଯାକ ଗଲୁ, ଧର୍ମଶାଳାକୁ । ଧର୍ମଶାଳାର ରକ୍ଷକ ପଚାରିଲେ—

ଆପଣଙ୍କ ଭିତରୁ କିଏ ଯାତ୍ରୀ ଅଛନ୍ତି କି ?

କହିଲି—ହିଁ, ମୁଁ ଜଣେ କୈଳାସ ଯାତ୍ରୀ ।

ଜିଜ୍ଞାସିଲା—'ଏଠାର ନିୟମ ଅନୁସାରେ ଗୋଟିଏ ଖଟ ମିଳିବ ।'

ସେ ଗୋଟିଏ ଖଟ ଆଣିଦେଲା । କିନ୍ତୁ ଗାଡ଼ିରେ ସକ୍‌ସେନା ବାବୁ କହୁଥିଲେ ଯେ ସେ କେବେ ଖଟରେ ଶୋଇ ନାହାନ୍ତି । ତେଣୁ ସେ ଖଟରେ ଶୋଇଲେ ଓ ମୁଁ ତଳେ ।

ସେଠାରେ ଜଣେ ରାଜା ଅଛନ୍ତି । ସେ ଧର୍ମଶାଳାଟି ତାଙ୍କର । ତେଣୁ ଯାତ୍ରୀଙ୍କ ପାଇଁ ଅଲଗା ସୁବିଧା । ରାଜ୍ୟ ମିଶ୍ରଣ ପରେ ମଧ୍ୟ ତାଙ୍କର ଅନେକଗୁଡ଼ା ଖାତିର ଅଛି । ଏବେ ମଧ୍ୟ ତାଙ୍କ ଦ୍ୱାରା ହିଁ ଖଜଣା ଆଦାୟ ହୋଇଥାଏ ।

ସେଠାରେ ଅଗ୍ରୱାଲ ହୋଟେଲଟି ଖୁବ୍ ଭଲ । ଘଡ଼ି ଉପରେ ସ୍ତ୍ରୀ ରୋଟି ଓ ପିଢ଼ ଦେଇ ପରଷନ୍ତି ଅଗର୍‌ୱାଲ ବାବୁ । କିନ୍ତୁ ଯେତେବେଳେ ରୁଟିର ନମ୍ବର ବଢ଼ି ଚାଲିଲା, ତାର ଆତଙ୍କ ବୃଦ୍ଧି କରି, ପରକୁ ପର ଦୁଇଟି ରୁଟିର ସମୟର ବ୍ୟବଧାନ ବଢ଼ି ଚାଲିଲା, ମୋର ଅଙ୍କ ବଢ଼େଇ ଚାଲେ । ତାର ଆମ୍ବିଳା ମୁହଁ ଦେଖି ଦୁଇଜଣଙ୍କର ଆତଙ୍କ ଶେଷ କଲି ଭାତ ମାଗିକରି । ହେଲେ ମଧ୍ୟ, ଖାଇବାଟା ଖୁବ୍ ଭଲ କହିବାକୁ ହେବ । ଟଣ୍ଡା ପାଗରେ ଘିଅ ଦିଆ ଗରମ ରୁଟି ଖୁବ୍ ତୃପ୍ତିଦାୟକ । ଅନେକ ଦିନ ଧରି ପେଟପୂରି ସୁସ୍ୱାଦ ଭୋଜନ ମିଳି ନ ଥିଲା । ଅନ୍ୟାନ୍ୟ ହୋଟେଲରେ ବିଶେଷ ଭାବରେ ରନ୍ଧା ଖାଦ୍ୟରୁ କିଛି ଯାଚିଲା ଭଳିଆ ଅଗ୍ରବାଲ ବାବୁ ଯାଚନ୍ତି ଆଚାର—ଆମ୍ବ, ଲେମ୍ବୁ ଓ ଲଙ୍କାର, ନୂଆ ପୁରୁଣା, ଅନେକ କିସମର ଓ ନାନା ବର୍ଣ୍ଣର । ସେଠାରେ ଅନ୍ୟ ହୋଟେଲରେ ଗୋ ଓ ମଦ ବିକାଯାଏ । ଅଗ୍ରବାଲ ହୋଟେଲରେ କିନ୍ତୁ ମଦ ବିକାଯାଏ ନାହିଁ । ସେ ସେଠାରେ ଦ୍ୱିତୀୟ ସ୍ତ୍ରୀ ନେଇ ଅଛନ୍ତି । ଅନ୍ୟ ସ୍ତ୍ରୀମାନଙ୍କ ପିଲା ଛୁଆ ଅଛନ୍ତି, କିନ୍ତୁ 'ଦେଶ'ରେ ।

ଏଠାରେ ବିବାହର ନିୟମ ଅଲଗା ବୋଲି ଶୁଣିଲି । ବରକୁ ଶାଶୁ ଶ୍ୱଶୁରଙ୍କ ପାଖରେ ପ୍ରଣାମି ଦେବାକୁ ପଡ଼େ । ତେଣୁ ସମ-ତଳର ଲୋକେ, ଏଠାରେ କନ୍ୟାଙ୍କୁ ବିକାଯାଏ ବୋଲି ଅଛା କରନ୍ତି । କେତେକ ଯାଗାରେ ଆମର ଯୌତୁକ ବରର ଦାବୀ ପୂରଣ ହେଲେ ବିବାହ ହୁଏ, ସେଠାର ପ୍ରଣାମିର ଅପବ୍ୟବହାର ହୋଇଥାଏ । ଏହି କଥାକୁ 'ଝିଅ ବିକନ୍ତି' ବୋଲି କହନ୍ତି ।

ଖାଇ ସାରି ଧର୍ମଶାଳାରେ ପଡ଼ିଥିଲି । ପାଖରେ ଗୋଟିଏ ଲାଇସେନ୍ସ ପ୍ରାପ୍ତ ମଦ ଦୋକାନ । ତା ପାଖକୁ ଲାଗି ଦଶଫୁଟ ଲମ୍ବା ଓ ସେତିକି ଓସାରର ଖଣ୍ଡେ ଜମିକୁ ଜଣେ ଯୁବକ ଖୋଳି ଚାଲିଥିଲା । 'କଣ କରିବ ?' ବୋଲି ପଚାରିବାରୁ କହିଲା— 'ମକ୍କା ପୋତିବ ।'

ଆସ୍କୋଟ ଗୋଟାଏ ଦୁଇ ତିନି ହଜାର ଉଚ୍ଚ ପାହାଡ଼ ଉପରେ ଅବସ୍ଥିତ । ଗାଁଟିର ଉଚ୍ଚତା ସମୁଦ୍ର ପତ୍ତନଠାରୁ ପ୍ରାୟ ପାଞ୍ଚ ହଜାର ଫୁଟ ଉପରେ । ବେଶ୍ ଥଣ୍ଡା । ଗାଁକୁ ଘାଡ଼ ଘୂରି କଡ଼ରେ ବୃକ୍ଷ । ଏଠାରୁ ପାଣି ନଳଟି କିଛି ଦୂରରେ ଓ ତଳେ ରହିଛି । ତେଣୁ ସ୍ତ୍ରୀ ଲୋକମାନଙ୍କୁ ବେଶି କଷ୍ଟ ହୁଏ । ଏଠାକାର ପାଠିଆଗୁଡ଼ିକ ସମ୍ବଲପୁରୀ ଢଙ୍ଗରେ, ତମ୍ବାରେ ତିଆରି । ମୁହଁ ଫାନ୍ଦରେ ଖୋଟିଏ ବଲା । ବଲା ଭିତର ଦେଇ ଗୋଟିଏ ଫିତା ଯାଇଛି । ପାଠିଆକୁ ପିଠିରେ ରଖି ଫିତାକୁ କପାଳରେ ଟାଣି ସ୍ତ୍ରୀ ଲୋକମାନେ ପାଣି ନିଅନ୍ତି ।

ଖାଇବେଳେ ଧର୍ମଶାଳାରେ ଶୋଇଥିଲି ଜଣେ କନେଷ୍ଟବଳ ଆସି କଥାବାର୍ତ୍ତା କଲେ । ସିଧା ସଳଖ ଦୁଇ ଚାରିଟା ପ୍ରଶ୍ନ ପଚାରି ଦେଲେ ।

ଯଥା — ଘର ଭେଣ୍ଟି, ଢାମ୍‌କଣ ୧, ଇତ୍ୟାଦି । ସେ କଟକ ଓ ଭୁବନେଶ୍ୱର ଇତ୍ୟାଦ ଦେଖିଛନ୍ତି । ଆରତୀ ଜିଲ୍ଲାର କୌଶଳି କ୍ରୀଡ଼ା ପ୍ରତିଯୋଗିତା ଯେତେବେଳେ ହେଉଥିଲା, ସେତେବେଳେ । ଏଥି ପୂର୍ବେ ଝାନ୍‌ସୀରେ ଥିଲେ । କଥାଟା ଯେମେ ମାନ୍‌ସିଂ ଓ ଛପା ତାଙ୍କା ପୂର୍ବ ଆଡ଼କୁ ଗଲା । ସେ ବିଷୟରେ ନିଜର ଅନୁଭୂତି ଥାଉ ବା ନ ଥାଉ ଘଟଣା ଗୁଡ଼ିକ ଖୁବ୍ ଉଚ୍ଚ ତଳ କରି କହୁଥିଲେ । ମୁଁ ମଧ୍ୟ ସେମାନଙ୍କ ବିଷୟରେ କିଛି ଜାଣି ଥିବାରୁ ତାଙ୍କୁ କହିବାରେ ଉତ୍ସାହ ଦେଲି ଓ କଥାଗୁଡ଼ିକ ଉପଭୋଗ କଲି । ଶେଷରେ ସେ କହିଲେ ଯେ ସେ ବନ୍ଧୁ ଭଳି କେତେକ କଥା କହିବାକୁ ଚାହାନ୍ତି । ତାଙ୍କର ଖୁବ୍ ବିଶ୍ୱାସ ଯେ ମୁଁ, କହିଣି ଘଟୋଟ ନେଇ ଓ ତେବେଲି ତୀର୍ଥ ଯାତ୍ରାରେ ମୋର କାମନା । କିନ୍ତୁ ବର୍ତ୍ତମାନରେ ଭୟ ଥିବା ହେତୁ, ନିଜକୁ ସରକାରୀ କର୍ମଚାରୀ ବୋଲି ପରିଚୟ ନ ଦେବାକୁ କହୁଥିଲେ । ଏପରିକି ଆମର ଟେକ୍ ପୋଷ୍ଟରେ ମଧ୍ୟ ସେ କଥା ପ୍ରକାଶ ନ କରିବାକୁ କହିଲେ । କାରଣ ଭୟ ଥିବାହେତୁ, ହୁଏତ ଏମାନେ ମୋତେ ଛାଡ଼ି ନ ପାରନ୍ତି । ଚୀନା ଲୋକଙ୍କର ତ ଅନ୍ୟ କିଛି ଥାଇ ନାହିଁ ଓ କେବଳ ଦଳୀୟ ଲୋକଙ୍କୁ ସରକାରୀ ଚାକିରିରେ ସ୍ଥାନ ଦିଅନ୍ତି, ସେମାନେ ଭାବନ୍ତି ଯେ ପ୍ରତ୍ୟେକ ସର-କାରୀ କର୍ମଚାରୀ କଂଗ୍ରେସ ଦଳର ଓ ତେଣୁ ବୁର୍ଜୁଆ ଶ୍ରେଣୀରେ ଅନ୍ତର୍ଭୁକ୍ତ । ଇଂରେଜୀରେ କଥାବାର୍ତ୍ତା କରିବାକୁ ସେ ମନା କରୁଥିଲେ । ଅନ୍ତରରେ ଏହି ଉପଦେଶଟି ମାନିନେଲି । ଏହି କଥାଟା ଯାହାକୁ ଟିକିଏ ରୋମାଞ୍ଚକର ରଙ୍ଗ ଦେଇଥିଲା ।

ଚାରିଟା ବେଳକୁ ପୋଲିସ ଛାଉଣୀ ପର୍ଯ୍ୟନ୍ତ ବୁଲି ଯାଇଥିଲି । ସେଠାରେ ଆର୍. ଏମ୍. ଓ. ଆଗୁଆ ଗର୍ବ ସ୍ଥାନ ଯାଞ୍ଚଥିଲି (ଚେକ୍

ପୋଷ୍ଟ) ଅଧିକ ପାଖକୁ ଗୋଟିଏ ନିଦ୍ଧୋଠ ପତ୍ର ଦେଲେ । ସେହି ଜାଗାଠାରୁ ଯିବାଟା ବିଶେଷ କଷ୍ଟ ହୋଇଥାଏ ।

ତା ପରଦିନ ସକାଳେ ଚୌକିଦାର ଧାରଚୁଲା ଯାଉଥିବା ଗୋଟିଏ ଲୋକକୁ ଧରି ଆଣିଲା । ଦୁଇଟଙ୍କା ଆଠଅଣା ନେଇ ମୋର ଜିନିଷ ପତ୍ର ନେବାକୁ ସେ ମାଗିଥିଲା । କିନ୍ତୁ ଘରକୁ ଯାଇ ଖବର ଦେଲା ଯେ 'ପାଞ୍ଚଟଙ୍କା ନ ହେଲେ ନେବ ନାହିଁ ।' ମନା କରିଦେଲା ।

ମୋତେ ଟିକିଏ କାଶ ଓ ଥଣ୍ଡା ଧରିଥିଲା । ପାହାଡ଼ ଉପରେ, ଯାହା ସମୟରେ, କାଶ ଟିକିଏ ବ୍ୟତିବ୍ୟସ୍ତ କରିଦିଏ । ସେଥି ପାଇଁ ମୁଁ ସଜାଗ ଥାଏ ! ପାଳକ ଜଣକ ସେଠାର ଡାକ୍ତର ବିର୍ଜି-ଭଣ୍ଡାରି ବାବୁ ସହିତ ପରିଚୟ କରିଦେଲା ।

ରୋଗ କହି ଔଷଧ ମାଗିବାରୁ ସେ କହିଲେ—

ଔଷଧ କଣ ଧରି ବୁଲୁଛ ? ଉପରକୁ ଆସନ୍ତୁ ।

କଥା ବାର୍ତ୍ତା ହେବା, ଔଷଧ ଦେବି ।

କିଛି ସମୟ ପରେ ତାଙ୍କ ବସାକୁ ଗଲି । ବସନ୍ତୁ କହି ଗପ ଆରମ୍ଭିଲେ ।

ତାଙ୍କର ବାପା ଲକ୍ଷାଧିକ ଟଙ୍କାର ମାଲିକ । ଘର ହାଜିପୁରରେ । ଅତି ପିଲାଦିନେ ବାପା ସହିତ ଅପଡ଼ ହେବାରୁ ଘର ଛାଡ଼ି ଚାଲି ଆସିଥିଲେ । ନିଜ ହାତରେ ନିଜେ ଗଢ଼ି ହେବାର ସଙ୍କଳ୍ପ ନେଇ ସେ ଡାକ୍ତରୀ ପଢ଼ିଛନ୍ତି । ନିଜର ଜନ୍ମ ତାରିଖ ସେ ଜାଣନ୍ତି ନାହିଁ ।

ଏତିକି କହିସାରି ସେ ମୋର ଘର କଥା ପଚାରିଲେ ।

କହିବାରୁ କହିଲେ—'ଉଡ଼େ ମଡନ୍' କଥା କହନ୍ତି କାହିଁକି?

ମୁଁ ବୁଝି ପାରେ ।

ମୁଣ୍ଡରେ ସାଗ ଚଢ଼ି ଅସୁଥିବା ଭାବୁଛି,—

ବଙ୍ଗ ଭଙ୍ଗ ହେଲା । କଲିକତା ବଦଳିଲା । କିନ୍ତୁ ସ୍ୱାଙ୍କର ବ୍ରିଟିଶ ସମୟର ପ୍ରଭୁତ୍ୱ ଭାବ ଯାଇ ନାହିଁ । ବଂଶ ବର୍ଷ ପୂର୍ବର ଅଧୌତ ଅବଙ୍କଲ । ଏ ଯୁଗର ଏ ଜଣେ Ripvan waikl କିନ୍ତୁ ତାରିଖ ଜାଣେ ନାହିଁ । ମା କ୍ଷୀର ପିଇ ନାହିଁ—ଛୁଡ ଛୁଡ । ତୀର୍ଥ ମୋର ଲକ୍ଷ । ବୁଝିବାକୁ ଚେଷ୍ଟା କରିବା ମୋର କର୍ତ୍ତବ୍ୟ ।

ସେ କହି ଚାଲିଲେ—ଡାକ୍ତର୍‌ ପଢ଼ି ବହାର ଓ ମଧ୍ୟ ପ୍ରଦେଶରେ କାମ କରି, ଟିକିଏ ପରିବର୍ତ୍ତନ ପାଇଁ ଏଠି ଅଛି—ଜନ ବସତିର ଦୂରରେ, ଗୋଟିଏ ସ୍ୱାସ୍ଥ୍ୟ ନିବାସରେ । ଏଟା ଶେଷ ଜାଗା ଯେଉଁଠି ଗାଡ଼ି ମୋଟର ଯୋଗାଯୋଗ ଅଛି । ଟେଲିଗ୍ରାଫ୍ ମଧ୍ୟ ଅଛି ।

ଭାବିଲି—ସ୍ୱାଙ୍କୁ କହନ୍ତି ଫୁଟାଣି । ସାହୁ ଭିତରେ ମାଛ ।

ଯିବାକୁ ବାହାରିବାରୁ, କହିଲେ—

'ବସନ୍ତୁ, ଔଷଧ ମଗାଇ ପଠାଇଛି (ଜଣକୁ ପଠାଇଲେ) ଅନେକ ଦିନ ପରେ ସେ ଆଉ କାହାରି ଲୋକ ହୋଇ ଆପଣ ଆସିଛନ୍ତି । ଗପ ଟିକିଏ ହେଉ ।'

ମୁଁ ଟିକିଏ ଚେୟାରରେ ଆଉଜି ଗଲି ।

କହି ଚାଲିଲେ—

ବେଳେ ବେଳେ ଆପଣଙ୍କ ପରି ସେ ପଟରୁ ଲୋକ ଆସନ୍ତି । ଥରେ ଆଠଜଣ ବନ୍ଧୁ ଆସିଥିଲେ । ଚାରିଜଣ ଡାକ୍ତର୍‌ ଓ ଚାରିଜଣ ପୁରୁଷ । ପୁରୁଷ ଚାରିଜଣ ବଙ୍ଗାଳି ହେଲେ ମଧ୍ୟ, ପୁରୁଷ

ପରିବେଶରେ ପଡ଼ି କଥାଯାତ୍ରୀ ଓ ଚାଙ୍ଗହାଙ୍କ ତିନିଏ ଅଲଗା ଥିଲେ । ସେମାନେ ପ୍ରଥମରେ ବଦ୍ରୀନାଥ ଯାଇ, ସେ ବାଟ ଦେଇ କୈଳାସ ଯାଇଥିଲେ । ତିବ୍ବତରେ ପହଞ୍ଚିଲା ପରେ ପୁଣେର ଗୃହିଣୀ ଓ ହାବଡ଼ାର ଗୃହିଣୀଙ୍କ ଭିତରେ ଅନମେଳ ହୋଇ ଝଗଡ଼ା ହୋଇ-ଥିଲା । ସେଠାରୁ ସେ ଫେରି ଏବାଟେ ଦେଇ ଏଠାରେ ପହଞ୍ଚିଲେ ।

ଏଠାରେ ମୋର ତିନିଏ ସନ୍ଦେହ ହେଲା । ତିନିଏ ପ୍ରଶ୍ନ କରିବାରୁ ବିରକ୍ତ ହୋଇ ଦବାଇ ଦେଇ କହିଲେ—କଥାଟା ଆଗ ଶୁଣିସାର ।

ସେ କହି ଚାଲିଲେ—

ଏଠାକୁ ଆସିଲା ସମୟରେ ସେମାନଙ୍କ ଅବସ୍ଥା ଖୁବ୍ ଖରାପ ଥିଲା । ସେମାନଙ୍କର ଶୁଶ୍ରୂଷା କରି ହାତରେ କିଛି ପଇସା ଦେଇ ବିଦାୟ କରି ଦେଇଥିଲି ।

ଜାତିରେ ଗୋଟେ ହେଲେ ମଧ, ଅନ୍ୟ ପ୍ରଦେଶର ହାଓଆ ବାଜି, ସାମାନ୍ୟ ବଦଳି ଯାଇଥିବାରୁ, ଅମେଳ ହୋଇ, ବାଛକୁଠ କଟୁ କଥା ଝଗଡ଼ା କରି, ସେମାନଙ୍କୁ ବାହୁଡ଼ିବାକୁ ପଡ଼ିଥିଲା । ତୁଚ୍ଛ କଥାଟାରେ । କଥାଗୁଡ଼ିକ କିପରି ହସାଇ ରଖି କହୁଥିଲାପରି ଲାଗିଲା ! ବୁଝିଲି, ପିଲାବେଳର ଅଶାନ୍ତିର ଗହ୍ୱରଦାଗକୁ ପ୍ରଚ୍ଛଦ-ପଟରେ ରଖି ସେ କଣ୍ଠ ଯାଉଥାଏ ଓ ତା ମୁଣ୍ଡରେ ଥିବା ପ୍ରାଦେଶିକ ଉକ୍ତା ମୋ ମୁଣ୍ଡରେ ଅଛି ଭବ ତାର ଚକସ୍ତା ଲକ୍ଷୁଥାଏ ।

କାଶ ପାଇଁ ଲବସ୍ରକ ଔଷଧ ଓ ଇନ୍‌ଫ୍ଲୁଏନ୍‌ଜା ପାଇଁ ବଟିକା ଦେଲେ । ଶେଷରେ ମାନସରୋବରରୁ କିଛି ମାଛ ତାଙ୍କ ପାଇଁ ଆଣିବାକୁ କହିଲେ ।

ଭାବିଲି—'ଏଠି ମାଛ ପାଇବାକୁ ହେଉଛି ବୋଲି ବୋଧହୁଏ କହୁଛନ୍ତି' ଓ ହସିଲି ।

ବୁଝିପାରି କହିଲି ! ମାନ ସରୋବରରେ ସବୁ ଶ୍ରେଣୀର ମାଛ ମିଳେ ।

ତାହା ଗ୍ରହ କପ୍ତାନରେ ଧୂପଦେଇ ବ୍ୟବହାର କରାଯାଏ । ଆଣିଦେବ କହି, ନମସ୍କାରଟିଏ କରି ଚାଲି ଆସିଲି ।

ଅସ୍କୋଟରେ ବେଶି ସମୟ ଅଟକିଯିବାରୁ ଓ ଯିବାର ସମ୍ଭାବନା ନ ଦେଖିବାରୁ ଟିକିଏ ବିବ୍ରତ ଓ ଚିନ୍ତିତ ହୋଇ ପଡ଼ିଥିଲି । ଏବେତ କୁଲି ମିଳୁ ନଥିଲେ, ତା ଛଡ଼ା 'ଠେକ' ଡାଇଭର ନେବ ବୋଲି କହି ସକାଳେ ନେଇ ନଥିଲା । ରାତିରେ ହୋଟେଲ ମାଲିକ ଉପଦେଶ ଦେଲାଯେ ସେ ଟଙ୍କା ନେବାକୁ ଚାହେଁ ଓ ଦେବାକୁ ହିଁ ହେବ । କର୍ନେଲ ପୃଥିବୀବଲ୍ଲଭର କର୍ମଚାରୀ ସତ୍ତ୍ୱବାକୁ ମଧ୍ୟ ସେଇ ମତ ପ୍ରକାଶ କରିଥିଲେ ଓ ଡ୍ରାଇଭର ଆଉ ଦିନ ସକାଳୁ ମୋଟର ମୋତେ ଛାଡ଼ି ନଯାଏ ସେପରି ତାକୁ କହି ରଖିବାକୁ ନିର୍ଭର ପରାମର୍ଶ ଦେଲେ ।

କଥା କଣ ହେଲାକି, ଅସ୍କୋଟଠାରୁ ଧାରଚୁଲା ପର୍ଯ୍ୟନ୍ତ ମୋଟର ସଡ଼କ ତିଆରି ହୋଇଥିଲା । କିନ୍ତୁ ବର୍ଷା ହେତୁ ଠାଏଁ ଠାଏଁ ଭାଙ୍ଗିଯାଇଥିବାରୁ ଓ ମରାମତିରେ ବେଶି ଡେରି ହେଉ-ଥିବା ହେତୁ, ଗାଡ଼ି ଚଳାଚଳ ବନ୍ଦ ହୋଇଯାଇଥିଲା ! କିନ୍ତୁ, ମଝିବାଟରେ ଥିବା ବାହ୍‌ଦାକୋଟ ପର୍ଯ୍ୟନ୍ତ ରାସ୍ତା ଠିକ୍‌ଥିବାରୁ ପୃଥିବୀବଲ୍ଲଭର 'ଠେକ' ତାକୁ ନେଇ ସେଠାପର୍ଯ୍ୟନ୍ତ ଯାଏ । ସେଠାରୁ ତାକୁ ଘୋଡ଼ା ପିଠିରେ ଧାରଚୁଲା ଯାଏ ।

ଅସ୍କୋଟ ଛାଡ଼ିଲୁ ଜୁନ୍ ୧୪ ତାରିଖ—

ତା ପରଦିନ ସକାଳୁ ପୂଜାପାଠ ସାରି ପୂର୍ବିବସ୍ତଗର 'ଠେଳ'ରେ ବସିଲୁ । ସାଙ୍ଗରେ ସକ୍ସେନାବାବୁ । ଗାଡ଼ି ଘାଟି ସଡ଼କ ଦେଇ ପାହାଡ଼ ଉପରୁ ଓହ୍ଲାଇ ଆସିଲା ।

ଘାଟି ଶେଷରେ, ପୋଲ ପାଖରେ ଗୋଟି ଦୋକାନଟିଏ ଥିଲା । ସେଠାରେ ଅଣାକର ମଟର ସିଝା ଖାଇଲୁ । ତାହା ଅଲଣା ଥିଲା । ସାଙ୍ଗକୁ ଅମ୍ବ ଚଟଣି ଦେଇଥିଲା । ଏପଟେ, ଏହି ସମୟଟା କଞ୍ଚା ଅମ୍ବର ଦିନ । ଲୋକଟିକୁ ଚାରିଅଣିଟେ ଦେବାରୁ ସେ ଅଠର ନୂଆଁ ପଇସା ଫେରାଇ । ଆପତ୍ତି କଲୁ । ଛ' ପଇସା ଲେଖା ତିନି ଭାଗ କରି ବୁଝାଇ ଦେଲା । ମୁହଁର ଭାବଭଙ୍ଗି ଜଣାଇ ଦେଇଥିଲା ଯେ ସେ ତାହାର ଚୂଡ଼ାନ୍ତ ନିଷ୍ପତ୍ତି ଦେଇ ସାରିଥିଲା । ମୁଁ ତାହା ମାନି ନେଲି ।

ବାଗେଶ୍ୱରରେ ଆଠଟା ପଇଁଚାଳିଶରେ ପହଞ୍ଚିଲୁ । ସେଠାରେ ଗୋଟିଏ ଗ୍ଲେଟ ହୋଟେଲ ଥିଲା । ପାହାଡ଼ିଆ ନାଲି ବଗଡ଼ା ଚାଉଳର ଭାତ ଓ କଞ୍ଚା ମସଲା ଦିଆ ଗୋଟା ବରିର ଡାଲି । ପାରୁଶ ଟୋକାକୁ ଏକ ଟଙ୍କା । ଆଠଅଣା ଦେଇ ଅଧା ପାରୁଶ ଖାଇଲୁ । ବାଗେଶ୍ୱର ସମୁଦ୍ର ପତ୍ତନଠାରୁ ଦୁଇ ହଜାର ଫୁଟ ଉଚ୍ଚରେ ଅବସ୍ଥିତ । ତେଣୁ ଜାଗାଟା ବେଶ ଗରମ ।

ଖବର ପାଇଲୁ ଯେ ଧାରଚୁଲାରୁ ପୂର୍ବି ବସ୍ତଗର ଡାକ, ଘୋଡ଼ା ଉପରେ ବୋଝେଇ ହୋଇ ଆସିବାର ଅଛି । ଅନେକ ସମୟ ଅପେକ୍ଷା କରିବା ପରେ, ବାଗୁଡ଼ିବା ଘୋଡ଼ା ଉପରେ 'ମାଲ' ଲଦି ଆମେ ଚାଲିଲୁ । ରାସ୍ତା କଡ଼ପାଖ ସେଠି ଖାଲି ଘର ।

ଶୁଣିବାକୁ ପାଇଲି ଯେ ଭୁଟିଆ ଲୋକମାନେ ଶୀତ ଦିନରେ ଛେଳି ମେଣ୍ଢାପଲ ଧରି ତଳକୁ ଚାଲି ଆସନ୍ତି । ଏ ଗୁଡ଼ିକ ହେଲା ସେମାନଙ୍କର ଶୀତ—ନିବାସ ।

ଅଧିକାଂଶ ଘରଗୁଡ଼ିକ ପଥରରେ ତିଆରି । ସୌଖିନାନୁପାତରେ ଦୁଆର ମୁହଁଟି ବା ମହଲାଟିଏ ବା ପୂରା ଘରଟା କାଠରେ ତିଆରି ହୋଇଥାଏ । କାଠଗୁଡ଼ିକ କାରୁ କାର୍ଯ୍ୟରେ ପୂର୍ଣ୍ଣ । କାରୁ କାର୍ଯ୍ୟପୂର୍ଣ୍ଣ ଛବିଗୁଡ଼ିକ ଦେଖିଲେ ମନରେ ଭୟ ଜାତହୁଏ । କଙ୍କାଳ ଦେହେଇ । ଭୟ ଓ ଦୁଷ୍ଟ ଶକ୍ତିକୁ ଏଡ଼ାଇବା ପାଇଁ ଏପରି କରାଯାଏ ବୋଲି ଶୁଣିଲି ।

ମଟର ଚଳ ସଡ଼କଟି କାଳୀନଦୀ କୂଳରେ କୂଳରେ ଯାଇଥାଏ । ଉଠାଣି ଗଡ଼ାଣି ନାହିଁ । ଦଶ ମାଇଲ ରାସ୍ତା ଅନାୟାସରେ ଚାଲି ଚାଲି ପହଞ୍ଚିଲି, ଧାରଚୁଲାରେ ।

ଧାରଚୁଲା ୩୦୦୦ । ଚାଲିଲୁ ୧୦ ମାଇଲ—

ପ୍ରାୟ ଗାଁ ମୁଣ୍ଡରେ ପହଞ୍ଚିଛୁ, ନଦୀ ଆରପଟରେ ଥିବା ସମତଳ ଜାଗାଟାରେ ଗୋଟିଏ ପର୍ଦ୍ଦା ଟଣା ଯାଇଛି ଓ ସଭା ହେଉଛି । ତା ପାଖକୁ ଲାଗି ପାହାଡ଼ ମୂଳରେ ଗୋଟିଏ ଗାଁ । ଶୁଣିଲି ତାର ନାମ ଜାରଚୁଲା , ନେପାଳ ରାଜ୍ୟ ଭିତରେ । ନେପାଳ ରାଜାଙ୍କର କୌଣସି ଉଚ୍ଚ କ୍ଷମତା ବିଶିଷ୍ଟ କର୍ମଚାରୀ, ଗସ୍ତରେ ସେଠିକୁ ଆସିଥିବାର ଶୁଣିଲି ।

ସକ୍ସେନା ବାବୁ ଓ ମୁଁ ଦୁହେଁ ଯାଇ ପହଞ୍ଚିଲୁ ଶିଳ୍ପ ବିଭାଗର ଗୋଟିଏ କାରଖାନା ଭିତରେ—ଲୋକଙ୍କ କଥାରେ 'ଇଣ୍ଡାଷ୍ଟ୍ରି' ଭିତରେ । ଘର ତିଆରି ସରିଥାଏ, କଳ ଭିତରେ କାଠକାମ ଚାଲିଥିଲା । ଘର ଭିତରଟାସାରା କାଠଗୁଣ୍ଡ ଓ କାଠ ଛେଳା

ପଡ଼ିଥିଲ । କେଉଁଠି ଗଧେ ବଦଳରେ ତ କେଉଁଠି ହାତେ ବଦଳରେ । ସକ୍‌ସେନା ବାବୁ ଏକମାତ୍ର କାଠପେଢ଼ି ଥିବା ଜାଗାରେ ଗଡ଼ୁରି ପକାଇ, ପାଖରେ ଜିନିଷ ପତ୍ର ସବୁ ରଖିଲେ । କୌଣସି ଗୋଟିଏ ବଡ଼ ମେସିନ୍ ପାଖରେ ପଡ଼ିଥିବା ଦୁଇଟି କାଠପଟାକୁ ଯୋଡ଼ି ମୋର କମ୍ବଳ ପକାଇଲେ ।

ଶୁଣିଲି ଯାତ୍ରୀମାନେ ସବୁ ଡ଼ାକ ବଙ୍ଗଳାରେ । ସେଠାକୁ ଯାଇ ସ୍ୱାମିଜୀଙ୍କୁ ଭେଟିଲି । ଅନ୍ୟ ଯାତ୍ରୀମାନେ ବୁଲି ଯାଇଥିଲେ । ସ୍ୱାମିଜୀ ଖୁବ୍ ଆଦର ସତ୍କାରରେ ଅଭ୍ୟର୍ଥନା କଲେ । ଭିତରୁ କିଛି ଘିଅ, କସ୍‌ମିସ୍, ଚକୋଲେଟ୍ ଆଣିଦେଲେ । ମୋର ପ୍ରସ୍ତୁତି କେତେ ଶୁଣି ସାରି, ବାଡ଼ିରେ ଲୁହା ଗୋଳ ବସାଇବାକୁ ଓ ହାତେ ଜଙ୍ଗଲୀ ଯୋତା କିଣିବାକୁ ଉପଦେଶ ଦେଲେ । ମୁଣ୍ଡରୁ ଗୋଟିଏ ଚିନ୍ତା ଗଲା । ମୋର ପ୍ରସ୍ତୁତି ଉପରେ ମୋର ବିଶ୍ୱାସ ଆସିଲା ।

ଏହିପରି ସମୟରେ ସେଠାର ଚେକ୍‌ପୋଷ୍ଟ ଅଧିକାରୀ ଆସି ପହଞ୍ଚିଲେ । ତାଙ୍କୁ କହିଲେ—

'ଏ ଜଣେ ଆମ ଦଳର ଲୋକ, ପଛରେ ପଡ଼ି ଯାଇଥିଲା । କାଲିକି ଯାତ୍ରାକୁ କାର୍ଡ଼ ଦେବେ ।'

ଅଧିକାରୀ ଜଣକ ମୋ ଆଡ଼କୁ ଆଖି ନ ପକାଇ 'ହଁ' ଭରିଲେ । ମନରୁ ଗୋଟିଏ ବଡ଼ ଦୁଃଶ୍ଚିନ୍ତା ଚାଲିଗଲା ।

ସ୍ୱାମିଜୀ କହିଲେ ଯେ ସେମାନେ ସମସ୍ତେ ପରଦିନ ସକାଳୁ ସେଠାରୁ ଚାଲି ଯାଉଛନ୍ତି । ମୁଁ ଯଦି ଚାହେଁ ତାଙ୍କ ସହିତ ଯାଇ ପାରେ । ମୁଁ କହିଲି ଯେ ମୋର ଲୁଗାପଟା ଧୋଇବାର ଅଛି ଓ

ମୋତେ ଦିନକର ଅଗ୍ରିମ ଦରକାର । ଦିନକ ପରେ ବାହାରି ଗର୍ଭଯାତ୍ରୀଙ୍କ ପୂର୍ବରୁ ସେମାନଙ୍କ ସହିତ ମିଶିବି ।

ସ୍ୱାମିଜୀଙ୍କର ଉଦ୍ଦେଶ୍ୟ ଥିଲା, ମୋତେ ବିଶେଷ ଭାବେ ସାହାଯ୍ୟ କରିବା । କିନ୍ତୁ, ଯେହେତୁ ଅବିଶ୍ରାନ୍ତ ଭାବରେ ଦୀର୍ଘଦିନ ଧରି ଯାତ୍ରା କରି ଆସୁଥିଲି ଓ ଯାତ୍ରା ବିଷୟରେ ଚିନ୍ତିତ ଥିଲି, ସେହେତୁ କିଛି ବିଶ୍ରାମ ଓ ଦ୍ୱିତୀୟ ପର୍ଯ୍ୟାୟ ଯାତ୍ରା ପାଇଁ ମାନସିକ ପ୍ରସ୍ତୁତ ହେଉଥିଲି । କାରଣ ଏଠାରୁ ପୂର୍ଣ୍ଣ ମାତ୍ରାରେ ପଦଯାତ୍ରା ଆରମ୍ଭ ।

ଏପରି ସମୟରେ ଦଳର ଅନ୍ୟାନ୍ୟ ଯାତ୍ରୀମାନେ ପହଞ୍ଚିଲେ । ସିଧା ସଳଖ ଭିତରକୁ ଯାଇ ଗୋଟିଏ ଘଣ୍ଟା ଆଗରେ ନାଚ ଗାଇ ଏକ ରକମ କୀର୍ତ୍ତନ କରିବାକୁ ଲାଗିଲେ ।

ମୁଁ ସେଠାରୁ ଯାଇ ଗୋଟିଏ ଦୋକାନରୁ, କୌଣସି ଏକ ଅନାମଧେୟ କମ୍ପାନୀର ହାଲେ 'ଜଙ୍ଗଲୀ ଯୋଦ୍ଧା' ଏଗାର ଟଙ୍କା ପନ୍ଦର ଅଣା ଦେଇ କିଣିଲି । ସାରା ବଜାରରେ କେବଳ ସେହି ହାଲକ ଥିଲା ଓ ମୋର ଠିକ୍ ମାପର ମଧ୍ୟ ହୋଇଥିଲା ।

'ଓଁ ନମଃ ଶିବାୟ ।'

ହୋଟେଲରେ ବାରଅଣା ଦେଇ ବଢ଼ିଆ ଭୋଜନ କଲି । 'ଇଣ୍ଡ୍ରାକ୍ସୀ' ଭିତରେ କାଠପଟା ଉପରେ କମ୍ବଳ ପକାଇ ଶୋଇଲି । ରାତିରେ ଜୋର ବର୍ଷା ହେଲା । ଉପର ଫାଙ୍କ ଦେଇ ପାଣି ଛିଟା ଦେହରେ ପଡ଼ୁଥାଏ । ଛତାଟା ଫୁଟାଇ ମୁଣ୍ଡ ଓ ଦେହ ଉପରେ ରଖି ଆରାମରେ ଶୋଇଲି । ସତ୍ୟ କଟା କାଠର ଗନ୍ଧଟା ଆମୋଦକର ହୋଇଥିଲା । ମନ ପ୍ରଫୁଲ୍ଲ ଥିଲା । ପ୍ରଶାନ୍ତ ଚିତ୍ତରେ ବିଶ୍ରାମ ନେଲି ।

ତା ପରଦିନ ଜୁନ୍ ପନ୍ଦର ତାରିଖ ଗୁରୁବାର । ଯାତ୍ରୀ ଦଳଟି ସକାଳେ କୁଲୁ ଛାଡ଼ି ଗଲେ । ବଜାରରେ ସେମାନଙ୍କର ଜିନିଷ ପତ୍ର ଓଜନ ହେବା ସମୟରେ, ସ୍ୱାମିଜୀ ମୋର ଜିନିଷ ପତ୍ର ଆଣିବାକୁ କହିଲେ ।

ଅକସ୍ମାତ୍ ଆସିଥିବା ସୁଯୋଗର ସୁବିଧା ନ ନେଇ ପାରି ଭାବିଲି—ଆପଣ ଯାଆନ୍ତୁ, ମୁଁ ଟିକିଏ ଅଗ୍ରମ କରେ, ଗର୍ବ୍ୟାଙ୍ଗରେ ଭେଟିବି ।

ସାମାନ୍ୟ ବିସ୍କୁଟ ଓ ମିଠା ଜଳଖିଆ କଲି, ଟେକ୍ ପୋଷ୍ଟ ଅଫିସକୁ ଗଲି । ସେଠାକାର ଅଧିକାଂଶ ନଥିଲେ । ହାବିଲ୍‌ଦାର ଥିଲେ । ମୋର ନାଁ, ଗାଁ ଇତ୍ୟାଦି ପଚାରିଲେ । ଗ୍ରାମର ଠିକଣା ଦେଲି । ଲୁଗାପଟା ସବୁ ଖାଟ ଥିବାରୁ ମୁଁ ସେତେବେଳେ ଗୋଟିଏ ଅଣ୍ଟୁଆଁ ଗାମୁଛା ପିନ୍ଧିଥିଲି ଓ ଚଦ୍ଦରଟିଏ ଖଣ୍ଡେ ଧରିଥିଲି ।

ମଣିଷର ମନ ଉପରେ ଲୁଗାପଟାର ପ୍ରଭାବ ଥାଏ ଓ ଲୁଗାପଟା ବାଛିବାଟା ମଣିଷର ମନର ଅବସ୍ଥା ଉପରେ ଥାଏ । ଗାମୁଛା ମନ ଭିତର ଅଶାନ୍ତି ଓ ଆନ୍ଦୋଳନକୁ କମାଇ ଦେଇଥାଏ ଓ ମନ ଯେତେବେଳେ ହାଲୁକା ଓ ଢିଲା ଥାଏ ଗାମୁଛା ପିନ୍ଧିବାକୁ ଭଲ ଲାଗେ ।

ବୋଧହୁଏ ମୋର ସେହି ପରିଚ୍ଛଦ ଓ ସେ ସମୟର ମନର ଭାବ ଦେଖି, ମୁଁ କଣ କାମ କରେ ନ ପଚାରି ହାବିଲ୍‌ଦାର ଜଣକ ଖାତାରେ ଲେଖିଲେ—'ଖେତି' । (ଅର୍ଥ କୃଷିବାସ) ।

ସାଧକ ପକ୍ଷରେ ମିଥ୍ୟାକୁ ପ୍ରଶ୍ରୟ ଦେବା ସର୍ବଦା ଅନୁଚିତ । ପାର୍ଥିଠନ ଗୋଟିଏ ବୃତ୍ତ ଓ ସେ ସମ୍ବନ୍ଧରେ କିଛି କହିବା ଶକ୍ତ-ମନା । ତଥି ସଙ୍ଗେ କୌଣସି ପ୍ରକାର ପାପକର୍ମରୁ ନିବୃତ୍ତ ରହିବାକୁ ହେବ । ଭଗବାନଙ୍କ ଦୟାରୁ ମୋତେ କିଛି କହିବାକୁ ପଡ଼ି ନ ଥିଲା । ବଞ୍ଚିଗଲି । ଦ୍ୱନ୍ଦରେ ପଡ଼ି କେତେବେଳେ ଯେ କଣ କହି ପକାଇ ଥାନ୍ତି ତାର ଠିକଣା ନ ଥିଲା ।

ଖାତାରେ, ସେ ବର୍ଷର ତାଲିକାରେ, ମୋର ନମ୍ବର ହେଲା-- ଷୋଡ଼ଏ ।

ପ୍ରଥମ ନମ୍ବର ଉପରେ ଗୋଟିଏ ନାଲିଗାର ଦିଆ ଯାଇଥିବା ଦେଖିଲି । ସେଇଟି ଜଣେ ସ୍ତ୍ରୀ ଲୋକର । ନାମ ତାର ରାମଦାସୀ । ସେ ତାର ଏପ୍ରେଲରେ ସେଠାରୁ ଯାତ୍ରା କରିଥିଲା । କିନ୍ତୁ, ଅଳ୍ପଦିନରେ ତାର ସ୍ୱର୍ଗପ୍ରାପ୍ତି ହୋଇଗଲା । ସେ ଥିଲା ଜଣେ ସନ୍ୟାସିନୀ ।

ମନ ହେଉଁକି ଉଠିଲା । ଆ-ହା । ହସ ହସମୁଖୀ, ଅନ୍ତରଦୃଷ୍ଟି, ଲକ୍ଷ୍ମୀପ୍ରାଣ ଗୃହିଣୀ, ଗୌରବର୍ଣ୍ଣ, ଗୈରିକ ବସନଧାରୀ ସନ୍ୟାସିନୀ ରାମଦାସୀ । ବିଶେଷ ସୁଖ ଥାଉ, ସୀତାଙ୍କର ରାମ ଉପେକ୍ଷାକରିତ ବିରହ ସୁଖ ପାଇବାକୁ ଇଚ୍ଛା କରିଥିଲା । ସାଧନା ହେଲା ଆବେଗ ସହିତ ସେହି ଏକ ଇଚ୍ଛାକୁ ମନରେ ଧାରଣା କରିବା । ତାର ବ୍ରହ୍ମରୂପି ଶିବଙ୍କ ଦେହରେ ଅଣିଲା ସ୍ପନ୍ଦନ ଓ ଧରିଲେ ରାମଙ୍କ ରୂପ । ସେହି ଟାଣିନେଲା ଚୁମ୍ବକ ଭଳି ଏହି ସୀତାଙ୍କୁ ଓ ଦିଆଇ ଥିଲା ସୀତାଙ୍କୁ ପରିଣତି—ସମାଧି ।

ହା ରାମ !!

ହାବିଲ୍‌ଦାର ଜଣକୁ ପଚାରିଲି—ତାର କଣ ହେଲା ? ସେ ହାତକୁ ମାଛି ଅଡ଼େଇବା ଭଳିଆ କରି, ମୋତେ ବାଆଁରେଇବାକୁ ଯାଇ କହିଲା—

'ସେ କଥା ଛାଡ଼ନ୍ତୁ, ତା କଥା ଅଲଗା'

ସେ ମୋ ମନର ଭୟ କଥା ଜାଣି ପାରିଥିଲା ।

ଠିକ୍ ସେହି ସମୟରେ ଯାତ୍ରୀ ଦଳଟି ସେଠୁ ବାଟଦେଇ ଗଲେ—ସେଠାରେ ସମସ୍ତଙ୍କ ଉଦ୍ଦେଶ୍ୟରେ 'ଟା ଟା' କରି ।

ଶୁଣିଲି, ଦୁଇଜଣ ଯାତ୍ରୀ; ସନ୍ୟାସୀ, ନାଳରକ୍ତ ଝାଡ଼ା ହେବାରୁ ଅଧା ବାଟରୁ ଫେରି ଆସିଥିଲେ । ଅନ୍ୟମାନେ ଫେରି ନାହାନ୍ତି ।

ମନରେ ଭାବିଲି ମୋ ଦିନ କାଳ ଆସୁଛି । ଭଲରେ ହେଉ ବା ଖରାପରେ ହେଉ ।

ଦିନ ଏଗାରଟାରେ ଦୁଇଟି ମୂଲିଆ ଠିକ୍ କଲି । ଜିନିଷ ଗୁଡ଼ିକୁ ବନ୍ଧାବନ୍ଧି କରି ଓଜନ କରାଇଲି । ସେମାନେ ଦଉଡ଼ି ଆଣିବେ ବୋଲି କହିଗଲେ । ଦଶଟା ସମୟରେ ଜଣେ ଆସି କହିଲା ଯେ ସେମାନେ ଅନ୍ୟ ଜଣକଠୁ ପୂର୍ବରୁ ଟଙ୍କା ବୟଣା ନେଇଥିବା ହେତୁ ଆମ କାମରେ ଯିବେ ନାହିଁ । ଏଠାରେ ଅଭାବ ଟିକଏ ବେଶୀ । କାରଣ, ସେତେବେଳେ ସୀମାନ୍ତ ପର୍ଯ୍ୟନ୍ତ ସଡ଼କ ତିଆରି କାମ ଚାଲି ଥିବାରୁ ଓ ଦୈନିକ ପାଞ୍ଚ ଟଙ୍କା ମଜୁରି ମିଳୁଥିବାରୁ ଅଧିକାଂଶ ମଜୁରିଆ ସେଥିରେ ନିଯୁକ୍ତ ହୋଇ-ଥିଲେ । ଯେଉଁମାନେ ବୋହେଇ କାମ କରନ୍ତି, ସେମାନେ ମଧ୍ୟ ମହଣ ପିଛା ସେଇ ପାଞ୍ଚଟଙ୍କା ଲେଖାଏ ପାଆନ୍ତି । ଏପରି ସ୍ଥଳରେ

ସମୟର ମାପ ଯେପରି ଘଣ୍ଟା, ଦୂରତ୍ୱର ମାପ ହେଉଛି 'ପଡ଼ାଓ' ଅର୍ଥାତ ସାଧାରଣତଃ ଗୋଟିଏ ଦିନରେ ମଣିଷ ଯେତିକ ଚାଲି ପାରେ । ସ୍ଥଳ ବିଶେଷରେ ବାଟରେ ରହିବାପାଇଁ ଗାଁ ଗଣ୍ଡା ଦେଖି ଦଶ ବାର ମାଇଲ ଦୂରତ୍ୱରେ ଗୋଟିଏ ଗୋଟିଏ 'ପଡ଼ାଓ ପଡ଼' ଥାଏ । ଉଠାଣି ଓ ଗଡ଼ାଣି ଦେଖି, ପାଞ୍ଚ ଛ ମାଇଲ ଓ ପନ୍ଦର ଷୋଳ ମାଇଲ ମଧ୍ୟ ହୋଇ ପାରେ । ଆମର ଠିକଣା ଜାଗା ହେଲା 'ଶୀର୍ଖା' ଗାଁ—କୋଡ଼ିଏ ମାଇଲ ଦୂରରେ, ଦୁଇ ପଡ଼ାଓ । ସେ ହେଲା ସକ୍‌ସେନା ବାବୁଙ୍କ ନୂତନ କର୍ମକ୍ଷେତ୍ର । ନିଜ ଚେଷ୍ଟାରେ ବିଫଳ ହୋଇ, ଅନ୍ୟପନ୍ଥା ନ ଦେଖି, 'କୁଲି ଏଜେଣ୍ଟ' ପାଖକୁ ଗଲୁ । ତାଙ୍କ ଦ୍ୱାରା କୁଲି ଠିକ୍ ହେଲା । ମୂଲିଆ ଦୁଇ ଜଣ ଆମ ଶୋଇବା ଜାଗାରେ ରାନ୍ଧି ଖାଇ ଶୋଇଲେ । କାରଣ ଲକ୍ଷ୍ମୀ ଅଭାବରେ ସେମାନେ ଲକ୍ଷ୍ମୀଙ୍କ ପରି ଚଞ୍ଚଳା । ଚାଲିଯାଇ ପାରନ୍ତି ।

ହୋଟେଲରେ ଖାଉଛୁ, ନେପାଳର ଦୁଇ ଜଣ କର୍ମଚାରୀ ଆସିଲେ । ସେମାନଙ୍କଠାରେ ନେପାଳର ଗୋଟିଏ ଟଙ୍କା ଦେଖିଲି । ତାକୁ ସେମାନେ 'ମୂର୍' କହନ୍ତି । ଏହା 'ମୋହର୍'ର ଅପଭ୍ରଂଶ । ଏହା ଆମ ଟଙ୍କାର ଦଶଅଣା ଭଗ୍ନାଂଶ ।

ହୋଟେଲ ଭିତରକୁ ଜଣେ ପଶି ଆସିଲା । ମୁଣ୍ଡରେ ନେପାଳି ଢଙ୍ଗ ଟୋପି । ଜଣେ ତାକୁ ପରିହାସ ଛନ୍ଦରେ ସମ୍ଭାଷଣ କଲା—ଆରେ ତୁ ନେପାଳୀ ନା ଭାରତୀୟ ।

ସେ କହିଲା—'ନେପାଳରେ ନେପାଳୀ ଓ ଭାରତରେ ଭାରତୀୟ' ।

ଟୋପିଟି ବାହାର କରି ପକେଟରେ ପୁରାଇଲା ।

ଦ୍ୱିତୀୟ—ହଁ ସବୁ କଣ କଣ ହେଲା ?

ପ୍ରଥମ—'ହବ ଅଳ୍ପ କଣ । ଏମାନେ ସବୁ, ଦୁଇଟି ସେପରି ମାଇକିନିଅଙ୍କୁ ଶିଖାଇ ପଠାଇଥିଲେ । ପ୍ରଥମଟା 'ଅଭିଯୋଗ କଲା—ମୋର ସ୍ୱାମୀ କମଜୋର । ସ୍ୱକ ପ୍ରତିନିଧି ପାଖରୁ ଉତ୍ତର ମିଳିଲା—'ଗଧ ପାଖକୁ ଯା' । ଦ୍ୱିତୀୟଟି ନାଲିଶ କରି କହିଲା—ମୋର ସ୍ୱାମୀ ଦୁଇଟି ସ୍ତ୍ରୀ ରଖିଛି । ମୁଁ କାହିଁକି ଦୁଇଟି ପୁରୁଷ ନ କରେ ? ତାର ଉତ୍ତର ମିଳିଲା—ଯାଉନୁ ବେଶ୍ୟା କର୍ମ କରିବୁ ।

ଏଠାରେ ଅଳ୍ପ କ ଆପତ୍ତି ଅଭିଯୋଗ ହେବ ?

ଲୋକଟି ଯେ ନେପାଳର ରାଜନୈତିକ ପରିସ୍ଥିତିକୁ ସମାଲୋଚନା କରୁଥାଏ ସେ କଥା ବୁଝିଲି । ତାର ଉଦ୍ଦେଶ୍ୟ ହେଲା ଯେ ରାଜନୈତିକ ପରିବର୍ତ୍ତନ ହେଉଛି ମୂଳ । ତା ନ ଥାଇ ଆପତ୍ତି ଅଭିଯୋଗର ପୂରଣରେ କିଛି ମାନେ ନାହିଁ ।

ସେ କହି ଚାଲିଲା—ଏମାନଙ୍କର ପୁଣି ଗୋଟିଏ ଦେଖ । ଜଣକର ଭାଇକୁ ଖୁନ୍ କରାହେଲା । ଖୁନୀକୁ ଧରିଲେ । ବିଚାର ହେଲା ଓ ଦୋଷୀ ସାବ୍ୟସ୍ତ ମଧ୍ୟ ହେଲା । ତାପରେ ସେ ବିଚାରକ ଭାଇକୁ ପଚାରିଲା—'ଏହାକୁ କ ଦଣ୍ଡ ଦିଆଯିବ ? ଭାଇ କହିଲା—'ସେ ମୋ ଭାଇକୁ ମାରିଛି, 'ମୁଁ ତାକୁ ମାରିବି' । ବିଚାରପତି ସେହି ରାୟ ଦେଲେ । ଏଠାର ଲୋକେ ନିତାନ୍ତ ବୁଦ୍ଧିହୀନ, ସେହି ପୁରୁଣା କାଳିଆ କଥା ନେଇ ଚଳୁଛନ୍ତି ।

ନେପାଳି ଦୁଇ ଜଣ ନିରବରେ, ନିର୍ବିକାର ଭାବରେ ଶୁଣି ଯାଉଥାନ୍ତି । ସେ ଲୋକଟିକୁ ପଚାରି ବୁଝିଲି ଯେ ସେ ଜଣେ ସମାଜବାଦୀ କର୍ମୀ । ହୋଇ ପାରେ ।

ଭାବିଲି ଯେ—ଏହାଙ୍କର ଆକ୍ରୋଶ ରହିଛି, ନେପାଳର ଗଣତନ୍ତ୍ର ବିହୀନ ରାଜଶାସିତ ସରକାର ଉପରେ । ଗଣତନ୍ତ୍ର କହିଲେ ସେ ବୁଝିଛନ୍ତି ବୋଧହୁଏ ଭାରତୀୟ ତଳଗଡ଼ା ରାଜନୀତି । କେତେକ କମ୍ୟୁନିଷ୍ଟମାନଙ୍କୁ ଦୁର୍ଦ୍ଦାନ୍ତ ଏକଚ୍ଛତ୍ରବାଦୀ ବୋଲି କହନ୍ତି ଓ ସେମାନେ ନିଜକୁ ପ୍ରଗତିଶୀଳ ଗଣତନ୍ତ୍ରବାଦୀ ବୋଲି କହନ୍ତି । ଗଣତନ୍ତ୍ରର ଦୁହାଇଦେଇ ନିଜର ଦୁର୍ଗୁଣଟିକୁ ସୁଗୁଣ ମନେ କରି ଅନ୍ୟ ଉପରେ ଲଦି ଦେବା କେତେଦୂର ସମିଚୀନ ତାହା ଭବିଷ୍ୟତରେ ସମ୍ୟକ ଜ୍ଞାନ ଥିବା ସ୍ୱାଧୀନଚେତା ଇତିହାସ ଲେଖକହିଁ କହିବେ । ପଞ୍ଚଶୀଳର ନିୟମାନୁଯାୟୀ ଗୋଟିଏ ରାଜ୍ୟ ଅନ୍ୟ ରାଜ୍ୟର ଆଭ୍ୟନ୍ତରୀଣ ବ୍ୟାପାରରେ ହସ୍ତକ୍ଷେପ ନ କରିବା ଯେଉଁ ନୀତି ତାହା ଯଦି ସମସ୍ତେ ହୃଦୟଙ୍ଗମ କରୁଥାନ୍ତେ ତାହା ହେଲେ ପୃଥିବୀର ଅନେକ ଅଶାନ୍ତି ଦୂର ହୋଇ ଯାଆନ୍ତା ।

ମୁଁ ଶୁଣିଥିଲି ଯେ ଓଡ଼ିଶାରେ ମଧ୍ୟ ମୁକ୍ତି ମଣ୍ଡପ ସଭା ଜରିଆରେ ଏକପ୍ରକାର ଉତ୍ତରଦାୟୀ ଶାସନ ଚାଲୁଥିଲା । ରାଜ୍ୟଥିଲା ଜଗନ୍ନାଥଙ୍କର, ରାଜାଙ୍କର ନୁହେଁ । ସେହିପରି ନେପାଳରେ ଏକ ପ୍ରକାର ପ୍ରତିନିଧି ମୂଳକ ପଞ୍ଚାୟତ ଶାସନ ଚାଲୁଛି ବୋଲି ଶୁଣିଲି ।

ସନ୍ଧ୍ୟାରେ କାଳୀନଦୀ ଉପରେ ଗୋଟିଏ ଝୁଲା କାଠପୋଲ ଦେଇ ନେପାଳ ରାଜ୍ୟର ଧାରଚୁଲା ଗ୍ରାମକୁ ବୁଲିଗଲି । ପୋଲଟି ଲମ୍ବା ତାରରେ ବନ୍ଧା ହୋଇଥିବା ଦୁଇଟି ମୋଟା ଦଉଡ଼ା ଦେହରେ ଝୁଲୁଥାଏ । ଚୂଡ଼ାରେ ଛନିଷ୍ଟା ଲେଖା ପୋତା ହୋଇ ଥିବା କାଠର ଖଣ୍ଡି ପରସ୍ପରରେ ଭାରର ଗୃପକୁ ଖେଳାଇ ଏକକୁ ଅନେକ ସମ୍ଭାଳି ଦଉଡ଼ା ଦୁଇଟିକୁ ଟାଣି ଧରିଥାନ୍ତି । ଅପର

ପଟରେ ଓ୍ବା ଖଣ୍ଡ ସହିତ ବନ୍ଧା ହୋଇ ସେ ଗୁଡ଼ିକୁ ଭିଡ଼ ରଖା ଯାଇଥାଏ । ସମାନ ଲମ୍ବ ଥିବା ଅନେକ ଗୁଡ଼ିଏ କାଠଖଣ୍ଡକୁ ରସି ସାହାଯ୍ୟରେ ସମାନ୍ତରାଳ ଭାବରେ ବାନ୍ଧି ମଣିଣା ବଷ୍ଟଇକପରି ନଦୀର ଏକତଟରୁ ସେତଟ ପର୍ଯ୍ୟନ୍ତ ଲମ୍ବେଇ ଦିଆଯାଇ ଥାଏ— ପୋଲର ରାସ୍ତା ସଜାଇ । ଏହି ରାସ୍ତାଟିକୁ ଅସଂଖ୍ୟ ଦଉଡ଼ି ସାହାଯ୍ୟରେ ଲମ୍ବାର ଦଉଡ଼ା ଦେହରେ ଓହଳାଇ ଦିଆଯାଇ ଥାଏ । ପ୍ରବଳ ପବନ ହେଲେ ଏହି ପୋଲଟି ଦୋହଲୁ ଥାଏ ବା ଛେଦା ଅବସ୍ଥାରେ ଥାଏ । ପୋଲର ଏ ପଟରେ ଦେଖିଲି ନେପାଳର ଜଣେ ସୈନିକ ସୈନିକୋଚିତ ଗାମ୍ଭୀର୍ଯ୍ୟ ରକ୍ଷା କରି ଦଣ୍ଡାୟମାନ । ପଥଶ୍ରେଷ୍ଠ ସେ ଛିଡ଼ା ହୋଇଛି । ଭାବିଲି, ବୋଧହୁଏ ନେପାଳକୁ ଯିବାକୁ ଦେବ ନାହିଁ ।

ପଚାରିଲି—'ଯାଇ ପାରିବି କି ?'

ସେ ଜୋରଦେଇ କହିଲା—'ନାହିଁ' ।

ଟିକିଏ ଦବିଗଲି । ସାହାସ ବାନ୍ଧି ପଚାରିଲି କାହିଁକି ?

ସେ କହିଲା—ସେ ପଟରୁ ଲୋକ ଆସୁଛି ।

ଜଣେ ନେପାଳି ସୈନିକ ସେ ପଟରୁ ଆସିବାକୁ ଚେଷ୍ଟା କରୁଥିଲା । ମୁଁ ବୁଝେଉଥିଲେ ଭାବିଥିଲି ଯେ—ଏ ପଟର ଲୋକଟି ସୈନିକର ସାଥୀ । ଭାବପ୍ରବଣ ହୋଇ ସାଥୀର ଏକବୃତ୍ତିଆ ସୁବିଧା ଓ ସ୍ୱାର୍ଥକୁ ରକ୍ଷା କରିବା ପାଇଁ ସେପରି କରୁଛି । କିନ୍ତୁ ଦେଖୁଥିଲେ ସେହି କାଠର ଦୋଳାକୁ ଝୁଲେଇ ଥିବା ଅସଂଖ୍ୟ ଦଉଡ଼ିରେ ସ୍ପନ୍ଦନ ଆଣି, ସାଇଁ ସାଇଁ ଝଙ୍କାରରେ ବାୟୁ ମଣ୍ଡଳକୁ ମୁଖରିତ କରୁଥିବା ସେହି ପ୍ରବଳ ପବନରେ ଠେଲି

ହୋଇଯାଇ ଦୋଳି ଖେଳୁଥିବା ଝୁଲନ୍ତା ପୋଲ ଉପରେ ସମ୍ଭାଳି ସମ୍ଭାଳି ଚାଲିବା ସମୟରେ ତଳେ ଦେଖିଲି ଯେ ଦାନୁର ଖାଲୀର ଉଗ୍ର ପ୍ରଖର ସ୍ରୁଅର ଧକ୍କାରେ ଜଳ ବାହେଇ ଝରୁଛି ମୁଣ୍ଡତୋଳି ହୋଇ ପାଣିରେ ଫେଣ ଆଉ ଶୀଘ୍ର ଦୃଶ୍ୟମାନ ଚକ୍ର ଭଉଁରୀ ଦେଖାଇ ଗୋଟେ ଭୟଙ୍କର ଅଂ କରୁଛି । ସେତେବେଳେ କଣାଗଲା ଯେ ଅଭ୍ୟାସ ନ ଥାଇ, ସତର୍କ ନ ହୋଇ, ମୁଣ୍ଡ ସ୍ଥିର ନ କରି ତା ଉପରେ ଯିବା କେତେଦୂର ବିପଦଜ୍ଜନକ, ପଦେ ପଦେ । ସେହେତୁ ବାଟଟା ମଣିଷ ଯିବା ପାଇଁ ଏକ ପାଖିଆ । ଆଗପଟରୁ ଆସିବା ଲୋକକୁ ପାଖେଇ ଚାଲିଲେ ଭରସାମ୍ୟ ଯିବ । ପୋଲରେ ଚାଲୁଥିବା ଦୁଇ ଜଣଙ୍କ ଭିତରୁ ଜଣକର ପାଦ ଯଦି ଥରେ ଉଠେ ଆର ଜଣକର ପାଦ ଅଥୟ ହେବ ।

ସାଙ୍ଗରେ ଥିଲେ ସକ୍ସେନା ବାବୁ । ତାଙ୍କର ଗୋଡ ଥରି ଯାଇଥିଲା । ପାଦ ପଡୁଥିଲା ଏପଟ ସେପଟ । ସେତେବେଳେ ମୋତେ ପୋଲଟି ଝାଙ୍କୁଡ଼ି ଦେଲା, ଯାହା ପାଇଁ ଭଉଁ ଧରିଥିଲି । କେଜାଣି, ମୋର କୌଣସି ଭୁଲ ପଦକ୍ଷେପ ତାଙ୍କୁ ସେପରି କରିଥିଲା ।

ଏହି ଦୁଃସାହସିକ କର୍ମରେ ଉତ୍ତେଜିତ ହୋଇ ଘଟଣାଟିର ଉଚ୍ଛ୍ୱସିତ ବ୍ୟାଖ୍ୟା କରି; ଜଣେ କହିଲେ—

ଆପଣମାନଙ୍କ ପାଇଁ ଏ ନୁହେଁ, ଏହା ପାହାଡ଼ର ମାଙ୍କଡ଼ଙ୍କ ପାଇଁ । ବୁଝି ନ ପାରି ସରଳାର୍ଥ ଚାହିଁଥିଲି ।

ସେ କହିଲେ—ପାହାଡ଼ିଆ ଲୋକଙ୍କୁ ପାହାଡ଼ର ମାଙ୍କଡ଼ କହନ୍ତି । ସେହି ମାଙ୍କଡ଼ମାନେ ପାରିବେ ଆପଣମାନେ ନୁହନ୍ତି ।

ଭାବିଲି ଏହା ଗୋଟିଏ ଲୋକ ପୁଞ୍ଜର ଅନ୍ୟ ଲୋକପୁଞ୍ଜ ପ୍ରତି ଘୃଣା । ତଥାପି ଯେହେତୁ ଭଲ ନ ଲାଗିବାରୁ ଆପତ୍ତି କରିଥିଲି । ସେ ବୁଝାଇ କହିଲେ ଯେ ସେ ମଧ୍ୟ ଜଣେ ପାହାଡ଼ିଆ ଲୋକ । ଏଥିରେ କିଛି ବ୍ୟଙ୍ଗ ନାହିଁ । ଅଛି କେବଳ ନିପୁଣତା । ଏହା ତାଙ୍କ ଅଦ୍ଭୁତ ବିପଜ୍ଜନକ ପୋଲ ଅଛି । କୌଣସି କୌଣସି ଜାଗାରେ ଏ ପଟରୁ ସେ ପଟକୁ ଖାଲି ଗୋଟିଏ ଦଉଡ଼ି ଥାଏ ଓ ଏ ପାହାଡ଼ିଆ ଲୋକେ ଦଉଡ଼ି ଧରି, ଦଉଡ଼ି ଉପରେ ଗୋଡ଼କୁ ଛନ୍ଦି ଯା ଆସ କରନ୍ତି । ସେମାନେ ମାଙ୍କଡ଼ ପରି ନିପୁଣ ।

ସେହେତୁ କେବଳ ପାହାଡ଼ ଘାଟିକୁ ସଜାଡ଼ି ପାରିବ, ମାଙ୍କଡ଼ଙ୍କ ପରି ନିପୁଣ, ମାନବିକତାରେ ନିଖୁଣ ଓ ଦୈବ ଗୁଣର ପରିପୂରଣ । ସେତେବେଳେ ଭାବିଲି ଏହି ଆମୋଦ ପ୍ରେମୀ, ପ୍ରମୋଦରତ ଯୁବ ସମାଜକୁ ପାହାଡ଼ରେ ବାଧ୍ୟତାମୂଳକ ତାଲିମ ଦେଲେ ସେମାନେ ଅନେକଟା ସଜାଡ଼ି ହୋଇଯିବେ ଓ ଦେଶର ଯନ୍ତ୍ରଣା ଯଥେଷ୍ଟ ଊଣା ହେବ ।

ଯାହା ହେଉ, ନେପାଳ ଯିବା ପାଇଁ କୌଣସି ବିଶେଷ ଅନୁମତି ଦରକାର ନ ଥିଲା । ଯିବାର ଉଦ୍ଦେଶ୍ୟ ଥିଲା ଢାଡ଼ଟିରେ ଗୋଟିଏ ଗ୍ଲୋବ ବସାଇବା । କିନ୍ତୁ ସ୍ଥାନୀୟ ଡମାର ପାଖରେ ସେ ଜିନିଷଟା ନ ଥିବାରୁ ହୋଇ ପାରିଲା ନାହିଁ । ସେହି ଗାଁଟିରେ ଗୋଟିଏ ଛୋଟ ଡାକଘର ଥିଲା । କିନ୍ତୁ ସେଠି କାର୍ଡ ବା ଅନ୍ତର୍ଦେଶୀୟ ପତ୍ର ମିଳୁ ନ ଥିଲା । ଥିଲା କେବଳ ଲଫାଫା । ଇଚ୍ଛା ଥିଲା ଯେ ନେପାଳରୁ କେତୋଟି ଚିଠି ପୋଷ୍ଟ କରିବି । କିନ୍ତୁ କାଗଜ ନ ମିଳିବାରୁ ଚିଠି ଲେଖିପାରି ନ ଥିଲି ।

ସେଠାରୁ ଫେରି ଧାରଚୁଲାରୁ ଦୁଇଟଙ୍କା ତେରଅଣା ଦେଇ ଚାରିଟି ବଡ଼ ପକେଟ ବିସ୍କୁଟ କିଣିଲି । ସେଥିରେ ସମୁଦାୟ ଅଠଚାଳିଶିଟା ଅଣାକିଆ ପେକେଟ ଥିଲା । ଉଦ୍ଦେଶ୍ୟ—ଓଭାଲଟିନ୍ ସହିତ ବିସ୍କୁଟ ଜଳଖିଆ ହେବ ।

ଧାରଚୁଲା ଛାଡ଼ିଲି ୧୨ ଜୁନ—ତା ପରଦିନ ୧୨ ତାରିଖ ଶୁକ୍ରବାର । ଗାଧୋଇ ପାଠଧାଇ ସକାଳ ସାଢ଼େ ସାତଟାରେ ବାହାରିଲି । ଭୁବନେଶ୍ୱରରୁ ବାହାରିବା ପରେ ପ୍ରଥମ କରି ପାଣେ଼ଇ ତଥା କେନ୍‌ଭାସ ଜୋତାଟା ବ୍ୟବହାର କଲି । ବରଫ ଦେଶରେ ଓ କାଦୁଅର ଖଦଡ଼ିଆ ବନ୍ଧୁର ପଥରେ ଯିବା ପାଇଁ 'ହଣ୍ଟର' ଜୋତାଟା ସାଇତି ଧରିଲି । ଭାବିଲି ଅଥ୍ୟାରମ୍ଭଃ ଶୁଭସ୍ୟ ଶୁଭଂ ଭବତୁ । ଶୁକ୍ରବାର ମୋର ଶୁଭଦିନ । ଅନେକ ଦିନର ପ୍ରତୀକ୍ଷା ପରେ ଭଗବାନଙ୍କ କୃପାରୁ ଯାତ୍ରା କରିବା ସୁଯୋଗ ପାଇଛି । ପ୍ରତିବନ୍ଧକ ସବୁ ତୁଟି ଯାଇଛି । ଟଙ୍କା ଧରିଛି । ଛୁଟି ପାଇଛି । ଜ୍ଞାତି କୁଟୁମ୍ବ ସୁଖରେ । ଅନୁମତିପତ୍ର ପାଖରେ । ଜଳର ବସ୍ତ୍ର ସାଥିରେ । ଚିନ୍ତା ଆଉ କଣ ? ଯାତ୍ରା କଲେ ହେଲା ।

ସାନ୍ଧ୍ୟ ଭ୍ରମଣ କ୍ଲବ, ପ୍ରାତଃ ଭ୍ରମଣ କ୍ଲବ, ଆଉ ବଳେଇ ଯିବକି ? ଆଜି ଚିନା ଭିତରେ ପ୍ରବେଶ ପାଇଁ ଅନୁମତି ଯାହା ବାକି ଅଛି । ଏମିତି କହିବ, ସେମିତି କରିବ, ପାଇଯିବ । ଚାଲିଲି, ସତେକି କୈଳାସ ଯାତ୍ରାଟା ଗୋଟେ ଟେଣ୍ଡ୍ରିଗିରି ଦେଖା ।

ଯାହା କେତୁଟା ପ୍ରତିବନ୍ଧକ ମୋତେ ଧରି ରଖିଥିଲା, ତାହା ତୁଟି ଯିବାରୁ ଭାବିଥିଲି ମୋ ଯାତ୍ରାପଥଟା ସୁଗମ ହେବ । ଯାହା କିଛି କଷ୍ଟ ହୋଇଥିଲା ତାହା ଲମା ଚିନ୍ତାର ବାହାରେ ଥିଲା । ଯଦି ବାଟ ନ ପାଏ ବାହୁଡ଼ି ଯିବି ବୋଲି ଠିକ୍ କରିଥିଲି ।

ମାଇଲଏ ଖଣ୍ଡେ ଗଲ ପରେ ଗୃଖଣ୍ଡେ ଓସାରରେ ଓ ଦଶଗୁଣ ଲମ୍ବର ବାଟଟା ଉପରେ ଦେଇ ଯିବାକୁ ପଡ଼ଲ । ଉପରୁ ଅତଡ଼ା ଖସି ଚଳ ରାସ୍ତାର ମାଟି ଧସି ଯାଇଥିଲ । ମାଟି କେମିତ ଓଦାଳଆ ଥିଲ । ମୋର ସତର୍କତା ଅବଲମ୍ବନ ପୂର୍ବକ ଗ୍ଲଲ ଦେଖି ସକ୍ସେନା ବାବୁ ହସିଲେ । କହିଲେ—କୈଳାସ ପର୍ଯ୍ୟନ୍ତ ଯିବ, ଏପରି ଡ଼ରିଲେ କଣ ହେବ ? ଗ୍ଲବଲ—ପିଲର ମାମୁଁ ଏ ଦୁନଆ —ମୋତେ ବୁଝେଁ ଭୁଲ ଓ ହସେ । କହିଲ—ଅଭ୍ୟାସରେ ନ ପଡ଼ବା ପର୍ଯ୍ୟନ୍ତ ସତର୍କତା ଅବଲମ୍ବନ କରିବା ଭଲ ।

ବଦ୍ରୀନାଥ ରାସ୍ତାରେ ମଧ୍ୟ ଏହି ଭଳି ଅଣେଇ ଥିବା ଗୃଖଣ୍ଡେ ଓସାର ଏବଂ ଏହା ଠାରୁ ବେଶି ଲମ୍ବର ଓ ତଳକୁ ବେଶି ଗଭୀର ଥିବା ରାସ୍ତା ଉପରେ ଗ୍ଲଲ ଯାଇଥିଲି । ସେ ଥିଲ ସେହି ସମୟର ଚଳବା କାଇଦାର ଉତ୍କର୍ଷ ତାର ମାନ । କନ୍ତୁ ସେ ଅଭ୍ୟାସ ଏ ସମୟକୁ ଗ୍ଲଲ ଯାଇଥାଏ । ବଦ୍ରୀନାଥ ରାସ୍ତାରେ ଶହେ ମାଇଲ ଗ୍ଲଲବା ପରେ ଯେଉଁ ଅଭ୍ୟାସଟି ହାସଲ ହୋଇଥିଲ, ଏହି ଯାତ୍ରାର ପ୍ରାରମ୍ଭରେ, ସାମାନ୍ୟ କଷ୍ଟ ସହୁ ସେହା ରାସ୍ତା ଉପରେ ଚଲବା ପରେ ଦେହର ଭରସାମ୍ୟ ରକ୍ଷା କରି ଗ୍ଲଲବା କାଇଦା ଓ ଅଭ୍ୟାସଟି ଆୟତ୍ତ କରି ପାରିଥିଲ । ସାଧନାର ସୀମା ଅତୁଟ ଥାଏ । ନୂତନ ଜୀବନର ଯାତ୍ରାର ଆରମ୍ଭରେ ସାଧକ ତାର ସାଧନାର ମାନ ଫେରି ପାଇଥାଏ, ଯେଉଁଠି ଛାଡ଼ଥାଏ ସେଇଠୁ ଆରମ୍ଭ କରେ ।

ଏହା ପରେ ଦୁଇ ମାଇଲ ଖଣ୍ଡେ ଯାଇଛୁ ହଠାତ୍ ଦେଖେ ରାସ୍ତା ସରି ଯାଇଛୁ । ଆଗକୁ ଆଉ ରାସ୍ତା ନାହିଁ । ଅଛୁ କେବଳ ଅମୂଲଚୂଲ ଶିଖ ଚକଣ ପାହାଡ଼ । ତଳେ ବାଢ଼େଇପିଟି ହୋଇ

ଚୂଲଛୁ କାଳୀନଦୀ, ଯାହାକୁ ନେପାଳୀମାନେ ଭୟରେ ମହାକାଳୀ ଓ ଦେବୀ ମନେ କରି ପୂଜା କରନ୍ତି । ପାହାଡ଼ର ଖୁବ୍ ତଳରେ କୌଣସି ଜାଗାଦେଇ ସଡ଼କ ରାସ୍ତାର୍ କାମ ଚୂଲଛୁ । ସେଠାରୁ ବର୍ଷା ପରେ ଅଲଗା ଖସି ଉଲର ପାଦଚଳ ରାସ୍ତାଟି ଲୋପ କରି ଦେଇଛୁ । କରିବ କଣ ?

ସକ୍ସେନା ବାବୁ ଅନେକ ସମୟ ହେଲ ଅଦୃଶ୍ୟ । ଆଗରେ ଆଗରେ ଥିଲେ । କୁଲି ଦୁଇଜଣଙ୍କର ମଧ୍ୟ ପତ୍ତା ନାହିଁ । ତାଙ୍କୁ ଆଗରେ ଯିବା ପାଇଁ ଛାଡ଼ି ଦିଆଯାଇଥିଲା ।

ଛାତି ଧଡ଼ ଧଡ଼, ଦେହ ଝାଳେଇ ଗଲା ।

ଭାବିଲି—ଏ ଠାରୁ ବାହୁଡ଼ିବ, ଚେଷ୍ଟା କରିଥିଲି, ମୋର ଦୋଷ ନାହିଁ । ମନ ସୁବିଧା ଖୋଜ ଦାୟିତ୍ୱରୁ ଓହରି ଯିବାକୁ ଚୂହେଁ ।

ଅକସ୍ମାତ ଦେଖିଲି; ରାସ୍ତାରୁ ବାହାରି କେତେ ଗୁଡ଼ିଏ ଛୋଟଛୋଟ ପାଦଚିହ୍ନ ପାହାଡ଼ ଦେହରେ ଅଗେଇଛୁ । ପାହାଡ଼ଟା ଯଦି ୮୦° ଗଡ଼ାଣିଆ ଥାଏ, ପାଦଚିହ୍ନ ସବୁ ଥିଲା ୭୦° । ଭାବିଲି 'ହଁ' ବାହୁଡ଼ିଯିବ, ଅଯଥା ବିପଦ ମୁଣ୍ଡାଇବ ନାହିଁ । ଦୁଷ୍କର୍ମ ପାଇଁ ମଧ୍ୟ ଶାସ୍ତ୍ର ପ୍ରମାଣ ଓ ଆପ୍ତବାକ୍ୟ ମିଳିଯାଏ । ବିବ୍ରତ ହୋଇ ପଲକ ମଧ୍ୟରେ ମନେ ପଡ଼ିଲା ମୋର କୈଳାସ ଯିବାର ଆଜୀବନ ସଙ୍କଳ୍ପ । ଯେ ସମସ୍ତଙ୍କୁ ହେଉଅଛୁ—ସେ ସମସ୍ତଙ୍କୁ ଇଚ୍ଛା କରୁଛୁ । କେବଳ ସେହି ଇଚ୍ଛାକୁ ମନରେ ଧରିଛୁ । ପ୍ରାୟ କୋଡ଼ିଏ ବର୍ଷର ସଙ୍କଳ୍ପ ଓ ପନ୍ଦର ବର୍ଷର ଅପ୍ରାଣ ଚେଷ୍ଟା ପରେ ପଞ୍ଚଷଠିଏ ବର୍ଷ ବୟସରେ ଏ ସୁଯୋଗ ପାଇଛୁ ।

ଏହି ସୁଯୋଗ ଜୀବନରେ କେବଳ ଥରେହିଁ ଆସିଛି ଓ ଏ ଶେଷ ସୁଯୋଗ । କାରଣ ବୟସତ ଖସି ଯାଉଛି । ସେ ଗୋଟିଏ ସମାଧାନର ସମସ୍ୟା ହୋଇ ରହିବ । ସବୁ ଗୁଡ଼ିକ ସମସ୍ୟାର ସମାଧାନ ହୋଇ ସେହି ଯାତ୍ରା ପାଇଁ ଫେର ସୁଯୋଗ ସମ୍ଭାବନା ଅତି କମ୍ ।

ଯଦି ଫେରିଯିବ, ଜୀବନରେ ଗୋଟିଏ ବଡ ଅନୁଶୋଚ ରହିଯିବ । କୈଳାସ ଯିବ ବୋଲି କହି ଆସିଛି ନ ଗଲେ ଲୋକେ ହସିବେ । ଜୀବନର ତାସ ଖେଳରେ ଅତି ଉଚ୍ଚ ସମ୍ଭାବନାର ଖେଳ ପାଇଛି । ବାଜମାରି ଦେଖେ । ଲୋକେତ ଫେର ଏ ବାଟରେ ଯାଇଛନ୍ତି, ମୁଁ ଟିକଏ ଚେଷ୍ଟା କରି ଦେଖେ । ପାହାଡ଼ତ ଅନେକ ବୁଲିଛି । ପ୍ରଥମେ ଯେଉଁଟା ଅସାଧ୍ୟ ବୋଲି ଧରାଯାଇ ଥାଏ ଚେଷ୍ଟା କଲା ପରେ ସେଇଟା ସାଧ୍ୟ ହୋଇ ଯାଇ ଥାଏ । ଭୟ ସମୟରେ ମା ଦୁର୍ଗା ସାହା । ଦୁର୍ଗାଙ୍କ ନାମ ଅମୋଘ । ଦୁର୍ଗା ନାମ ଜପି ସମସ୍ୟାର ସମାଧାନ ଦଗରେ ଏକାଗ୍ର ଚିତ୍ତ ହୋଇ ଗୋଟିଏ ପାଦ ଆଗକୁ ବଢ଼ାଇଲି । ପ୍ରଥମ ପାଦଚିହ୍ନ ଉପରେ ପାଦଟିଏ ମିଶାଇ ଦେଲି । ଭାରସାମ୍ୟ ଠିକ୍ କରି ମିଳାଇ ନେଲି । ତା ପରେ ଆର ଗୋଡ଼ଟି ଅସ୍ତେ ଅସ୍ତେ ଟାଣି ନେଇ ଆଗୁଆ ପାଦଚିହ୍ନ ଉପରେ ସେହିପରି ରଖିଲି । ତଳକୁ ନଜର କରି ନାହିଁ । ପ୍ରାୟ ଷାଠିଏ ସତୁରି ଫୁଟ ତଳେ ନଦୀଗର୍ଭ । ମୁଣ୍ଡ ଘୂରାଇ ଯଦି ପଡ଼ିନାଏଁ, ପିତୃଲୋକ ପ୍ରାପ୍ତ ହୋଇଯିବ, ଶବ ମଧ୍ୟ କେହି ପାଇବେ ନାହିଁ । ଦୁର୍ଗା ଦୁର୍ଗା' ନଜର ରଖିଥାଏ କେବଳ ପାଦ ଓ ଆଗର ପାଦଚିହ୍ନ ଉପରେ । ମନ ଥାଏ ପାଦର ତଳିପା ଅଡ଼େ । ସେତେବେଳେ ମୁଁ ପିନ୍ଧିଥାଏ, ପାଇଜାମା, ଶାର୍ଟ ଓ କାନ୍ଧରେ ଝୁଲିଥାଏ ଗୋଟିଏ ଝୁଲି । ଦୁଇ ହାତରେ ପଥାକମେ

ଛଡା ଓ ବାଉଁଶ ମଧ୍ୟ ଥିଲା । ଏହି ରକମ ଗଛଟିକୁ ଦେଖି ମୋର ଜଣାପଡ଼ିଲେ ଅଶ୍ଚର୍ଯ୍ୟ ହେବ ନାହିଁ । କିନ୍ତୁ ଏହା ହସିବାର ସମୟ ନୁହେଁ । ଯେତେବେଳେ ଦେଖିଲି ନଳକୂଅ ଖୁବ୍ ସମ୍ପାଳ ହେଉଛି, ଆଗେଇ ଗଲି—କିଛିଟା ଅନାୟାସରେ । ମନ ସ୍ଥିର ଥିଲା ଓ ଚଉବୃତ୍ତ ଏକ ଥିଲା । ଶୁକଦେବ ମୋର, ନମସ୍ୟ ।

ଦଶ ପନ୍ଦର ପାଦ ଆଗେଇଛି, ଗୋଟିଏ ବଡ଼ ନ ଯାଉଣୁ ଘନେଇ ଆସିଛି ଆଉ ଗୋଟିଏ ବଡ଼ । ଗୋଟିଏ ତିନିଫୁଟ ବା ସାଢ଼େ ତିନିଫୁଟ ଓସାର ଓ ପ୍ରାୟ ପାଞ୍ଚଫୁଟ ଲମ୍ବାର ଗୋଟିଏ ଗଣ୍ଡଶୈଳ ମାଟି ଭିତରୁ ଗୃଖଣ୍ଡେ ଉପରକୁ ଫୁଟି ଉଠିଛି । ପଥରର ଆର ପଟରେ ପ୍ରପରର ପାଦଚିହ୍ନ ଦେଖାଏ ! ପାହାଡଟି ମୋର ବାଁ ପଟକୁ ଥିଲା । ପାହାଡ଼ ତଳକୁ ଆଖି ପକାଇ ନାହିଁ । ଶିଳା ଆରପଟକୁ ଗୋଡ଼ ବଢ଼ାଇବା ପାଇଁ ଦୂରତା ଟିକିଏ ବେଶୀ । ଟିକିଏ କେଉଁ ପାଦଟା ବଢ଼ାଇଲେ, ପୋରଟା ଲଗାଇ ପାରେ । ଯଦିବା ସେପରି କରେ ଭାରସାମ୍ୟ ରକ୍ଷା କରିବା ଅସମ୍ଭବ ହେବ । ସେଠି ଗଛପତ୍ର ବା ଘାସଚି କିଛି ନ ଥିଲା, କିନ୍ତୁ ମାଟିଟା ଶକ୍ତ ଥିଲା । ପଥର ଦେହରେ ମଧ୍ୟ ଧରିବା ପାଇଁ କିଛି ଜାଗା ନାହିଁ । ବାହୁଡ଼ିବା ମଧ୍ୟ ଅସମ୍ଭବ । କାରଣ ଶହେ ଅଶି ଡ଼ିଗ୍ରୀ ବୁଲିବାରେ ଭାରସାମ୍ୟ ଗୃଲିଯାଇ ପାରେ । ବୁଲିବା ସମୟରେ ନୁଆଣିଆ ମାଟିରେ ଗୋଡ ଖସି ଯାଇ ପାରେ ।

ମୁହଁ ଶୁଖିଗଲା । ଚଉବୃତ୍ତ ବିଚ୍ଛିନ୍ନ ହେଲା । ଏକ ଶୂନ୍ୟତା ଅନୁଭବ କଲି । ରହିଲା କେବଳେ ଅସ୍ତିତ୍ୱ—ମୁଁ ଏ ସଂସାରରେ —ପଣିତକୁ ଧାରଣ କରିବା ପାଇଁ କେବଳ ଦୁଇ ପାଦତଳେ ମାଟି ଦରକାର । ସେତକ କେବଳ ମୋତେ ଧରି ରଖିଥିଲା । ଭାବିଲି ଏତକ

ସମୁଦାୟ ମାଟିଟା ଯାହାର ଗୋଟିଏ ପାଦକୁ ସମ୍ଭାଳି ରଖିଛି, ସେହି କେବଳ ମୋର ସାହା । ଦୁର୍ଗାଙ୍କୁ ଡ଼ାକନ୍ତ ଏତେଦୂର ଅସାଧ ସାଧ କରିଛି, ସେହି କେବଳ ମୋତେ ରକ୍ଷା କରିବେ । ଜୋରରେ ଡ଼ାକିଲି ଦୁର୍ଗାଙ୍କୁ ।

ସମୁଦାୟ ଚିତ୍ତ—ସମୁଦ୍ରକୁ ମନ୍ଥନ କରିଦେଲା ସେହି ଦୁର୍ଗାଙ୍କ ନାମର ଶୁଆ ।

ମନେ ପଡ଼ିଲା ପଦାର୍ଥ ବିଜ୍ଞାନର ଗୋଟିଏ ନିୟମ— Surface of contact increases friciton—ଅର୍ଥାତ୍ ମୋର ଦେହ ପଥର ଦେହକୁ ଯେତେ ଲାଗି ରହିବ, ଖସି ଯିବାର ସମ୍ଭାବନା ସେତେ କମ ହେବ ।

'ଏ ଜନ୍ମରେ କୈଳାସ ଦର୍ଶନ ହେବ'—ଏହି ଭାବ, ଦୁର୍ଗାଙ୍କ ନାମ ଓ ବିଜ୍ଞାନର ନିୟମ—ଏଥିକି ଉପରେ ବିଶ୍ବାସ ରଖି ପ୍ରାଣମୂର୍ଚ୍ଛି ଦେଲି । ଦାନ୍ତ ଚିପି, ଦୁର୍ଗାଙ୍କ ନାମ ନେଇ ଅଗ୍ରସର ହେଲି । ବାଁ ଗୋଡ଼ଟା ଆଗକୁ ଥିଲା । ଛାତି ତାର ଅସ୍ଥାନ ଉପରେ ବୁଲାଇ ଦାନ୍ତଭୁକ୍ତ ମୁଣ୍ଡର ଭଲ ହାତ କରି ଗୁଣ୍ଡକୁ ପଥର ଦେହରେ ଲଗାଇଲି ଓ ଡ଼ାହାଣ ଗୋଡ଼ଟି ବାହାରକୁ ବଢ଼ାଇଲି । ତାଗାଙ୍କିକୁ ଆଗରୁ ଠିକଏ ଦେଖି ନେଇ, ମନଶ୍ଚକ୍ଷୁରେ ଅନ୍ଦାଜ କରି ଗୋଡ଼ଟା ଠିକ୍ ଜାଗାରେ ରଖିଲି । ଭାରସାମ୍ୟ ଡାହାଣ ଗୋଡ଼ ଉପରେ ରଖି ଧିରେ ଧିରେ ବାଁ ଗୋଡ଼କୁ ଟାଣି ନେଲି; ଆଗୁଆ ପାଦକଣ୍ଠ ଉପରେ ରଖିଲି ।

ଭାବିଲି—ବଞ୍ଚିଗଲି ।

ପାଦଚିହ୍ନ ଉପରେ ଚାଲିବା ତାଇଦାଟା ଅଭ୍ୟାସଗତ ହୋଇଯାଇ ଥିବାରୁ ବାକି ଖେଳଟା ପାଦ ଚାଲିବା ସମୟରେ

ଦେବୀଙ୍କ ନାମ ଜପରେ ଦେଇଥିବା ଜୋରଟା ଯଥେଷ୍ଟ କମିଥିଲା । କିନ୍ତୁ ମନେ ହେଲା ଯେପରି ନୂତନ ଜଗତରେ ପଦାର୍ପଣ କରୁଛୁ । ନିଜକୁ ଯାଞ୍ଚ କରି ନେଲି । ନୂତନ ଜଗତରେ ସଶରୀରରେ ଦଣ୍ଡାୟମାନ କୈଳାସ ଯାତ୍ରାର ଲକ୍ଷ ନେଇ ।

ପାରଦ ଭଗ୍ନ ସୂକ୍ଷ୍ମ ଅଣୁରନ୍ଧ୍ର ତାପମାନ ଯନ୍ତ୍ରରେ ପାରଦ ଥରେ ଉଠିଲେ ପରେ ତାର ମନକୁ ଫେରିବା ଆଉ ନ ହୁଏ । ଯେହେତୁ ମୂଳ କୋଠରୀକୁ ବନ୍ଧାଣୁ ଭାବରେ ମୁଦେଇ ଭାଗ କରାଯାଇଛି ତାର ମାନ ନିର୍ଦ୍ଦେଶକ କୋଠରୀ ।

ଏ ପଟରେ ଥାଇ ଅନୁଭବ କଲି ଯେ ସେପଟର ଜଗତ ସମୟ ଓ ଦୂରତାରେ ଯାହା କିଛି ଅଛି ଯାଇଛି, ଯାଉଛି । ଯେହେତୁ ଏ ଦୁଇ ସଂସାର ଭିତରେ ଠିଆ ହୋଇଛି ଗୋଟେ ଚିକ୍କଣ ଲଣ୍ଡା ଦୁଆର ମୂଣ୍ଡିଆ ଓ ତଳେ ଦନ୍ତୁରିତା, ଖର ପ୍ରବାହିତା ସର୍ବଗ୍ରାସୀ କାଳୀନଦୀ । ସଂଯୋଗ ରକ୍ଷିଛି କେତୁଟା ଡେଙ୍ଗା ପାଦଚିହ୍ନ ଓ ସେ ପଟରଟା ! ଯାହା ଟିକିଏ ଫେରିବାର ଚିନ୍ତା ଓ ଆଗେଇବାରେ ଦ୍ୱିଧା ଥିଲା ଉଭେଇଗଲା । କୌଣସି ଏକ ତାପର ମାନ ଜାଣି ବା ଜଣାଇ ପାରିଲା ପରେ ହିଁ ଭଗବାନ ମୋର ଫେରିବା ବାଟ ସୁଗମ କରିବେ—ଝାଡ଼ଝୁଡ଼ି ହୃଦଇ ମିଶେଇ ନେବେ । ଅଗତ୍ୟା କିନ୍ତୁ ଅଜାଣତରେ ମୋର ସର୍ବସ୍ୱ ଅର୍ପଣ କଲି । ଅନ୍ତରରେ ତାଙ୍କର ଡାକ ସେ ଜଣାଇ ଦେଲେ—

ସର୍ବ ଧର୍ମାନ୍ ପରିତ୍ୟଜ୍ୟ ମାମେକଂ ଶରଣଂ ବ୍ରଜ

"ଯାହା ସବୁ ଧର୍ମ ବା ମାନବ—ଚିନ୍ତାର ଧାରା ସମ୍ବନ୍ଧରେ ଜାଣିଛୁ, ପଢ଼ିଛୁ ବା ଶୁଣିଛୁ ସେ ସବୁ ଗୋଳମାଳିଆ ଭାବକୁ ଭୁଲିଯା, କେବଳ ମୋର ଆଶ୍ରାନେ ।

ଅରେ ଅ, ଅ—ସେ ସବୁ ଭୁଲ ଯା—ଯାଉଛି ମୁଁ ତଳକୁ । ଯେଉଁ ଦେଶକୁ ଯିବ ସେ ଫଳ ଖାଇଲେ ବଞ୍ଚିବ । ଭାତ ନ ମିଳିଲେ ରୋଟି ଖାଇଲେ ଚଳିବ କିନ୍ତୁ ପାଉଁରୋଟି ନୁହେଁ ।

ଅନୁସରଣ କଲି ।

ବୁଦ୍ଧମ୍ ଶରଣଂ ଗଚ୍ଛମି
ଧମ୍ମମ୍ ଶରଣଂ ଗଚ୍ଛମି
ସଙ୍ଘମ୍ ଶରଣଂ ଗଚ୍ଛମି

ହେ ବୁଦ୍ଧ, ତୁମେ ବସ୍ତୁର ନିୟନ୍ତ୍ରଣର ମୂଳ କାରଣ, ମୋର ଯାତ୍ରାର ନିୟନ୍ତ୍ରଣ ପାଇଁ ତୁମ ସହିତ ସଂଯୋଗ ହୋଇ ତୁମ ଭିତରେ ଲୀନ ହୋଇଁ ମୋର ସତ୍ତାକୁ ସମର୍ପଣ କଲି । ହେ ଧର୍ମ, ତୁମେ ବସ୍ତୁର ନିୟନ୍ତ୍ରଣରେ ନିୟମ ପ୍ରୟୋଗ କରି ତାକୁ ଗତିଶୀଳ ରଖିଛ । ସେହି ନିୟମ ସୂତ୍ରରେ ମୁଁ ନିଜକୁ ଭସାଇ ଦେବାକୁ ଚାହେଁ, ଯେଉଁ ସୂତ୍ରକ ବାଟ ହୋଇ ମୋତେ ଘାଟ ପାଖରେ ପହଞ୍ଚାଇ ଦେବ । ହେ ପଥପ୍ରଦର୍ଶକ ଋଷି, ମୁନି ମହାଜନ ସମୂହ ସଫଳ ଯାତ୍ରା ପାଇଁ ତୁମର ଶୁଭାଶୀଷ ଧାରା ମୋର ଅନ୍ତରରେ ପ୍ରବାହିତ ହେଉଥିବ ଥିଏ ସେଥିପାଇଁ ନତମସ୍ତକ ହୋଇ ରହିଲି ।

ନଦୀର ସମାନ୍ତରାଳରେ, କିଛି ଦୂର ଆଗେଇବା ପରେ ଦୁଇଟି ରାସ୍ତା ପଡ଼ିଲା । ଗୋଟିଏ ସଳଖ ଭାବରେ ଓ ସଡ଼କ ପାଇଁ କଟା ଯାଇଥିବା ରାସ୍ତା ଓ ଅପରଟି ଉପରକୁ ଯାଇଥିବା ପକ୍କା ପୁରୁଣା ରାସ୍ତା । ତଳ ରାସ୍ତାଟି ବିପଦସଙ୍କୁଳ, ଉପର ରାସ୍ତା ଦେଇ ଯିବାକୁ ନିର୍ଦ୍ଦେଶ ଖୁଣ୍ଟିରେ ଲେଖା ଯାଇଥିଲା । ସକ୍ସେନା ବାବୁ ଛକ ପାଖରେ ବସି ଥିଲେ । ମୋତେ ଦେଖି ତଳରାସ୍ତା ବାଟେ ଯିବା ବୋଲି କହିଲେ । ମୁଁ ମନାକଲି ଓ କହିଲି ଯେ ମୋର ତରବର ହେବା ଦରକାର ନାହିଁ । ଧୀର ସୁସ୍ଥରେ କୈଳାସ

ଯିବ ଓ ଫେରିବ । କିନ୍ତୁ ମୁଁ ପୂର୍ବ ଅନୁଭୂତିର ପୁନରାବୃତ୍ତି କରିବି ନାହିଁ ବୋଲି ତାଙ୍କୁ କହିଲି । ପୁରୁଣା ରାସ୍ତାଟି ସେଠି ଖୁବ୍ ଉଠାଣିଆ । ସ୍ଥାନ ବିଶେଷରେ ପଥର ପକାଇ ପାହାଚ ପରି ହୋଇଥିଲା । ସେଥିରେ ଅଗ୍ରସର ହେବା କଷ୍ଟସାଧ୍ୟ ଓ ସମୟ ସାପେକ୍ଷ । ମାତ୍ର, ନିଶ୍ଚୟ ଉଦ୍ଦେଶ୍ୟ ନେଇ ନିରବଚ୍ଛିନ୍ନ କାଳ ନେଇ ଯାତ୍ରା କରୁଥିବା ପଥିକର କଷ୍ଟ ବା କଣ ? ଡେ଼ରି ହେଉ, କିନ୍ତୁ ଆପଦ ନ ଥାଉ ।

ମୋ କଥା ରହିଲା । କିନ୍ତୁ ଲମ୍ବା ପର୍ବତ ହେଉ ଖସି ପହଁରିବାକୁ ପଡ଼ିଲା । ଏହିପରି ଯାତ୍ରାକରି ଦିନ ଏଗାରଟା ସମୟରେ ଝାଲନାଳ ଓ ହାଲିଆ ହୋଇ 'ଖେନ'ରେ ପହଞ୍ଚିଲୁ । ପୂର୍ବରେ ଲୋକେ ଏ ବାଟ ଦେଇ ଯା ଆସ କରୁଥିଲେ । ପଥିକ ପାଇଁ ଦୋକାନ ପତ୍ର, ପାଣିକଳ ଓ ରହିବା ଜାଗାଅଛି । କିନ୍ତୁ ତଳ ରାସ୍ତା ସରଳ ଥିବାରୁ ବର୍ତ୍ତମାନ ସେ ବାଟେ ଲୋକେ ଯା ଆସ କରନ୍ତି । ସେ ହେଲା ସେଠାକାର ଦୋକାନ ବାଲାର ଦୁଃଖ । ସେଠି କିଛି ସମୟ ବିଶ୍ରାମ କରି, ବିସ୍କୁଟ ଖାଇ, ପାଣିପିଇ ବାହାରିଲୁ ।

ସକ୍‌ସେନା ବାବୁ ଆଗେଇ ଗଲେ । କିଛି ସମୟ ପରେ ଅଦୃଶ୍ୟ ହୋଇଗଲେ । ପରେ ଦେଖିଲି ତଳେ କିଛିଦୂରରେ ସେ ଓହ୍ଲାଇ ଯାଉଛନ୍ତି । ଗୋଟିଏ ରାସ୍ତା ଘୁଞ୍ଚି ଦେଇ ଆସିଛି ବୋଲି ଜାଣି ପାରି ବାହୁଡ଼ିଲି । ପ୍ରାୟ ଗୋଟେ ଫର୍ଲଙ୍ଗ ଫେରିଲା ପରେ, ସେହି ରାସ୍ତାରୁ ତଳକୁ ଖୋଲି ଯାଇଥିବା ଶାଖା ରାସ୍ତାରେ ଚାଲିଲି । ସେହି ରାସ୍ତା ଶେଷରେ, ପାହାଡ଼ ତଳେ ନଦୀ ଉପରେ ଗୋଟିଏ ପକ୍କା ପୋଲ ପଡ଼ିଲା । ନଦୀର ସମାନ୍ତ-ରାଳରେ ଆସିଥିବା ରାସ୍ତାଟି ସେଠି ମିଳିଥିଲା । ବନ୍ଧୁ ସାକ୍‌ସେନା ବାବୁ ମୋ ପାଇଁ ସେଠାରେ ଜଗିଥିଲେ ।

ତବାଘାଟ—

ଅତ୍ୟଧିକ ଉତ୍ତାପ ହେତୁ ମୋ ତଣ୍ଟି ଶୁଖି ଯାଉଥାଏ । ତବାଘାଟ ସେ ପୋଲଠାରୁ ପ୍ରାୟ ଗୋଟିଏ ଫର୍ଲଙ୍ଗ ଦୂରରେ ଥାଏ । ତବାଘାଟର ଦୂରତ୍ୱ ଧାରଚୁଳା ଠାରୁ ଦଶ ମାଇଲ୍ । କିନ୍ତୁ ଆମେ ନାରାୟଣ ଆଶ୍ରମ ଓ ପୂର୍ବ ଏହି ... ଆମେ ନାରାୟଣ ଖଣ୍ଡରେ ... 

ଆମେ ନଗପଦ ବଙ୍କା ରାସ୍ତାଦେଇ ଓ ଉଠାଣି ଅତକ୍ରମ କରି ବାର ମାଇଲ ଚାଲି ଆସିଛୁଁ । ଏକ ଦିନରେ ସେତିକି କେବଳ ଚାଲିବା କଥା । ମୁଁ ସକ୍‌ସେନା ବାବୁଙ୍କୁ ରହିବାକୁ କହିଲି । କିନ୍ତୁ, ସେ ମାନିଲେ ନାହିଁ । କାରଣ ଦର୍ଶାଇଲେ ଯେ ତାଙ୍କର ନୂତନ କର୍ମ କ୍ଷେତ୍ରରେ ଯୋଗ ଦେବା ତାରିଖ ହୋଇଁ ଯାଇଛି । ତାଙ୍କୁ କୌଣସି ମତେ ସେଠାରେ ସେ ଦିନ ପହଞ୍ଚିବାକୁ ହେବ । ନ ହେଲେ ଅସୁବିଧାରେ ପଡ଼ିବେ । ମୋର ଶୋଷ ମେଣ୍ଟିବା ପାଇଁ ଏତି ରକମ ଗୁଣ୍ଡ ଗଗଲ୍‌ଣି ଆଗୁରୁ କେତେ ଗୁଳା ଦେଲେ ଓ ପିବା ପାଇଁ ପ୍ରୋତ୍ସାହିତ କଲେ ।

ସେଠୁ କିଛି ବାଟ ଉଠିଛୁ, ଗୋଟିଏ ଚାହା ଦୋକାନ ଦେଖିଲୁଁ । ସେଠାରେ କିଛି ବିସ୍କୁଟ ଖାଇ ଗୁଣ୍ଡ ଦୁଧର କ୍ଷୀର ପିଇଲୁ । ଶୁଣିଲୁ ଯେ ଯାତ୍ରୀ ଦଳଟା ସକାଳେ ତବାଘାଟରୁ ବାହାରି ଏହିବାଟ ଦେଇ ଯାଇଛନ୍ତି । ସେମାନେ ରାତିରେ ଶୀର୍ଖାରେ ରହିବେ । ତାଙ୍କର ସଙ୍ଗରେ ଥିବା ସ୍ୱାମିଜୀ ଖୁବ୍ ତେଜରେ ଚାଲିଯାନ୍ତି ।

ସକ୍‌ସେନା ବାବୁଙ୍କୁ ବିଦାୟ ଦେବାର ସୁଯୋଗ କରିବାକୁ ଓ ମୋତେ ପ୍ରୋତ୍ସାହିତ କରିବାକୁ ସୁବିଧା ମିଳିଲା । ସେ ଆଗେ ଆଗେ ଗଲେ ।

ଠାଣି—

ପାହାଡ଼ର ଉଠାଣି ପରେ 'ଠାଣି' ବୋଲି ଗୋଟିଏ ଜାଗା ପଡ଼ିଲା । ସେଠି ତିନି ଚାରୋଟି ଦୋକାନ ଥାଏ । ସାମନାରେ ମଣ୍ଡପଟିଏ । ଟିକିଏ ବସି ପଡ଼ିଲି ।

କେଦାର-ବଦ୍ରି ରାସ୍ତାରେ ଚଳି ବାଟରେ ଅନ୍ତତଃ ମାଇଲିଏ ଦୁଇ ମାଇଲ ଭିତରେ ଚଟିଘର ଓ ଜାଗା, ଜାଗାରେ ଜଳପ୍ରପାତ ଥାଏ । ପାହାଡ଼ରୁ ଉଠିଲା ମାତ୍ରେ ମୁଁ ଚାଲିବା ଆରମ୍ଭ କରେଁ ଓ ବାଟରେ ନିତ୍ୟକର୍ମ, ଗାଧୁଆ ଓ ପୂଜାପାଠ ପ୍ରଭୃତି ସାରି ଜଳଖିଆ କରି ଦଶ ଏଗାରଟା ସମୟକୁ ଆଠ ଦଶ ମାଇଲ ଆଗେଇ ଯାଇଥାଏଁ । ଦୁଇ ତିନି ଘଣ୍ଟା ଖାଇ ଅଟକି ପୁଣି ସନ୍ଧ୍ୟାବେଳେ ଫେର ଚାରି ଆଠ ମାଇଲ ପର୍ଯ୍ୟନ୍ତ ଆଗେଇ ଯାଏ । କୌଣସି ଦିନ ଷୋଳ ମାଇଲଠାରୁ ବେଶି ବାଟ ଆଗେଇ ନାହିଁ । ଅବଶ୍ୟ କାନ୍ଧରେ ବୋଝଥାଏ । ପ୍ରତ୍ୟେକ ଚଟିଘରେ ଖାଇବା ପାଇଁ ଯାହା ଦରକାର ତାହା ମୋଟେ ମିଳୁଥାଏ ।

କିନ୍ତୁ ଆଜିର ଯାତ୍ରା ଅଲଗା । ଏ ଶେଷ ପାଞ୍ଚ ମାଇଲ ଅନବରତ ଉଠାଣି, ଗୋଟେ ଖାଡ଼ା ପାହାଡ଼ ଦେହରେ ସର୍ପିଳ ରାସ୍ତାଦେଇ ଅତିକ୍ରମ କରୁଥିଲି । ଭୀଷଣ ଖରା । ଦାନାପାଣି ଖାଇ ନାହିଁ । ସତର ମାଇଲ ଅଖାଡୁଆ ରାସ୍ତାଦେଇ ଚାଲିଲା ପରେ, ଅବସ୍ଥାଟା ଯେ କଣ ହୋଇଥିବ ତାହା ଅନୁଭବୀ କେବଳ ଅନୁଭବ କରି ପାରିବ । ସେ ଦିନର ସେ ଯେଉଁ ପରିଶ୍ରମ ତା ମୁଁ ଜୀବନରେ କେବେହେଲେ ଅନୁଭବ କରି ନଥିଲି ।

ଲଥକିନା ଝୁଲାଟା ଫିଙ୍ଗିଦେଇ ବସି ପଡ଼ିଲି । ବସୁ ବସୁ ଜଣେ ସୁଶ୍ରୀ ଯୁବକ ସହାସ୍ୟ ବଦନରେ 'ଆସନ୍ତୁ' କହି ନମସ୍କାର

ଛନ୍ତି । ମନେ ମନେ ଖାଏଣ ରାଗି ଉଠିଲି । ବାର ବର୍ଷର ତପସ୍ୟା ସୁଖୁଆ ପୋଡ଼ାରେ ଯିବା ଉପରେ । ଭାବିଲି ମୋର ଅବସ୍ଥା ଦେଖି ନପାରି ବ୍ୟଙ୍ଗ କରୁଛନ୍ତି । କିନ୍ତୁ ମୋର ପ୍ରଥମ ରୁକ୍ଷ ବ୍ୟବହାରକୁ ସେ ନମ୍ରତା ସହକାରେ ସହ୍ୟ କରି ନେଇଥିଲେ । ଶୁଣିଲି ଯେ ସେ ଜଣେ ଗୁଇନ୍ଦା ବିଭାଗର ସର୍କଲ ଇନ୍‌ସପେକ୍ଟର । ଚା ମାଗିଲେ । ମୁଁ ତ ଚାହା ଖାଏ ନାହିଁ, ଚାହା ଦୋକାନରେ ଟିକିଏ ଗରମ ପାଣି ପିଇବା ପାଇଁ ମାଗିଲି । ହେଲେ, ସେ ଦେବାକୁ ଅମଙ୍ଗ ହେଲା । ସାଙ୍ଗେ ସାଙ୍ଗେ ପୋଲିସ ବାବୁ ଜଣକ ଅନୁରୋଧ ଛଳରେ ଆଦେଶ ଦେଲେ । ଟିକିଏ ଲୁଣ ମିଶାଇ ପିଉଛନ୍ତି, ନିଜ ଥଳିରୁ ଗୋଲମରିଚ ଗୁଣ୍ଡ ବାହାର କରି ଦେଲେ । ଆଶ୍ୱସ୍ତ ହେଲି, ସେ ମୋତେ ଖୁବ୍ ଉତ୍ସାହ ମଧ୍ୟ ଦେଲେ । କହିଲେ···'ଫେରିଲେ ଯାତ୍ରାର ଅନୁଭୂତି ବିଷୟ ବର୍ଣ୍ଣନା କରିବ' । ତାଙ୍କର କୁଆଡ଼େ ଯିବାର ବହୁତ ଇଚ୍ଛା । କିନ୍ତୁ, ପୋଲିସ ବିଭାଗରେ ଚାକିରି କରୁଥିବା ହେତୁ ଯାଇପାରୁ ନାହାନ୍ତି ବୋଲି ଜଣାଇଲେ । ତା ପରେ ସେ ମୋତେ ପଚାରିଲେ—

ଏତେ ଅଳ୍ପ ବୟସରେ କପରି ପାଉଛ ? ପିଲାଦିନୁ ଇଚ୍ଛା ଥିଲା ବୋଧହୁଏ । ମୁଁ ସମର୍ଥନ କରି ମୁଣ୍ଡ ହଲାଇଲି । ପୋଲିସ ବିଭାଗର ଲୋକ ହୋଇଥିବା ହେତୁ ତାଙ୍କ ପ୍ରତି ମୋର ସତର୍କତା ମୂଳକ ଦୂରେଇବା ଭାବ ଥାଏ । ତାଙ୍କର ସହାନୁଭୂତିର ଓ ମେଳାପି ଢଙ୍ଗର ଖାପଖିଆ ବ୍ୟବହାର ମୁଁ ଦେଇପାରି ନଥିଲି ।

କିଛି ଦୂର ଆଗେଇଛୁ, ପ୍ରାୟ ମାଇଲିଏ ପରେ 'ପାଙ୍ଗ୍' ବୋଲି ଗୋଟିଏ ଜାଗା ପଡ଼ିଲା । ସେଠାରେ କମାଣ୍ଡରର ଜଣକ

ସେଠାରେ ରାତିକ ରହିଯିବା ପାଇଁ ମୋତେ ଅନୁରୋଧ କଲେ । କିନ୍ତୁ ମୁଁ ଶୀଘ୍ର ଗାଁରେ ପହଞ୍ଚିବ ବୋଲି ଗଣି ଦ୍ରୁତ ଚାଲି ଚାଲିଲି ।

ଗାଁ ମୁଣ୍ଡଠାରୁ ଅଧ ମାଇଲଏ ଖଣ୍ଡେ ଚାଲିଲା ପରେ ଗୋଟେ ବିପଦ ଉପରେ ଉଠାଣି ପଡ଼ିଲା । ସେତେ ଖାଖ ନ ହେଲେ ମଧ୍ୟ, ଅନଭ୍ୟସ୍ତ ହେବା ଦେହଟାକୁ ଦୋହାରି ଦୋହାରି ନେବାକୁ ହେଉଥିଲା । ଦୁଇଟି ନୂଆ ରାସ୍ତା ପରସ୍ପରକୁ କାଟାକଟି କରି ଯାଇ-ଥାନ୍ତି । ଗୋଟେ ପୁରୁଣା ଓ ଅପରଟି ନୂଆ । ପୁରୁଣାଟିର ଉଠାଣି କୋଣ କିଛିଏ ବେଶି ଓ ସେହେତୁ ଅପେକ୍ଷାକୃତ କଷ୍ଟସାଧ୍ୟ । ମୁଁ ନୂଆଁ ରାସ୍ତାରେ ଚାଲିଲି । ଯାଇଁ ଯାଇଁ ହଠାତ୍ ଦେଖିଲି ରାସ୍ତା ଶେଷ । ପୁଣି ପଚିଶ ତିରିଶ ଫୁଟ ଦୂରରେ ରାସ୍ତାଟି ଫେର ଆରମ୍ଭ ହୋଇଥାଏ । ମଝିରେ କେବଳ ଘାସ ଥାଇ ପାହାଡ଼ର ଗୋଲ-କାଂଶ । ତାର ଗଡ଼ାଣିଟା ବେଶ୍ ଖାଖ ପରି ଜଣାଯିବାରୁ ସେତେବେଳେ ସେ ପଥ ଅଗମ୍ୟ ମନେକରି ଯିବାକୁ ସାହାସ କଲି ନାହିଁ । ବୋଡ଼ିଏ ଫୁଟ ତଳେ ଆଉ ଗୋଟିଏ ରାସ୍ତା ସିଧା ହୋଇ ପଡ଼ିଥାଏ । ତଳ ରାସ୍ତାରେ ଦଳେ କୁଲି ଯାଉଥିବାର ଦେଖିଲି । ସେମାନଙ୍କୁ ଡାକ ପକାଇଲି । ସେମାନଙ୍କ ମଧ୍ୟରୁ ଜଣେ କହିଲା ଯେ ସେଇଟା ଏକ ଅସମ୍ପୂର୍ଣ୍ଣ ନୂତନ ରାସ୍ତା । ତେଣୁ ମୋର ତଳ ରାସ୍ତାରେ ଯିବା ଉଚିତ ଥିଲା ।

ପଚାରିଲି—ତା ହେଲେ କଣ କରିବ ?

ସେ "ମାଇଲଏ ଖଣ୍ଡେ ତଳରେ ଦୁଇ ରାସ୍ତା ମିଶିଛି ବାହୁଡ଼ି-ବାକୁ ହେବ" ।

ସେତେବେଳେ ମୋର ଅବସ୍ଥା ସାଙ୍ଘାତିକ । ଗୋଟିଏ ପାଦର ବୁଢ଼ା ଆଙ୍ଗୁଠି ପାଖରେ ଆଉ ପାଦଟି ପଡ଼ୁଥାଏ । ଦେହ ଓ ମନ ପୂର୍ଣ୍ଣ ରୂପରେ ଅବଶ ହୋଇ ପଡ଼ୁଥାଏ । ସବୁଥାଏ, ଫେରିଯାଇ ଆସି ପାରିବା କଥା ସ୍ୱପ୍ନ ହେବ ନାହିଁ । ସେମାନେ ଓହ୍ଲାଇବା ପାଇଁ କହିଲେ । ମୋର ଅସମର୍ଥତା ପ୍ରକାଶ କରିବାରୁ ସେମାନେ ମୋତେ ସାହାସ ଓ ଉତ୍ସାହ ଦେଲେ । ଚେଷ୍ଟା କଲେ ହୋଇଯିବ ବୋଲି ଦମ୍ଭ ଦେଲେ । ଚେଷ୍ଟା କରି ଦେଖିଲି ଯେ ଟେକା ଟେକା ଘାସ ଭିତରେ ଗୋଡ଼ ଦେଇ ଓହ୍ଲାଇ ପାରୁଛି । ଆଠ ନ' ଫୁଟ ଅଛି ପଡ଼ିଲା ତଳ ରାସ୍ତାର ପାର୍ଶ୍ୱର କାନ୍ଥ ।

ଖସି ଯିବାର ଭୟ ଦେଖି ଓହ୍ଲାଇବାଟାରେ ଆଉ ଦମ୍ଭ ରହିଲା ନାହିଁ । ଛଚା ବାଡ଼ ତଳକୁ ଫିଙ୍ଗି ଗୋଟାଏ ଲମ୍ଫ ପ୍ରଦାନ କଲି । ତେଣିଅଡ଼ ଗଛଟି ହୋଇ ପଡ଼ିଗଲି । ଝୁଲାରେ ଥିବା ବ୍ୟାଣ୍ଡେଜ୍, କ୍ଲିପ୍, ଔଷଧ ପତ୍ର, ବିସ୍କୁଟ, ବେଡ୍‌ଶିଟ ଇତ୍ୟାଦି ଜିନିଷ ପତ୍ର ଇତସ୍ତତଃ ହୋଇ ରାସ୍ତାରେ ବିଚ୍ଛେଇ ଗଲା । ଗୋଟେଇ ନେଇ ପୁଣି ଝୁଲାରେ ପୂରାଇଲି ।

କିଛି ସମୟ ପୂର୍ବେ ଦୂରରୁ ଦେଖିଥିବା ଚାରିଜଣ ମହିଳାଙ୍କ ମଧ୍ୟରୁ ତିନିଜଣ ଆସି ସେଠାରେ ପହଞ୍ଚିଲେ । ମୁଷ୍ଟା ଢିପ ଉଠିଲା ସମୟରେ ଢିପର ବହୁ ଦୂରରୁ, 'ଘାଙ୍ଗ' ରାସ୍ତାରେ, ରଙ୍ଗ ବେରଙ୍ଗର ଶାଢ଼ୀ ପିନ୍ଧିଥିବା ଯୋଗୁଁ ମୁଁ ତାଙ୍କୁ ଅନେକ ଥର ଦେଖିଛି । ତାଙ୍କ ଭିତରୁ ଜଣେ ଯେ କି କମ୍ ବୟସର ଥିଲେ ସେ ମୁଁ ଓହ୍ଲାଇବା ପରେ ପରେ ନୂଆ ରାସ୍ତାରେ ପାହାଡ଼ ଡେଇଁ ଦେଇ ଚାଲିଗଲେ । ଆଉ ତିନିଜଣ ତଳର ପୁରୁଣା ରାସ୍ତାଦେଇ ଆସି ମୋତେ ଭେଟିଲେ ।

ସେମାନଙ୍କ ଭିତରେ ଜଣେ ପ୍ରୌଢ଼ାଥିଲେ । ସେ ଆସି ମୋତେ ପଚାରିଲେ—ତୁମେ କଣ କୈଳାସ ଯାତ୍ରୀ ?

ମୁଁ—'ହଁ' ।

ସେ—କେଉଁଠାରୁ ଆସିଛ ?

ମୁଁ—ଭୁବନେଶ୍ୱରରୁ ।

ସେ—କଣ ପୁରୀ ପାଖରେ ?

ମୁଁ—ହଁ ।

ସେ—ଏନସାରି କଣ୍ଟୁ ଖାଇନାହିଁ ବୋଧହୁଏ ?

ଏ ପର୍ଯ୍ୟନ୍ତ ମୁଁ ଏକ ପ୍ରକାର ବେଖାତିରିରେ ଉତ୍ତର ଦେଉଥିଲି । କିନ୍ତୁ ଏ ଶେଷ ପ୍ରଶ୍ନରେ ଟିକିଏ ଡରିଲି ଯାଇଥିଲି, ତାଙ୍କର ହୃଦୟର ଆନ୍ତରିକତା ଅନୁଭବ କରି ଓ ସତେକି ମୋର ସେଥିରେ ବିଶେଷ ଯାଏ ଆସେନି ଏପରି ଭାବ ଦେଖାଇ କହିଲି —'ହଁ ବହୁତ ଖାଇଛି' ।

ସେ—ବହୁତ ପୁଣି କଣ ଗୋଟିଏ ଖାଦ୍ୟ ?

ଏତିକିରେ ତାଙ୍କ ପ୍ରଶ୍ନ ତୁଟେଇ ରହିବା ଭଳି ଗୁଲିଗଲି । ତା ପରେ ତାଙ୍କ ନିଜ ବିଷୟ ଜଣାଇବାକୁ ଯାଇ ସେ କହିଲେ ଯେ ସେମାନେ ମଧ୍ୟ ବଦ୍ରିନାଥ ତୀର୍ଥ କରି ଯାଇଥିଲେ, ବର୍ତ୍ତମାନ ଫେରୁଛନ୍ତି । ଗୃହସ୍ୱାମୀ ଆଗରେ ଗୁଲି ଯାଇଛନ୍ତି । ସିଡ଼ିରେ ଛବାଘାଟରେ ଥିଲେ । ସେମାନେ ପାହାଡ଼ିଆ ହୋଇ ମଧ୍ୟ ଦିନକୁ ଦଶ ବାର ମାଇଲଠାରୁ ଅଧିକ ଗୁଲନ୍ତି ନାହିଁ । କୈଳାସ ଯାବାର ଲକ୍ଷ ନେଇ ଯିବା ସମୟରେ ସ୍ୱାସ୍ଥ୍ୟକୁ ଜଗି ରଖି ଯିବା ଉଚିତ । ବର୍ତ୍ତମାନ ଶୀଘ୍ର ଯିବାର ସମୟ ନାହିଁ । ସେପ

ଲଗାଇବା ବେଳ ପାଖେଇ ଆସିଲାଣି । ତେଣୁ ସ୍ତିଭରେ ତାଙ୍କ ଘରେ ରହିବାକୁ ଅନୁରୋଧ କଲେ । ଆଜି ତିନିଶ ଚାଳିଶ ଫୁଟ ଉଚ୍ଚାଣି ପରେ ମୋଡ଼ ଉପରେ ତାଙ୍କର ଘର । ଏଠାକୁ କହି କୁଲିମାନଙ୍କ ସହିତ ମୋତେ ଯିବାକୁ ଅନୁରୋଧ କଲେ । ତା'ପରେ ଦୀର୍ଘ ଧାନର ପ୍ରବାସ ପରେ ଘରେ ଝଁଡ଼ାଝଁଡ଼ି, ଝଗଡ଼ା ଝଗଡ଼ି, ଇତ୍ୟାଦି ବହୁତ ଧାଇଁଥିପାଏ ଅଛି ବୋଲି କହି ଆଗେଇ ଚାଲି ଗଲେ ।

ସେହି ତିନିଶ ଚାଳିଶ ଫୁଟ ଉଠିଲା ବେଳକୁ ପାପ ଲଗାଇବା ବେଳ ହୋଇ ଯାଇଥିଲା । ଉଚ୍ଚାଣିଟା ପରେ ଗାଁ ମୁଣ୍ଡରୁ ରାସ୍ତା ସମତଳ ଥିଲା । ଅଗଭଳା କଷ୍ଟ ହେଲା ନାହିଁ । ଗୋଡ଼ ଟିକିଏ ଫିଟିଲା । ପନ୍ଦର କୋଡ଼ିଏ ଫୁଟ ପରେ ରାସ୍ତା କଡ଼ରେ ଗୋଟିଏ ପାଣିକଳ ଓ ଟିକିଏ ଆଗକୁ, ତଳେ ଗୋଟିଏ ଘର । କଳରେ ପାଣି ପିଇ ଦୁଇ ଚାରିଟା ବିସ୍କୁଟ ଖାଇ ଆଗେଇ ଚାଲିବି ବୋଲି ଭାବୁଥିଲି । ଶୀର୍ଷା ଗାଁ ସେଠାରୁ ପ୍ରାୟ ଦୁଇ ତିନି ମାଇଲ ଥିଲା । ଏଥିରେ ସାହାସ ବା ଦୁଃସାହସ ବିଷୟ କିଛି ନଥିଲା । ରାସ୍ତା ବେଶ୍ ଭଲ ଓ ଆଉ ଉଚ୍ଚାଣି ନଥିବା ହେତୁ ମାତ୍ର ଦୁଇ ତିନି ମାଇଲ ରାସ୍ତା ବେଶ୍ ଚାଲି ଯାଇ ପାରିବି ବୋଲି ଭାବୁଥିଲି । ପରିସ୍ଥିତିର ସମ୍ମୁଖୀନ ହେବା ପାଇଁ ନିଜକୁ ପ୍ରସ୍ତୁତ ବୋଲି ଭାବୁଥିଲି । ଦୁଃଖ କଷ୍ଟ ଓ ଆୟାସସାଧ୍ୟ ପନ୍ଥା ଅବଲମ୍ବନ ନକଲେ ରୋମାଞ୍ଚକର ଅନୁଭୂତି ପ୍ରାପ୍ତ ହୁଏ ନାହିଁ ବୋଲି ମୋର ଧାରଣା ଥିଲା । ଅଧିକନ୍ତୁ ସେ ସ୍ତ୍ରୀଲୋକଟିର କଥାରେ ମୁଁ କୌଣସି ଗୁରୁତ୍ୱ ଦେଇ ନଥିଲି ଓ ବୁଝିବାକୁ ଚେଷ୍ଟା ମଧ୍ୟ କରି ନଥିଲି ଏବଂ ଆଗୁଆ ଦଳ ସହିତ ମିଶିବାକୁ ବ୍ୟାକୁଳ ଥିଲି ।

କୁଲି ଜଣେ କହିଲା—ଯେଉଁ ମହିଳା ଜଣକ ତାଙ୍କ ଘରକୁ ଯିବା ପାଇଁ କହୁଥିଲେ, ଏଠା ହେଉଛି ତାଙ୍କ ଘର ।

ଭାବିଲି—'ହଉ', କହିଲି—'ଠିକ୍ ଅଛି' ଓ ମୋ ବାଟରେ ଆଗେଇ ଯିବାକୁ ଉଦ୍ୟତ ହେଲି । ସେତିକିବେଳେ ଅପେକ୍ଷାକୃତ କମ୍ ବୟସ୍କା ସ୍ତ୍ରୀ ଜଣକ ଆସି ଆଦର ସହକାରେ ମୋତେ ଡ଼ାକିଲେ । ରାସ୍ତା ଉପରୁ ଚାରି ଫୁଟର ଡ଼ିଆଁଟେ ମାରି ମୁଁ ଘର ଭିତରକୁ ଗଲି ।

ଟିକିଏ ଅଧିକ ଆଦର ଚାହୁଁଥିଲି ।

ଚାରିଫୁଟ ପ୍ରସ୍ଥ ଓ ଦଶଫୁଟ ଲମ୍ବର ଗୋଟିଏ କୋଠରି, ତା ପରେ ଗୋଟିଏ ବଡ଼ କୋଠରି ଭିତରେ ଅନେକ ଗୁଡ଼ିଏ ଲୋକ ନିଆଁ ପାଖରେ ବସିଥିଲେ । ପ୍ରଥମ ବଖରାର କାନ୍ଥ କଡ଼ରେ ହାତେ ଓସାର ଓ ପ୍ରାୟ ଏକଫୁଟ ଉଚ୍ଚର ଗୋଟିଏ ପିଣ୍ଡି ଥିଲା । ସେଥିରେ ଲଥ୍‌କରି ବସି ପଡ଼ିଲି । ତେବେ ସେ ସ୍ତ୍ରୀ ଲୋକଟି ଆସି ମୋ ପାଖରେ ଠିଆ ହେବାରୁ ମୁଁ ଠିଆ ହେଲି ଓ ମୋ ଗରମ କୋଟଟି ସେ ଓହ୍ଲାଇବାକୁ ଚେଷ୍ଟା କରିବାରୁ ମୁଁ ନିଜେ ଓହ୍ଲାଇ ଦେଲି । ସେ ସେଟାକୁ ନେଇ କାନ୍ଥରେ ଟାଙ୍ଗି ଦେଲେ ।

ବୁଝିଲି ଏମାନେ ଯଥେଷ୍ଟ ଭଦ୍ର ଓ ଅଗୁଆ ଚାଲିଚଳଣିର । ଗରମ କୋଟଟି ଯାତ୍ରା ଆରମ୍ଭରୁ ଦେହରେ ନେଇଥିଲି ଓ 'ଠାଣି' ପରେ ଟିକିଏ ଥଣ୍ଡା ଲାଗିଥିଲା ବୋଲି ପିନ୍ଧିଥିଲି ।

ସାମନାରେ ନିଆଁ ପାଖରେ ଜଣେ ବୁଢ଼ାଲୋକ ବସିଥିଲେ । ସେ ମୋତେ ଭିତରକୁ ଯିବା ପାଇଁ ଠାରିବାରୁ ମୁଁ ଭିତରକୁ ଗଲି । ସେ ମୁରବି ଭଳି ବସିଥିଲେ ଓ ତାଙ୍କୁ ଗୋଡ଼ ଆଉ ବାର

ପଛର ଜଣ ନିଅାଁ ପାଖରେ ଘେରି ରହିଥିଲେ । ମୋତେ ତାଙ୍କ ସାମନାରେ ନିଅାଁ କୁଣ୍ଡର ଏ ପଟକୁ ବସିବାକୁ କହିଲେ । ମୋ ପାଇଁ ଲୋକେ ଜାଗା ଛାଡ଼ିଦେଲେ ଓ ମୁଁ ସେଠାରେ ଅଣ୍ଟୁ ପାକି ବସିଲି ।

ଏହିପରି ସମୟରେ ସେ ସ୍ତ୍ରୀ ଲୋକ ଜଣକ ଗୋଟିଏ କୋମଳ ଗାଲିଚା ଅାଣିଲେ । ମୁଁ ନିର୍ବିକାର ଭାବରେ ବସି ରହିଥିବାରୁ ପଛ ପଟକୁ ଠେଲିଲେ । ଅନ୍ୟମାନେ ତଳେ ବସି ଥିବାରୁ ମୁଁ ସେଥିପ୍ରତି ଆଗ୍ରହ ପ୍ରକାଶ କରି ନଥିଲି । ତା ପରେ ବୁଢ଼ା କହିଲେ ଯେ—'ଆପଣ ହେଉଛନ୍ତି ଆମର ଅତିଥି, ତେଣୁ ଆପଣଙ୍କୁ ସେ ଗାଲିଚାରେ ବସିବାକୁ ହେବ' । ବର୍ତ୍ତମାନ ବୁଝିଲି ଯେ ମୁଁ ଜଣେ ତୀର୍ଥଯାତ୍ରୀ ଭାବରେ ଅଭ୍ୟର୍ଥନା ପାଉଛି । ସୁଖଦାୟକ ସେହି ଆସନରେ ସୁଖାସନ ହୋଇ ମେରୁଦଣ୍ଡ ଗ୍ରୀବା ସଳଖି ବସିଲି । ଘରୋଇ ପରିବେଶ ଭିତରେ, ନିର୍ମଳ ମନରେ ଶ୍ରଦ୍ଧା ସହିତ ଦିଆଯାଇଥିବା ସତ୍କାର ପାଇ ଅାଶ୍ବସ୍ତି ବୋଧ କଲି ଓ ନିଜକୁ ନିରାପଦ ମଣିଲି ।

ବୁଢ଼ା ଜଣକ ମୋତେ କହିଲେ ଯେ ଜାଗାଟା ପ୍ରାୟ ଅାଠ ହଜାର ଫୁଟ ଉପରେ ଥିବା ହେତୁ ଭାରି ଥଣ୍ଡା । ଏତେ ଅଳ୍ପ ସମୟ ଭିତରେ ଦେହ ଶୀତ ସହିବାରେ ଅଭ୍ୟସ୍ତ ହୋଇ ନପାରି ହଠାତ୍ ଥଣ୍ଡା ମଧ୍ୟ ଧରି ପାରେ । ତେଣୁ ନିଅାଁ ପାଖରେ ବସିଲେ ଭଲ ।

ସେ ଧରି ପାରିଥିଲେ ଯେ ତାଙ୍କର ଓ ମୋର ଚାଲିଚଳଣରେ ଆକାଶ ପାତାଳ ପ୍ରଭେଦ ଥିବା ହେତୁ ମୁଁ ତାଙ୍କର କାର୍ଯ୍ୟଗୁଡ଼ିକୁ ବୁଝି ପାରୁ ନଥାଏ । କେଉଁ ଧରଣର ଅାଶ୍ରୟ ପାଇଛି ସେଇଟା ଧରି

ପାରୁ ନଥାଏ । ଅଲଗା ବ୍ୟବହାର ପ୍ରତି ମୋର ସ୍ୱଭାବତଃ ତରକ୍ତ ଭାବ ଥାଏ ଓ ସ୍ୱତଃ ପ୍ରତ୍ୟେକ କାର୍ଯ୍ୟ ପଛରେ 'ତାତ୍ତ୍ୱିକ' ଭାବଟା ଉଦଯ୍ଣ ହୋଇ ବୁଝିବାକୁ ଚେଷ୍ଟା କରୁଥାଏ । ସେହେତୁ ସେ ବୁଝାଇ ସେ ଭାବର କଳେପ ତରୁଜଥାନ୍ତି । ଭାବଲ ବୁଢ଼ା ବୁଦ୍ଧିରେ ପରୁପନ୍ତୁ ।

ବୁଢ଼ା କହି ଚାଲଲେ—ମୁଁ ଏଠାର ରାଜା, ଏମାନେ ସମସ୍ତେ ଆମର ପ୍ରଜା । ଆପଣ ହେଲେ ଅତଥି । ଆମେମାନେ ଏହିକ୍ଷଣି ବଦ୍ନାଥରୁ ଆସୁଛୁଁ, ତେଣୁ ଯର ସଜଡ଼ା ସଜଡ଼ରେ ସମୟ ଲାଗିବ । ରନ୍ଧାବନ୍ଧରେ ଡେରି ହେବ । ଆପଣଙ୍କ ପାଇଁ ବର୍ତ୍ତମାନ କଣ ଦରକାର ?

କହିଲି—ଟିକଏ ଗରମ ପାଣିର ବନ୍ଦୋବସ୍ତ ହେଲେ ଭଲ ।

ସେଠୁ ସେ ପଚାରିଲେ—ଆଉ କଣ ?

କହିଲି—ଟିକଏ ଲୁଣ ସେଥିରେ ଦେବେ ।

ଏ କଥା ଶୁଣି ପାଖରେ ଥିବା ଲୋକ ସବୁ ହସିଲେ । ଭାବଲି ଚଳ ନ ମାଗି ଲୁଣ ମାଗୁଛି ବୋଲି ହସୁଛନ୍ତି । କୁଲି ମୂଲିଆ ଲୋକତ, ଚଳଟାକୁ ସୌଖିନ୍ ଜନିଷ ବୋଲି ଭାବଛନ୍ତି, ସୁବିଧା ପାଇଲେ ମାରି ନେବେ ।

ପ୍ରକୃତରେ ବୁଢ଼ା ନ ମାଗିବାରୁ ସେମାନଙ୍କ ଠାରୁ ମୁଁ ପଚାରୁଅ ବୋଲି ଭାବ ନେଇଥିଲି ।

କହିଲି—ଆଜ ଦନକରେ ଖୁବ୍ ଚାଲିଛି, କଣ୍ଠ ଖାଇ ନାହିଁ ଓ ଯଥେଷ୍ଟ ପରିମାଣରେ ପାଣି ପିଇ ନାହିଁ । ସେହେତୁ ରକ୍ତର ଜଳୀୟ ଅଂଶରେ ଅନେକ କ୍ଷୟ ଘଟିଥିବ । ତାହା କେବଳ ଲୁଣ

ପାଣି ଦ୍ୱାରା ହିଁ ପୂରଣ ହୋଇ ପାରିବ । ତେବେ ଲେମ୍ବୁ ଖଣ୍ଡେ ମିଳିଲେ ଭଲ ହୋଇଥାନ୍ତା । କିନ୍ତୁ ଜାଣେ ଯେ ଏଠାରେ ଲେମ୍ବୁ ମିଳିବ ନାହିଁ ।

ବୁଢ଼ା—ଏଠାରେ ଲେମ୍ବୁ ମିଳେ ନାହିଁ ।

ଲେବରେଟରୀରେ ତିନିପାଦ ଷ୍ଟାଣ୍ଡ ଯେପରି ଥାଏ ସେପରି ଗୋଟିଏ ଚତୁଷ୍ପାଦ ଉପରେ ବସା ଯାଇଥିବା ଲମ୍ବାବଲା ବଣିଷ୍ଟ ଗୋଟିଏ ଚୂଲ୍ଲୀକୁ ନିଆଁ ଉପରେ ରଖାଯାଇ ତା ଉପରେ ପାଣି ଗରମ କରାଗଲା । ଅଳ୍ପ ସମୟ ପରେ ପାଣି ପିଇଲି ।

ଏହାପରେ ସମୟରେ ଗାଁର କେତେକ ପିଲା ଆସି ବୁଢ଼ା ନିକଟରେ ଅଳି କରିବାରୁ ବୁଢ଼ା ପ୍ରସାଦ ଭରି ଅଳ୍ପ ଅଳ୍ପ ଖାଇବା ଜିନିଷ ବାଣ୍ଟିଲେ । ମୁଁ ସେଠୁ ବାହାର ବଖରାକୁ ଯାଇ ଟ୍ରଙ୍କରୁ ଦୁଇଟି ବିସ୍କୁଟ ପେକେଟ ଆଣି ବୁଢ଼ାକୁ ବାଣ୍ଟିବାକୁ ଦେଲି ।

ବୁଢ଼ା କହିଲେ—ସ୍ୱା ହେଲେ ଗାଁଟା ଯାକର ପିଲା ପଳାଇ ଆସିବେ ।

ମୁଁ କହିଲି—ଅଧିକ ବି ଅଛି ।

ଏ କଥାଟା ଅନ୍ୟାନ୍ୟମାନଙ୍କ ଭିତରେ ଗୋଟିଏ ଚାଞ୍ଚଲ୍ୟ ସୃଷ୍ଟି କରିଥିଲା । ସେମାନେ କପରି ଜାଣିବେ ଯେ ଦଶଜଣଙ୍କୁ ଖୁସି କରିବାରେ ମାତ୍ର ଅଣାଟିଏ ପଇସାର ଖର୍ଚ୍ଚ ।

ଏପରି ସମୟରେ ବାଁ ପଟରେ କେମିତି ଏକ କୋମଳ ସ୍ପର୍ଶ ଅନୁଭବ କଲି । ଜାଣିଲି ଜଣେ ସ୍ତ୍ରୀ ଲୋକ ଆସି ମୋ ପାଖରେ ଠେଲି ହୋଇ ବସିଛି । ବାଁ ପଟଖଟା ଯାକରେ କୋମଳ ପରଶ ପାଇ ଝିଣ୍ଡିଆ ଖାବରା ସ୍ନାୟୁ ସବଳ ସୁସ୍ଥ ହୋଇ ନୂତନ ଜୀବନ

ପାଇଲେ । ଦେଖିଲି ବୁଢ଼ାର ନଜର ସିଧା ସଳଖ ମୋ ଉପରେ ।
ମନେ ହେଲା ଅନ୍ତର୍ଦୃଷ୍ଟି ଦେଇ ମୋର ମନୋଭାବକୁ ବୁଝିବା ଚେଷ୍ଟା କରୁଛନ୍ତି ।
ଅନ୍ୟମାନଙ୍କ ଭିତରୁ ମଧ୍ୟ କେତେଜଣ କଣେଇ କଣେଇ ଦେଖୁଥିଲେ । ସର୍ବଥା ପ୍ରବୃତ୍ତ ଓ କୌତୂହଳକୁ ପ୍ରଶ୍ରୟ ଦେବା ଅନୁଚିତ ।
ଯାହା ହେଉ, ମୁଁ ଟିକିଏ ଆଡ଼େଇ ଗଲି । ଗୋଟାଏ ସାଧକର
ସଂଯମ ଅଛି, ଯାତ୍ରୀର ନିଷ୍ଠା ଅଛି ଓ ଅତିଥିର ଗୋଟାଏ ଧର୍ମ ଅଛି ।

ତା ପରେ ବୁଢ଼ା ମୋର ଘର ନାଁ ଗାଁ ଇତ୍ୟାଦି ପଚାରିଲେ ।
କହିଲି ଯେ ମୁଁ ଭୁବନେଶ୍ୱରରୁ କୈଳାସ ଯାଉଛି । ମୋର ନାଁ
ଶିବଶଙ୍କର । ଏ ତିନି ନାମରେ ମେଳ ଥିବା ଅନୁଭବ କରି ସେମାନେ ବିସ୍ମାରିତ କରି ଥିଲେ । ଜାତିରେ ବ୍ରାହ୍ମଣ, ବିବାହ କରିଛି,
ପିଲାପିଲି ଅଛନ୍ତି—ଏ ସବୁ ଶୁଣି ସେ ମୁଣ୍ଡ ହଲେଇଲେ । ସତେ କି
ସେ ଏ ସବୁ କଥା ଆଗରୁ ଧରି ନେଇଥିଲେ । କଣ ଚାକିରି ଓ
କି ରୋଜଗାର କରୁଛି ?—ଏହାର ଉତ୍ତର ବୁଝିପାରି ଥିବାରୁ, ବୁଢ଼ା
ତାହାର ଜଗତ ବିଷୟରେ ବେଶ କିଛି ଜାଣନ୍ତି ବୋଲି ଧରି
ନେଲି । ଦରମା ଦୁଇଶହ ହେବ ବୋଲି ଯେତେବେଳେ
କହେ, ଆଖପାଖ ଲୋକମାନଙ୍କ ଆଖି ଖୋଲିଗଲା ।

ମୁଁ ଚୁପ୍ ହୋଇ ବସିଥାଏ । ପ୍ରଶ୍ନର ଉତ୍ତର ଦିଏ ।
ମନରେ ଥାଏ କେବଳ ଗୋଟିଏ ଚିନ୍ତା—ଏଠାକୁ ଆସିବା
ତାତ୍ପର୍ଯ୍ୟ କଣ ?

ବୁଢ଼ା ସେଠୁ ମନକୁ କଥା ଚଳାଇଲେ—ସେ ସେଠାକାର
ରାଜା ଓ ଅନ୍ୟମାନେ ତାଙ୍କର ପ୍ରଜା । ନିଃସନ୍ତାନ । ଦୁଇ
ତିନୋଟି ବିବାହ କରିଛନ୍ତି । ସେ ମଧ୍ୟ ନିଃସନ୍ତାନ । ବଦ୍ରୀନାଥ
ତୀର୍ଥ କରି ଯାଇଥିଲେ । ସେହେତୁ ପ୍ରଜାମାନଙ୍କୁ ମଧ୍ୟ ତାଙ୍କରେ

ନେଇଥିଲେ । ଏମାନେ ସଭାକୁ ଯେଉଁ ଘରକୁ ଚାଲିଯିବେ । ରାତିରେ ପାହାଡ଼ରେ ଯା ଆସ କରିବା ଉଚିତ ନୁହେ । ଆପଣ ରାତିରେ ବିଶ୍ରାମ କରି ସଭାକୁ ଚାଲିଯିବେ ।

ଆଉ ସମ୍ଭାଳି ହେଲା ନାହିଁ । ଦେଖିଲି, କଥାଟା କହିବାକୁ ପଡ଼ିବ ।

କହିଲି—ଆପଣ କିଛି ଭାବିବେ ନାହିଁ ।

ସେ 'ହୁଁ' ମାରିଲେ ।

ମୁଁ ଆପଣଙ୍କୁ ଧନ୍ୟବାଦ ଦେଇପାରୁ ନାହିଁ, ଯେହେତୁ ମୁଁ ଭାବୁଛି ଯେ ଭଗବାନ ମୋତେ ଏଠାକୁ ଆଣିଛନ୍ତି ।

ବୁଢ଼ା—ଭଗବାନ ହିଁ ଆପଣଙ୍କୁ ଏଠାକୁ ଆଣିଛନ୍ତି ।

କଥାଟା ଜଣାଇ ସାରିଲା ପରେ ମୁଁ ନିଶ୍ଚିନ୍ତ ହେଲି, ଆଉ ସେ ମଧ୍ୟ । ଧନ୍ୟବାଦ ନ ଦେବାର ଦୁଃଖାନୁଘାତ ଆଉ ରହିଲା ନାହିଁ । ସନ୍ଧ୍ୟାବେଳର ଘଟଣାବଳୀକୁ ମନେ ପକାଇ ମୁଁ ସେହି ମୀମାଂସାରେ ଉପନୀତ ହୋଇଥିଲି ।

ବୁଢ଼ା କହିଲେ—'ଦେଖ, ଆମେମାନେ ତୀର୍ଥ କରି ଫେରୁଛୁ । ଏଠିକାର ନିୟମ ଅନୁସାରେ ଆମକୁ ଆଜି, ଯିବାଥିବା ଗାଡ଼ି ବନ୍ଧୁ-ଘରେ ଖାଇବାକୁ ହେବ । ମୋର ଭଉଣୀ ଘରେ ନିମନ୍ତ୍ରଣ ଅଛି, ଆମେ ସେହିଠାରେ ଖାଇବୁ । କିନ୍ତୁ ତୁମେ ହେଲ ଆମର ଅତିଥି । ସେଥିପାଇଁ ତୁମକୁ ଏଠି ଖାଇବାକୁ ହେବ । ଆମେ ତାର ବନ୍ଦୋବସ୍ତ କରିଦେବୁ । ମୋର ଭାଇ ଆପଣଙ୍କ ସାଙ୍ଗରେ ଖାଇବ ।

ଭାରତର ସଂସ୍କୃତି ଅନୁସାରେ ଅତିଥି ସାଥିରେ ଗୃହକର୍ତ୍ତା ବା ତାର ପ୍ରତିନିଧି ଖାଇବାର କଥା । ବୁଝିଲି, ସେଇଟାକୁ ସେ ପାଳନ କରୁଛି । ଖାଇବା କଥାଟା ଠିକ୍ କଲା ପରେ ସେ ପଚାରିଲେ— 'ଆପଣ କଣ ଖାଇବେ ?'

କହିଲି—ଯେ କୌଣସି ଜିନିଷ ହେଲେ ହେଲା ।

ସେ—ଭାତ ନା ରୋଟି ?

ମୁଁ—ଦୁଇଟି ମୋ ପାଇଁ ସମାନ ।

ସେ—ମୋର ଭାଇ ଓ ପ୍ରଜାମାନଙ୍କ ସକାଶେ ରୁଟି ହେବ ।

ମୁଁ—ମୋ ପାଇଁ ମଧ୍ୟ ରୋଟି କର ବରଂ ।

ସେ—ରୁଟି ସାଙ୍ଗରେ କିଛିଏ ଘିଅ ଓ ସାଥିକୁ ଅଲ୍ପ ତରକାରୀ ହେବ । କେବଳ ତୁମ ପାଇଁ ଘିଅ ଲଗାଯିବ । ଏମାନଙ୍କ ପାଇଁ ନୁହେଁ ।

କହିଲି—ଠିକ୍ ଅଛି ।

ଧୂଆଁ ବେଶି ହେଲା । ଉପରକୁ ଯିବାକୁ କହିଲେ । ଉପରେ ପୂଜା ଘର । ସେଠାରେ ନାନା କାରୁକାର୍ଯ୍ୟ ଖଚିତ ଜିଲରେ ଉପ୍ଯାରେ ଗୋଟିଏ ସୁକୋମଳ ସୁନ୍ଦର ଗାଲିଚା ପକା ଯାଇଥିଲା ଓ ଗୋଡ଼ ତଳକୁ ଗୋଟିଏ ଥୁଲମା ଭଙ୍ଗାଭଙ୍ଗି କରି ସଜାଡ଼ି ରଖା ଯାଇଥିଲା ।

କହିଲେ—ଆମେମାନେ ବର୍ତ୍ତମାନ ଭଉଣୀ ଘରକୁ ଯାଉଛୁ । ରାତିରେ ଯଦି ବେଶି ଶୀତ ହୁଏ ତାହାହେଲେ ଥୁଲ୍ମାର କୋମଳ ଅଂଶଟା ଦେହକୁ ଲାଗି ରହିବ । ଶୀତ ଯଦି କମ୍ ହୁଏ ଖଦଡ଼ଆ

ପଟଟା ଭଲକୁ ରହୁବ । ଗୋଡ଼ଉକୁ ଉପରକୁ ଟାଣି ଘୋଡ଼େଇ ହେବ । ଖାଇବା ପ୍ରସ୍ତୁତ ହେଉଛୁ, ଡେ଼ରି ହେବ । ଟିକଏ ନିଦେଇ ଗଲି । ଗୋଡ଼ ହାତ ଅବଶ । ମନ ଦୁର୍ବଳ ମନେ ହେଲା । କିଏ ମୁଦୁ ପରିଚ୍ଛର କରୁଥାନ୍ତି କି ? ହଠାତ୍ କୁଲି ଜଣେ କିଏ ଉଠେଇ ଦେଲା । ଭଲକୁ ଗଲି ଖାଇବା ପାଇଁ । ଛ' ଖଣ୍ଡ ରୋଟି ଖାଇଛୁ, ଗୃହର ବାଳକମାନେ ଲୋଲୁପ ଦୃଷ୍ଟିରେ ଉରକାର୍ଯ୍ୟ କଡ଼େଇଟାକୁ ଚାହିଁ ରହୁବାରୁ, ମୁଁ ଆଉ ଖାଇଲି ନାହିଁ । ମୁଁ ଖାଇବା ପରେ ବଳକାଟା ସେମାନେ ଖାଇବା କଥା । ଯାହାହେଉ ଛ' ଖଣ୍ଡ ରୋଟି କିଛି କମ୍ ନୁହେ । ମୋର ନିର୍ଦ୍ଧାରିତ ଜାଗାକୁ ଆସି ଖୁବ୍ ଆରାମରେ ଶୋଇଲି । ସେହି ଜଲ୍‌ର ଶଯ୍ୟା ଏତେ ସୁକୋମଳ ଓ ସୁଖଦାୟକ ଯାହା କି ମୋ ଜୀବନରେ କେବେ ଅନୁଭବ କରି ନଥିଲି ।

ସକାଳ ହେଲା । ଅର୍ଦ୍ଧ ନିଦ୍ରିତ ଅବସ୍ଥାରେ ଜଣେ କିଏ ସେ ଘରେ କ୍ଷିପ୍ର ଗତିରେ ପଦଚାଳନା କରୁଥିବା ଅନୁଭବ କଲି । ଉଠି ଦେଖେତ ବୁଢ଼ା । ନଜରରେ ପଡ଼ଗଲା ତାଙ୍କର ପୂଜାର ସମସ୍ତ ହୋଇ ଯାଇଛୁ । ମୁଁ ନିଦ୍ରିତ ବୋଲି ବୁଢ଼ା ବ୍ୟସ୍ତ । ପୂଜାପୂଜ କଲେ ଅତଥି ସତ୍କାରରେ ବ୍ୟାଘାତ ଘଟିବ । ମୁଁ ଦୁଇ ଚାରିଟା ପ୍ରାତଃ ସ୍ମରଣୀୟ ଶ୍ଳୋକ ଆବୃତ୍ତି କରି ଶଯ୍ୟା ତ୍ୟାଗ କଲି । ମୋର ଡ଼ାହାଣ ପଟେ ଠାକୁର ଫୋଟ ସଜା ହୋଇଥାଏ । ସେଠାରେ ବୁଢ଼ା ଚଟକନା ଆସନ ଉପରେ ବସି 'ନମୋ ନାରାୟଣ', 'ନମୋ ନାରାୟଣ' ଜପିବାକୁ ଲଗିଲେ । ଉଠିଲା ବେଳକୁ ମୋର ଗୋଡ଼ ଆଡ଼େ, ସାମନାକୁ କାନ୍ଥରେ ଛପା ଯାଇଥିବା ଗୋଟେ ବଡ଼ ଷ୍ଟାଲିନ୍ ଫୋଟ ଦେଖିଲି । ଆଶ୍ଚର୍ଯ୍ୟ ଲଗିଲା, ଧର୍ମଘାରୁ ସେହି ଇଲକାର ରଜାର ଈଶ୍ୱର ବିଶ୍ୱାସ କରୁଛ ନିର୍ମମ ନିଷ୍ଠୁର ସନ୍ଧାସ-

ବାଧ୍ୟ କମ୍ୟୁନିଷ୍ଟ ପ୍ରତି ପ୍ରେମରେ ପତିତ ହେବା ଦେଖି । କଣ ସର୍ବହରା ପ୍ରତି ସହାନୁଭୂତି ସେହି ସରଳଧର୍ମ ବିଶ୍ବାସୀଙ୍କୁ ଟାଣି ନେଇଛି ? କିନ୍ତୁ ସେ କଣ ଜାଣେନି ନା ଶୁଣିନି ଯେ ସର୍ବହରା ପ୍ରତି ସହାନୁଭୂତିର ଅଳରେ ଧ୍ୱଂସାଭିମୁଖୀ କୂଟ, କପଟ, ଶଠତା ଓ ଦଗାବାଜ ସହିତ ହିଂସାତ୍ମକ କାଣ୍ଡର ତାଣ୍ଡବ ଲୀଳା ଚାଲିଛି । ହୁଏତ ବୁଢ଼ା ପୂର୍ଣ୍ଣ ମାତ୍ରାରେ ସେମାନଙ୍କର କାର୍ଯ୍ୟକଳାପର ସଂସର୍ଗରେ ଆସି ନାହିଁ । ହୋଇ ପାରେ ଯେ କଅଁଳ କଥାରେ ସର୍ବହରା ଓ ଶୋଷକ ସମ୍ପର୍କ ଧାରଣାକୁ ହିଁ ମାନି ନେଇଛି ବା ରଜା ଥିବା ହେତୁ ପ୍ରଜା ମେଳରୁ ରକ୍ଷା ପାଇବାକୁ କମ୍ୟୁନିଷ୍ଟଙ୍କୁ ଡେଲେଇ ରଖିଛି । କଣ ଏ ବି ହୋଇପାରେ ଯେ ଶୋଷିତ ପୁଞ୍ଜିପତି ଓ ଦୁର୍ଦ୍ଦାନ୍ତ ଧ୍ୱଂସାଭିମୁଖୀ ସନ୍ତ୍ରାସବାଦୀ ଏକ ଶ୍ରେଣୀର ?

ହଠାତ୍ ମନ ଚଞ୍ଚଳ ହୋଇ ଉଠିଲା । କୈଳାସ ହିଁ ତାର ଉତ୍ତର ଦେବ । ନିଶ୍ବାସ ମାରିବାକୁ ତର ନାହିଁ । ବିଶ୍ରାମ ନେବା କଥାତ ଛାଡ । ଆଗେଇ ଯିବାକୁ ହେବ ।

ବୁଢ଼ାତ ପୂଜାରେ ବସିଛି, ତଳକୁ ଓହ୍ଲାଇ ଆସିଲି । ଦେଖିଲି ପ୍ରୌଢ଼ାଟି ଘର ଝାଡୁଛି । କହିଲି—'ମୁଁ ଯିବି' ।

କହିଲା—ତୁମ ପାଇଁ ପାଣି ଗରମ କରୁଥିଲି । ଗାଧୋଇ ଯାଇଥିଲେ ଭଲ ହୋଇଥାନ୍ତା ।

ମୁଁ କହିଲି—ଶୀଘ୍ରତ ମୋଟେ ତିନି ଚାରି ମାଇଲ, ପହଞ୍ଚି ଗାଧୋଇବି । ସେଠାରେ ପହଞ୍ଚି ଆଗେଇବା ପାଇଁ ଯୋଗାଡ଼ କରିବାକୁ ହେବ ।

କହିଲେ—ହଜ; ଆମ ତରଫରୁ କିଛି ଦୋଷ ହୋଇଥିଲେ କ୍ଷମା କରିବେ ।

ମୁଁ କହିଲି—ବାଟୋଇକ ଖୁଆଇ, ପିଆଇ ଆଶ୍ରୟ ଦେଲି ସେଥିରେ ଦୋଷ କଣ ଅଛି ?

ସେଠୁ ସେ କହିଲେ—'ଦେଖୋ, ଏକ୍ ବାତ୍ କହୁଁ' ।

ମୁଁ ପାଖେଇ ଗଲି ।

ସେ—'ଅଗେଚା ଗସ୍ତା ଖତସ୍ ହୈ ସାଥ୍ ହିଁ ଗୃଲ୍ନା, ଅକେଲେ ମତ୍ ଜାନା' ।

ଅସ୍ପଷ୍ଟ ଅଶୁଦ୍ଧ ଭାଷାର ଅର୍ଥ ଅନେକ ।

ଚମକି ଉଠିଲି । କି ମାତୃ ହୃଦୟ ! ଏ ଯେ ଦୈବୀବାଣୀ । ଗଳା ମଧ୍ୟ ହେବାପରି ଗୁରୁ ଗମ୍ଭୀର ଯେପରି ଭିତରୁ କିଏ କହୁଛି । ମୁଣ୍ଡ ନାଇଁଲି । ମାନେ, ପ୍ରତିଶ୍ରୁତି ଦେଲି । ଏ ପଟେ ସେ ପଟେ ଧାଁ ଦଉଡ଼ କରି ଗୋଟିଏ ବୃଦ୍ଧାକୁ ଦେଖିଲି, ପଚାରିଲି ଗୃହକର୍ତ୍ତ୍ରୀର ନାମ କଣ ? ସେ କହିଲା—'ଜଣ୍ଟାଲ ସିଂ ଇସ୍ତ୍ରୀ କ ?

ସୁସା ଗ୍ଲାଉଲି ୧୬ ଜୁନ୍ ଶନିବାର—

ବାଟରେ ପଡ଼ିଲା ଶୀତ ପ୍ରଧାନ ଦେଶର ଜଙ୍ଗଲ । ମନରେ ଆଣିଦେଲା ଅପାର ଶାନ୍ତି ଓ ଆହ୍ଲାଦ । ଦେଖିବାକୁ ପାଇଲି ଅନେକ ଗୁଡ଼ିଏ ସାପଫେଣିଆ ଗଛ, ଯାହାକୁ କେଦାରବଦ୍ରି ରାସ୍ତାରେ ଦେଖିଥିଲି । ଦେଖିବାକୁ ଠିକ୍ ସାପଫେଣ ଭଳି ଓ ସାପର ଜିଭ ପରି କେନା ମେଲି ହୋଇ ରହିଛି । ପ୍ରଥମେ ଏହାକୁ ଦେଖି ଡ଼ରି ଯାଇଥିଲି । ସତରେ ଧରି ନେଇଥିଲି ସେଠା ଗୋଟିଏ ସାପ, ଫେଣାଟେକି ଜଗିଛି । ପରେ ଲକ୍ଷ କରି ଦେଖେତ ସାପ ନୁହେଁ, ଗୋଟିଏ ଉଦ୍ଭିଦ । ବୁଝିଲୁ ବୁଝିଲୁ ଜଣାଗଲା ଯେ ଏଠା ବାଟି ଖାଇଲେ ହଜାକୁ ଓ ଔଷଧ ରୂପରେ ବ୍ୟବହାର କରାଯାଏ ।

ଠାଏଁ ଠାଏଁ ଥିବା ଚଡ୍ ଗଛର ସୁଗନ୍ଧ, ବାହାରର ଶୀତ-ଳତା; ଚାରିଆଡର ଜୀବନଭରା ସବୁଜ ରଂଗ, ମନରେ ଉନ୍ମାଦନା ଆଣି ଦେଉଥିଲା । ଜୀବନର ଏକମାତ୍ର ଲକ୍ଷ୍ୟ ଓ ଆକାଂକ୍ଷାପୂର୍ଣ୍ଣ କରିବା ପାଇଁ କୈଳାସ ଦର୍ଶନ ସକାଶେ ଆଗେଇ ଚାଲିଛି । ମନ ଖୁସିରେ ଛାଡ଼ିପିଆ ଚାଲି ଚାଲିଛି । ଜଙ୍ଗଲ ଶେଷ ହେଲା । ପଡ଼ିଲା କ୍ଷେତ । ରାସ୍ତାରୁ ଓହ୍ଲାଇ ଧରିଲି ଶୀର୍ଗା ପାଇଁ ବାଟ । ସକ୍‌ସେନା ବାବୁ ମୋ ପାଇଁ ଜଗିଥିବେ । ତାଙ୍କ କଥାରେ ସେ ଜଣେ 'ଇଣ୍ଡୋକ୍ସ୍ୟୀ'ର ପ୍ରଭାବଶାଳୀ କର୍ମଚାରୀ । ସବୁ ପ୍ରକାର ବନ୍ଦୋବସ୍ତ କରି ଦେବେ । କ୍ଷେତରେ ଗହମ ପାଚିଥିଲା । କିନ୍ତୁ, ଧାରଚୁଲାରେ; ଯାହାର ଉଚ୍ଚତା ପ୍ରାୟ ଛଅ ହଜାର ଫୁଟ ସେଠାରେ ଧାନ ଚାଷ ହୁଏ । ବାଟ ସରିଲା । ଆଠଟା ପନ୍ଦରରେ ପହଞ୍ଚିଲି 'ଶୀର୍ଗା' ନାମକ ଗ୍ରାମରେ ।

ଶୀର୍ଗା ୭୮୦୦ ଫୁଟ-ଚାଲିଛି, ୨୯+୩=୩୨ ମାଇଲ—

ପାଣିକଳ ପାଖରେ ବିସ୍କୁଟ ଖାଇ ପାଣି ପିଇଲି ଓ ଖୋଜା ବୁଲିଲି ମୋର ସାଥି ସକ୍‌ସେନା ବାବୁଙ୍କୁ । ତାଙ୍କୁ ପାଇବି କଲି ସେଠାର ଶିଳ୍ପାନୁଷ୍ଠାନରେ । ଯାତ୍ରା ସମୟରେ ଯାହା କିଛିଏ ବନ୍ଧୁତାର ଆବେଗ ତାଙ୍କଠାରେ ଦେଖା ଦେଉଥିଲା, ଦେଖିଲି ତାଙ୍କର ମୁହଁରୁ ସେ ସବୁ ଚାଲି ଯାଇଛି । ମୋତେ ଦେଖି ସେ ସ୍ପଷ୍ଟ ମନରେ ବନ୍ଧୁତ୍ୱର ଛଳନା କରିଥିଲେ । ଶୁଣିଲି, ସକାଳେ ସାଢ଼େ ଚାରିଟା ଠାରୁ ଗୁଜରାଟି ଦଳଟା ଜିପ୍‌ରେ ଅଭିମୁଖେ ଯାତ୍ରା କରିଛନ୍ତି । କୁଲିର ଯୋଗାଡ଼ରେ ଲାଗିଲି । ପ୍ରଭାବଶାଳୀ ସକ୍‌ସେନା ବାବୁ କହିଲେ ତଳ ସେତ ନୂଆଁ ଆସିଛନ୍ତି ସେ ବା ଆଜି କଣ କରି ପାରିବେ ? ଦୁଇ ଚାରି ଜଣଙ୍କୁ କହିଛନ୍ତି । ସେମାନେ ଚେଷ୍ଟା

କରୁଛନ୍ତି । ସେମାନଙ୍କୁ ଯାଇ ବୁଝନ୍ତୁ । ସେ ବା ମୋତେ ଆଜ କଣ କରି ପାରିଥାନ୍ତେ, ମୋର କପାଳ ମନ୍ଦ ମୋର ସ୍ବତନ୍ତ୍ରତ ଯାହା କରିବାର ଥିଲା । ସେମାନଙ୍କ ପାଖକୁ ଧାଇଁଲି । କଣକଠାରୁ ଶୁଣିଲି ଯେ ପୂର୍ବ ମହଣକର ପଇସା ଅର୍ଥାତ ପଣ୍ଡାବକ ପ୍ରତି ପାଞ୍ଚଟଙ୍କା ଲେଖା ଗର୍ବସ୍ବାଙ୍କୁ ପୁଣି ପନ୍ଦର ଟଙ୍କା ନ ଦେଲେ କେହି ଯିବେ ନାହିଁ । ଆଉ ଜଣକ କହିଲା ଯେ କଥା କଟି ସମସ୍ତ ହୋଇଥିବା ହେତୁ କେହି ଯିବାକୁ ମଙ୍ଗୁ ନାହାନ୍ତି ।

ମୁହଁ ଶୁଖିଗଲା, ମୁଣ୍ଡ ଘୂରିଗଲା । କଣ ଅଧା ବାଟରେ ଅଟକି ଯିବ ? ଧାଇଁଲି ଏପଟେ ସେପଟେ । ଯୋଗ ସୂତ୍ର ସ୍ଥାପନ କଲି । ଯାହାକୁ ପଚାରିଲି ସେ କହିଲେ ଯେ କୁଲି ମିଳିବେ ନାହିଁ । ହତାଶ ଲାଗିଲା—ଦୁଶ୍ଚିନ୍ତା ବଢ଼ିଲା ।

ଗାଁ ଦାଣ୍ଡରେ ପାଉଆ ପଥର ପୋଖା ଯାଇଥାଏ ଓ ତା ଉପରେ ଶୁଖୁଥାଏ ଗହମ । ତଳେ ସୋରିଷ ବଣ୍ଟିଲା ପରି ଗୁଡ଼ାଏ ମାଛି ଭର୍ତ୍ତି ହୋଇଥାନ୍ତି । ଏତେ ମାଛି ମୋ ଜୀବନରେ କେଉଁଠି ଦେଖି ନ ଥିଲି । ଆଗ ବା ପଛ ଗାଁରେ ମଧ୍ୟ ନୁହେଁ । ଓଟାର ଆସୁଥାଏ । ପ୍ରତ୍ୟେକ ଘର ଆଗରେ ଗୋଟିଏ ଗୋଟିଏ ଶୁଖିଲା ଗଛ ପୋତା ହୋଇଥାଏ ଓ ଡ଼ାଳଗୁଡ଼ିକରୁ ଝୁଲୁଥାଏ ଅନେକ ଗୁଡ଼ାଏ ସରୁ ଲମ୍ବା କନାର ଫିତା । ମନେ ହେଉଥାଏ ଯେ କୌଣସି ଗୋଟିଏ ପ୍ରେତପୁରୀରେ ପହଞ୍ଚିଛି ।

ଦନ୍ଦା ଶନିବାର ହୋଇଥିବା ହେତୁ, ବା ସକାଳୁ ମୁହଁ ନ ଧୋଇ ବାହାରି ଥିବା ହେତୁ, ବା ସେ ଅଣ୍ଟୁକୁଡ଼ା ଅଣ୍ଟୁକୁଡ଼ିର ମୁହଁ ଦେଖିଥିବା ହେତୁ, ବା ସେ ନାସ୍ତିକ, ନିଷ୍ଠୁର ବୌଦ୍ଧ ସ୍ତୂପର ଛବି ଦେଖିଥିବା ହେତୁ ଏପରି ହେଲା କି ବୋଲି ମନେ

ମନେ ଭାବୁଥାଏ । ବୁଦ୍ଧି ବଣାହେଲେ ସୁଗୁଣଟିକ ଲଭଯାଏ, ଖାଲି ଦଶେ ପେଟକ ଦୁର୍ଗୁଣ । ସବୁବେଳେ କେବେ କାରଣ ହୋଇ ପାରେ ନା ।

ଅମ୍ବାସନା ଓ ଆଶ୍ରା ଗୃହକୁ ଫେରଗଲ ସକ୍ସେନା ବାବୁଙ୍କ ପାଖକୁ । ଅମ୍ବାସନା ପାଇଲ—'କୁଲି ତ ଆସି ନାହାନ୍ତି, ଚେଷ୍ଟା ତ ଚାଲିଛି, ଫଳଟା ସମସ୍ତ ସାପେକ୍ଷ, ଧୈର୍ଯ୍ୟ ଧରନ୍ତୁ' । ଯାହା-ହେଉ, ତାଙ୍କର ମହଲା 'ଏଟେଣ୍ଡେଣ୍ଟ'କୁ ଡାକି ରନ୍ଧା ଖାଉଥିରେ କଣ୍ଟ ଛନ୍ତି, ମୂଳା ଓ ଚହଲା ଆଣି ଦେଲେ । ମହିଳା ଜଣେ ସେଠାରେ ସ୍ତ୍ରୀ ଲୋକଙ୍କୁ ସିଲାଇ ଶିଖାଇବା ପାଇଁ ଅଛନ୍ତି । ସେ ବଦ୍ରିନାଥ ପଟର ଲୋକ, ଏଠାକୁ ବଦଳି ହୋଇ ଆସିଛନ୍ତି । ସେଠି କିଛି ସମୟ ବସି ରହିବାରୁ ଧର୍ମଶାଳା ଯାଇ ରହିବାକୁ କହିଲେ । ଧର୍ମଶାଳାଟା ପାଣିକଳ ପାଖରେ ।

ଦୁଇଟା ବାଜିଲାକୁ ଅମର କୁଲିମାନେ ଆସିଲେ । ପାଣି ପାଖରେ ଛାଡ଼ି ଆସିଥିବା ହୋଲ୍‌ଡ ଓ ଟେଡ଼ ସାଙ୍ଗରେ ଧରି ଆସି ଥିଲେ । ଗୁଇଡା ବାବୁ ମୋ ପକେଟରେ ଥିବା କୁଲିଙ୍କୁ ଠାବ କରି ତାଙ୍କ ହାତରେ ଧରାଇ ଦେଇଥିଲେ । ସେହି ଦୁର୍ଦ୍ଦିନରେ କେବଳ ଏଇ ଗୋଟିଏ ଘଟଣା ଗୋଟିଏ ଉଜ୍ଜ୍ୱଳ ଦୀପଶିଖା ଭଳି ମନରେ କିଛିଏ ଆଲୋକ ଦେଇଥିଲା—ସ୍ନେହର ବା ବୁଦ୍ଧିମତ୍ତାର ପରିଚୟ ପାଇ । ଏହି କୁଲିମାନେ ଉପରକୁ ଯିବାକୁ ଅମଙ୍ଗ ହେଲେ ଓ ଚାହିଁଉ ଗଲେ । ଏମାନଙ୍କ ପାଖରେ କିଛିଏ ଆଶା ରଖିଥିଲି ।

ସେ ଗାଁର ଆର ମୁଣ୍ଡରେ ଗୋଟିଏ ଭୁଟିଆ ଦରଜି ଥିଲେ । ତାଙ୍କର କିଛିଏ ସହାନୁଭୂତି ଥିବା ଦେଖାଗଲା । ତାଙ୍କଠାରୁ କିଛି ଅଠାଳିଆ ପିଠା କଳାପ ଓ ଖିର ଅଧସେରେ ବାରଅଣା ଦେଇ

ଖାଇଲି । ଅନେକ ବୁଝାସୁଝା କରିବା ପରେ ଜଣାଗଲା ଯେ ଅଠାଳିଆ ଜାନଷଣ୍ଟା ମଧ୍ୟ । ସେ ମୋ ପାଇଁ କୁଲି କରିଦେବେ ବୋଲି କହିଲେ । ତାଙ୍କଠାରୁ ବୁଝି ମୂଳ ଗାଁଠାରୁ କିଛି ଦୂରରେ ଥିବା ଗାଁରୁ ଦଶଅଣା ଦେଇ ବାଡ଼ିଟାରେ ଗୋଡ ବସାଇଲି ।

ସନ୍ଧ୍ୟାବେଳେ ପୋଲିସ ବାବୁଙ୍କ ପାଞ୍ଚଜଣ କୁଲି ଆସି ଧର୍ମଶାଳାରେ ରହିଲେ । ବାବୁ ଜଣକ ନାରାୟଣାଶ୍ରମ ଦେଇ ଆସିବେ ବୋଲି ଶୁଣିଲି । ସେମାନଙ୍କୁ ବହୁତ ଅନୁରୋଧ କଲି । ସେମାନେ ସହାନୁଭୂତି ସହକାରେ ରାଜି ହେଲେ । କଥା ହେଲା ଯେ ମୋର ଜାନଷଣ୍ଟ ସବୁ ପାଞ୍ଚଭାଗ କରି ଜଣ ଜଣକୁ ଦୁଇ ତିନି ସେର ଲେଖା ଧରାଇ ଦେବ । କୁଲି ନ ମିଳିଲା ପର୍ଯ୍ୟନ୍ତ ଏ ବନ୍ଦୋବସ୍ତ ରହିଲା ।

ଦୁଇଜଣ ପାଇକ ଉପରୁ ଆସିଲେ । ସହାକୁ ତଳକୁ ଯିବେ । ଛୁଟିରେ ଘରକୁ ଯାଉଛନ୍ତି ।

ସନ୍ଧ୍ୟା ହେଲା । ସେ ମହିଳା, ସିଲଇ ସହକାରୀ ପାଖକୁ ଗଲି । ଭାବିଥିଲି ତାର ସାହାଯ୍ୟ ପଡ଼ିଶାରେ ଟଙ୍କେ ଡଙ୍କେ କଲେ ପଇସା ଲୋଭରେ କିଏ ହେଲେ ଜଣେ ବାହାରି ପାରେ । କିନ୍ତୁ ସେ ସାହାଯ୍ୟ କରିବ କଣ ଧରିକୁଆ ଦେଲା ନାହିଁ ।

ଦୀପ ଲଗାବେଳ ହେଲା । ଦରଜିର ପୁଅ ଆସି କହିଲା ଯେ କୁଲି କିଏ ହେଲେ ଯିବାକୁ ମଙ୍ଗୁ ନାହାନ୍ତି ।

ରାତି ହେଲା । ଆସିଲା ପେଟର ଚିନ୍ତା । ଦୋକାନ ଅଛି କିନ୍ତୁ ହୋଟେଲ ନାହିଁ । ପାଏ ଅଟା ଓ କିଛି ଅଳୁ କିଣି ଧାଇଁଗଲି ସେ

ମହିଳା ପାଖକୁ ଓ ଅନୁରୋଧ କଲ ମୋ ପାଇଁ କିଛି ଖାଦ୍ୟ ଦେବାକୁ । ମୋତେ ଦେଖି ହାମଦେଲେ ସେହି ମହିଳା ।

କହିଲେ—ଲୁଦ୍ଧାର ଧମାକ୍ କ୍ୟା ହୋ ଗୟା ହୈ । ଯବ୍ ବକ୍ତ୍ ପଡ଼ା ଥା ମୈ ଦିନ୍‌ଭୋ ପାଞ୍ଚ୍ ରୁପିୟା ତର୍‌କେ ଦିଆ ଥା ।

ତାଙ୍କ ପାଖରେ ଆଉ ଜଣେ ପଡ଼ୋଶୀ ମହିଳା ଥିଲେ । ସେ ଯାହାହେଉ ମୋତେ କହିଲେ ଯେ ମୋର ଆଉ ତାଙ୍କ ପାଖକୁ ଯିବାକୁ ହେବ ନାହିଁ । ମୁଁ ଧର୍ମଶାଳାରେ ଥିବ ଓ ସେ ସେଠାକୁ ଖାଇବାଟା ପଠାଇ ଦେବେ । ତାର ଏତାଦୃଶ ବ୍ୟବହାରରେ ମୁଁ ଚମତ୍କୃତ ହୋଇଥିଲି । ବୋଧହୁଏ କେବେ ତାକୁ ସନ୍ଦେହ କରିବେ ବୋଲି ଏପରି କହିଥିଲେ ଓ କରିଥିଲେ । ଧର୍ମଶାଳାରେ ପଡ଼ିଛି, ଅନେକ ସମୟ ହେଲେ ପରେ ଗୋଟିଏ ଛୋଟ ବାଳକ ଆସି ଆବାଜ୍ ଦେଲେ—'କୈଳାସ ଯାତ୍ରୀ କଏ ଅଛନ୍ତି' ? 'ହିଁ' କହି ଝର୍ଚି ଟିପି ଡ଼ାକଲି । ଗାଡ଼ାଏ ହେବ ରୁଟି ଓ ଅଳ୍ପ ତରକାରୀ । ବେଶି ହୋଇଯିବ ବୋଲି ତା ହାତକୁ କିଛି ରୁଟି ବଢ଼ାଇ ଦେଲି । ସେ କହିଲେ—'ରୁଟିତ ଦେଲ, କିଛି ତରକାରୀ ଦିଅ ଖାଇବାକୁ ହୋଇଯିବ' । ଦେଲି, ଖାଇ ଚାଲିଗଲେ ।

ସେ ଦିନ ସେଠାରେ ଏଗାର ତାରିଖର ଖବର କାଗଜରେ ଦେଖିଲି ଯେ, ଓଡ଼ିଶାରେ କଂଗ୍ରେସ ବହୁଆସନ ସ୍ଥାନ ଦଖଲ କରିଛି । କିଛିଏ ଆଶ୍ଚର୍ଯ୍ୟ ହେଲି ଓ ପରେ ପରେ ସେ ଚିନ୍ତାକୁ ଦୂରେଇ ଦେଲି ।

ସକାଳ ହେଲେ । ପୋଲିସ ବାବୁଙ୍କର ପାଞ୍ଚଜଣ କୁଲିଙ୍କର ମନ ବଦଳି ଗଲେ । ସେମାନେ ପୁରପୁର ଅମଙ୍ଗ । ଧାଇଁଲି ସେ

ଲୁଚିଥିଲେ ତରଣ ପାଖକୁ । ନିଜକୁ ଖୁବ ନିଃସହାୟ ମନେ କରି ଅଶ୍ରୁ ଖୋଜିଲି । ଦରଜା ଜଣକ ଦୁଇଧାଡ଼ି ଦାନ୍ତ ଦେଖାଇ ହସିଲେ ।

କହିଲେ—"ଅନ୍ୟ ମାନେ କିଛି ଭାମର ନୁହନ୍ତି । ମୁଁ ତୁମକୁ ସାହାଯ୍ୟ କରିବ । କିନ୍ତୁ ଗୋଟିଏ କଥା ଦେବାକୁ ହେବ । ତୁମର ଏ ଯେଉଁ କୋଟଟି ଅଛି, ବାହୁଡ଼ିଲା ସମୟକୁ ମୋତେ ଦେଇ ଦେବ । ସେହି କୋଟଟିକୁ ନମୁନା କରି ଏହି ପାହାଡ଼ିଆ ଲୋକଙ୍କର କୋଟ୍ସିଲେଇ କରିବ ।"

କେଦାରନାଥର ପଣ୍ଡା ସେହି କୋଟ୍ଟାକୁ ମାଗିଥିଲା । କିନ୍ତୁ କୈଳାସ ଯାତ୍ରା କରିବ ବୋଲି ତାକୁ ସେଠା ଦେଇ ନ ଥିଲି । ଏଥର ମୋର ଆଉ ଭୃଗୁ ନ ଥିଲା । ପ୍ରଥମ ସର୍ତ୍ତ ମାନି ନେଲି । ତାକୁ କଥାଟା ଯେପରି ସତ ଲାଗେ; ସର୍ତ୍ତ ରଖିଲି ଯେ—ତା ବଦଳରେ ଗୋଟିଏ ଭଲର ଆସନ ସେ ଦେବ । ସେଥିରେ ସେ ରାଜି ହେଲା । ଦ୍ୱିତୀୟ ସର୍ତ୍ତ ହେଲା ଏହି ଅଧା ମହଣ ଜିନିଷ ନେବା ପାଇଁ କେହି କୁଲି ଯିବାକୁ ରାଜି ହେବେ ନାହିଁ । ତେଣୁ ଏକ ମହଣର ପୁରା ରେଟ୍ ପାଞ୍ଚ ଟଙ୍କା ହିସାବରେ ଦେବାକୁ ପଡ଼ିବ । ସେଥିରେ ରାଜି ହେଲି ।

ତା ପରେ ସେ ବଖାଣିଲା କମ୍ୟୁନିଷ୍ଟ ପାର୍ଟିର ତାରିଫ । ମୁଁ ସଙ୍ଗେ ସଙ୍ଗେ ବନିଗଲି ପୁରା କମ୍ୟୁନିଷ୍ଟ ।

ପଚାରିଲା—'ତିବ୍ବତ ଯିବାରେ କୈଳାସ ଦର୍ଶନ ନା ଅନ୍ୟ କିଛି ଉଦ୍ଦେଶ୍ୟ ଅଛି ?' ମନେ ରଖ କେତେ ଥର ଯେ ପ୍ରଣିଧାନର

ସ୍ୱାମୀ କୈଳାସ-ମାନସରୋବରକୁ ଯାଇ ନାହାନ୍ତି, ତାଙ୍କର ଇସ୍ ପେଡ଼ୋଲ୍ ଗୋଟିଏ ନୌକା ମାନସରୋବରରେ ଥିଲା । ଚୀନ [illegible] ତା ଖାତିରରେ ତାଙ୍କୁ ଅନୁମତି ଦେଇଥିଲେ । କିନ୍ତୁ [illegible] ଗୋଟିଏ ଚିଠି ଧରା ପଡ଼ିଗଲା । ଚୀନା ସରକାର ତାଙ୍କ ମୁଣ୍ଡ ଉପରେ ପାଞ୍ଚ ହଜାର ଟଙ୍କା ପଣ କରିଛନ୍ତି । ସ୍ୱାମୀଜୀଙ୍କଠୁ ଶବ୍ଦ ଯିବା ଏକବାରେ ବନ୍ଦ, ତା ଛଡା ଧାରଚୁଲା ନେଇଁ ଏ ପଟକୁ ମଧ୍ୟ ସେ ଆସିପାରୁ ନାହାନ୍ତି । ସେଇ ଅଡୁଆ ସେଇ ଅଡୁଆ ହିଁ ରହନ୍ତି । (ମୋ ପ୍ରତି ଦୃଷ୍ଟି ସ୍ଥିର କରି) ତୁମେ ସେପରି କିଛି କରୁ ନାହଁ ତ ?"

ଧନକର ଦୃଷ୍ଟି ନ୍ତ୍ରାରେ ଭାଙ୍ଗି ପଡ଼ିଥିଲା । ଛଳନା କରି ମଧ୍ୟ ଅନେକଟା ନମ୍ର ବନିଗଲି । ବିଶେଷ ଛଳନା କରିବାକୁ ପଡ଼ି ନ ଥିଲା । ଏଡ଼େବଡ଼ ଆଶା, ଏତେ କଷ୍ଟ ସହି ଏତେଦୂର ଆସିଲା ପରେ ଖାଲି କୁଳ ନ ଥାଇ ଭାଙ୍ଗିଯିବା ଉପରେ । ମୁଁ ଜଣେ ସନ୍ନ୍ୟାସୀ ଓ ଯାଉଥିଲି ସମସ୍ତଙ୍କ ଠାରୁ ବଡ଼ ସନ୍ନ୍ୟାସୀ ପାଖକୁ ।

କହିଲି—ଦେଖନ୍ତୁ, ମୋର ପିଲାଦିନରୁ କୈଳାସ ଦର୍ଶନ କରିବାର ଇଚ୍ଛା ଅଛି । ସେଥିଲାଗି ମୋର ମନରେ ଅନ୍ୟ କିଛି କାମନା ସ୍ଥାନ ପାଇ ନାହିଁ । ସେଥିପାଇଁ ଜୀବନରେ ଅନେକ ଦୁଃଖ କଷ୍ଟ ପାଇଛି ଓ ସହୁଛି । ପଇସା ପଇର ଭାର ଅଭାବ । (ଉଦ୍ଦେଶ୍ୟ ଥିଲା ଯେ ନିଜକୁ ସନ୍ନ୍ୟାସୀ ବୋଲି ପରିଚୟ ଦେବା କିନ୍ତୁ ପରୋକ୍ଷରେ) ପାହାଡର ଆକର୍ଷଣ ମୋତେ ଟାଣି ଆଣିଛି । ପାହାଡ଼ିଆ ଲୋକଙ୍କର ଉପାସନା ଓ ସରଳତା ଯୋଗୁଁ ମୋତେ ସେମାନେ ଖୁବ୍ ଭଲ ଲାଗନ୍ତି ।

ବୁଢ଼ା ଫୁଲିଗଲା । ପୁଅକୁ ପଠାଇଲା ଅମୁକ ଲୋକକୁ ଡ଼ାକିବା ପାଇଁ । ଧରି ଆଣିଲା ତାର ନିକଟ ସମ୍ପର୍କ ଜଣେ ବନ୍ଧୁକୁ । ବନ୍ଧୁଟିର ସ୍ତ୍ରୀ ବେଳୁଁ ଅଡ଼େ ଘରୁ ଗୃହ ଯାଇଛି ଓ ସେଥିପାଇଁ ତାର ଦୁଃଖ । ଏକଦମ ମଣିଷ । ସେ କହିଲା ମୋ ତାର କ୍ଷେତବାଡ଼ରେ କାମ ଅଛି । ସେ ଯାଇ ପାରିବ ନାହିଁ ।

ବୁଢ଼ା କହିଲା—ତୋର ବା କ କାମ ଅଛି ?

ସେ କହିଲା—ଗହମ କଟା ହେବ ।

ସ୍ୱଭାବ ହେଲା ତାର ବେଳେ ଗହମ ହେବ । କଟାକଟି ହେଲେ ସବୁ ଦଶବାର ଟଙ୍କାର ହେବ । ଗୋଟିଏ ଦିନରେ ତାର ବିଶେଷ କିଛି ଯାଏ ଆସେ ନାହିଁ । ଗର୍ବିସ୍ଥାଙ୍କ ଗଲେ ପନ୍ଦର ଟଙ୍କା ମିଳି ପାରିବ । କିନ୍ତୁ ସେ ତିନିଗୁଣ ଦିନ ଅନୁପସ୍ଥିତ ରହିବାକୁ ଅମଙ୍ଗ । ଶେଷରେ ଦିନକ ପାଇଁ ମଙ୍ଗିଲା । କଥା ଛିଣ୍ଡିଲା ଯେ ଜାପ୍ତି ଗ୍ରାମ ପର୍ଯ୍ୟନ୍ତ ଗୋଟିଏ ପଡ଼ାଓ, ଗୋଟିଏ ମହଣର ଦାମ ପାଞ୍ଚ ଟଙ୍କା ନେଇଯିବ । କୁଲିଟି ବୋଝ ଉଠାଇଲା । ମୋର ମନରୁ ଗୋଟିଏ ବୋଝ ଉଠିଗଲା ।

ଶୀର୍ଷା ଘୁଢ଼ାଲ ୧୮ ଜୁନ ରବିବାର—

ବାହାର ପଡ଼ିଲୁ କାନ୍ତି ଅଭିମୁଖେ । ରାସ୍ତାଟା ଖୁବ୍ ଭଲ ବନ୍ଧିବାକୁ ହେବ । ଧୀରେ ଧୀରେ ଉଠି ଥାଏ । ବାଟରେ ଦେଖିଲି ଡ଼ିମିସ ଓ ବୁଦୁବୁଦିଆ ଜଙ୍ଗଲର ମାଳଭୂମି । ଠାଏଁ ଠାଏଁ ରାସ୍ତା ମଝିରେ ଗୋଟେ ଦୁଇଟା ଘର ଓ ବଡଟେ ଖଣ୍ଡେ ବୃକ୍ଷ । ଏଠି ସେଠି ଗୋଟେ ଦିଟା ଗାଈ ଗୋରୁ ଚରିବୁଲା କରୁଥାନ୍ତି । ଗାଁଠାରୁ କିଛି ଦୂର ଆଗେଇଛୁ ବରଣା ଉପରୁ ସ୍ପିରିଟ ବୋତଲଟା ପଡ଼ି ଭାଙ୍ଗି ଚୂରମାର ହୋଇଗଲା ।

ସ୍ୱଭାବ—ଭଗବାନଙ୍କ ଯାହା ବସ୍ୱଦ । ବାଟରେ ମନ ବାଛୁସ୍ୱଚେ
ପଡ଼ ସ୍ୱରେ ଗଳ୍ପ କରୁଥିଲ । ପରେ ପରେ ଦେଖିଲ ଗୋଟିଏ ଝରଣା
ଓ ତାକୁ ଲଗି ଘନଜଙ୍ଗଲ ଥାଇ ଗୋଟେ ଛୋଟ ପାହାଡ । 
ଝରଣା ପାଖରେ ବସି ଜଳଖିଆ ଖାଇ ପାଣି ପିଇଲୁ । ମୂଳିଆ
ଜଣାକ ଲମ୍ବା ଓ ପଥର ଦେଇ କାଆଁ କରି ଚଲମ ଟାଣିଲ । ମୁଁ
ମଧ୍ୟ ଗୋଟିଏ ଦମ୍ ଟାଣି ନେଲି । କିଛିଟା ଅଗେଇଛୁ, ବାଟରେ
ଦେଖିଲି ଶିକ୍ଷ ବିଭାଗର ପରୀକ୍ଷକଙ୍କୁ । ସେ ସକ୍‌ସେନା ବାବୁ
କେବେ ପଢ଼ାଉଥିଲେ ବୋଲି ପଚାରୁଥିଲେ । ଆଶ୍ଚର୍ଯ୍ୟ ଲଗିଲ, କିନ୍ତୁ
ପଚାରି ନାହିଁ, ସେ କିପରି ଜାଣିଲେ ଯେ ସକ୍‌ସେନା ବାବୁ ମୋ
ସାଥିରେ ଥିଲେ । ସେ ମୋତେ ସମତୁଲ ଭାବରେ ବ୍ୟବହାର
କରିଥିଲେ । କାହା ଆଖିକୁ କେତେବେଳେ କିପରି ଦେଖାଯାଏ
କହି ହେବ ନାହିଁ । ଅନେକଟା ଦେଖିବା ଲୋକର ଗୁଣ ଉପରେ
ନିର୍ଭର କରେ । ସେପରି ଉଚ୍ଚକୋଟୀର ନିର୍ଗୁଣ ଲୋକ କମ
ଦେଖାଯାନ୍ତି । ସେ ମୋର କୈଳାସ ଯାହାକୁ ଉତ୍ସାହିତ କରିଥିଲେ ।

ନିର୍ଗୁଣ ମାନେ ଗୁଣହୀନ ନୁହେଁ ।

ପାହାଡ଼ଟା ପ୍ରାୟ ଦେଢ଼ଶହ ଫୁଟ ଉଇଥିଲ ଓ ରାସ୍ତାଟା ଦୁଇଟି
ବାଙ୍କ ଥାଇ ପ୍ରାୟ ତିନି ଫର୍ଲଙ୍ଗ ଯାଇ ଥିଲ । ପାହାଡ଼ ଉପରେ
ଗୋଟିଏ ଜପର ମୂହାଁ ଦାଆ ଢଙ୍ଗର ଗିରି ସଙ୍କଟ ଦେଇ ରାସ୍ତାଟା
ଯାଇଥିଲ । ସେଠାରେ ଗୋଟିଏ ଖୁଣ୍ଟ କେଲାଖମ୍ବ ପରି ଦଉଡ଼ି
ଟଣା ହୋଇ ପୋତା ହୋଇଥିଲ । ତାର ମୂଳରେ ଗୁଡ଼ାଏ ଛୋଟ
ବଡ଼ ପଥର ଗଦା ହୋଇଥିଲ । ଦଉଡ଼ି ଦେହରୁ ଫରଫର ହୋଇ
ଉଡ଼ୁ ଥିଲେ ଅନେକ ଗୁଡ଼ାଏ ବିଭିନ୍ନ ଆକାର ଓ ରଙ୍ଗ କନାର
ଫିତା । ଦେଖି ଟିକିଏ ଶଙ୍କି ଯାଇଥିଲି । ଗାଁ ମୁଣ୍ଡରେ କାମଛେଇ

କଣ୍ଡି ଟଳ ବଟଳ ହୋଇ ଥିବା ଝିଙ୍ଗା ଚୋବେଇକୁ ଦେଖିଲେ ପେଟର ଲଗେ । ଏ ହେଲା ଯାତ୍ରା ଘାଟର ନିତ୍ୟପଣ୍ଡା ପାଇଁ ଅଧିଦେବତାର ପୂଜା । ଆମ ପଟ୍ଟ ମଧ୍ୟ ପ୍ରତ୍ୟେକ ଘାଟି ଉପରେ ଠାକୁରାଣୀଟିଏ ଓ ଗାଡ଼ି ସେଠି ଅଟକେ । ନିୟମାନୁସାରେ ଯାତ୍ରୀ ଡାହାଣ କଡ଼ରେ ରଖି ଚଳିବାକୁ ହେବ ।

ଓହ୍ଲାଇବା ସମୟରେ ଜଙ୍ଗଲର ଦୃଶ୍ୟ ପରିଚିତ ଥିଲା । ଏଠାରେ ବଡ଼ ଗଛ ନାହିଁ । କିନ୍ତୁ ଓହଳ ଥିବା ଅନେକ ପ୍ରକାରର ମସ୍ତବଡ଼ ଗଛ ସବୁ ଥିଲା । ଏଠି, ସେଠି ହନୁମାଙ୍କଡ଼ ମାନଙ୍କର ଡିଆଁ କୁଦା ଓ କୋଳାହଳ ପରିଚିତ ଦୃଶ୍ୟପରି ଜଣାଗଲା । ପୂର୍ବ ପୁରୁଷର ଅବିକଳ ବଂଶଧର କୋଳାହଳରେ ନିର୍ଜନତା ଅନେକଟା କଟିଗଲା । କିନ୍ତୁ ସେମାନେ ସାଥି ହେବାକୁ ନାରାଜ । କଣ ଏହା ସତ ଯେ ଅଧିକତର ସଭ୍ୟ ଲୋକଙ୍କ ପ୍ରତି ପଶୁଆ ଲୋକେ ସନ୍ଦେହ କରନ୍ତି ।

ପାହାଡ଼ ଦେହରୁ ଓହ୍ଲାଇ ଦେଖିଲି ସଙ୍ଖିଳ ନଦୀ । ଖୁବ୍ ଓସାର । ବିଶେଷ ପାଣି ନ ଥିଲା । ଯେଉଁଠି ପାଣି ଧାରଟିଏ ଥିଲା ସେଠି କାଠର ପୋଲଟିଏ ଥିଲା । ଗୋଡ଼ି ପଥରର ନଦୀ ଗର୍ଭ ପାର ହେଲା ପରେ ଗୋଟିଏ ଚା’ ଦୋକାନ ପଡ଼ିଲା । ଦୋକାନୀ ନିଜ ପାଇଁ ଭାତ ରାନ୍ଧୁଥିଲା ।

ତାକୁ ପଚାରିଲି—ଏଠା କଣ ହୋଟେଲ ? ଖାଇବାକୁ ମିଳିବ ?

ଟିକିଏ ଚିନ୍ତା କରି ଉତ୍ତର ହେଲା—ମିଲ୍ ଟିଏ ଟଙ୍କାଟିଏ ।

ଗଲ । ସେଠାର ଅଧ୍ୟକ୍ଷ ହଠାତ୍ ଅନର୍ଗଳ ଇଂରେଜୀରେ କଥାବାର୍ତ୍ତା ଆରମ୍ଭ କଲେ । ଅତର୍କିତ ଭାବରେ ମୁଁ ଇଂରେଜୀରେ ଉତ୍ତର ଦେଲି—ଅଯୋଧ୍ୟା ସ୍କୁଲରେ ମାଙ୍କଡ଼ ଟେପର ଲମ୍ଫ ପ୍ରଦାନ କରିଥିଲେ ।

ସେ କହିଲେ—ତୁମେ ତା ହେଲେ ସରକାରୀ କର୍ମଚାରୀ ?

ମୁଁ—ନାଁ-ନାଁ, ମୁଁ ସେ ବିଷୟରେ କିଛି କହିପାରିବି ନାହିଁ ।

ସେ ଉପଦେଶ ଦେଲେ—ଦେଖ, ଯଦି ସରକାରୀ ଠିକଣାଟା ଦେଇଥାଅ, ସୁବିଧା ଅସୁବିଧାରେ ବେତାର କରି ଆମେ ତୁମକୁ ସାହାଯ୍ୟ କରି ପାରିବୁ, ଟଙ୍କା ପଇସା ମଗାଇବା ଇତ୍ୟାଦିରେ' ।

ମୁଁ କହିଲି—'ଘର ଠିକଣାଟି ଦେଲି, ନନା ଜାଣିଲେ ସେ ସବୁ ବନ୍ଦୋବସ୍ତ କରିବେ । ମୁଁ ଅବଶ୍ୟ ସରକାରୀ କାମ କରୁଥିଲି, ବର୍ତ୍ତମାନ ନୁହେଁ ।

ସେ—ଗଲେ କଣ କାମ କରିବ ନାହିଁ ?

ମୁଁ—କରି ନ ପାରେ ।

ସେହି କୁଲିକୁ ଗର୍ବିଆଙ୍କ ପର୍ଯ୍ୟନ୍ତ ନେଇ ଯିବାକୁ ସେ ଉପଦେଶ ଦେଲେ । ତାଙ୍କ କହିବାରେ କୁଲି ମଧ୍ୟ ମିଳିଲା । ଆଜି ଦୁଇ ଦିନର ବାଟ ପାଇଁ ଆଉ ଅଧିକା ଦଶଟଙ୍କା ଦିଆଯିବ । ସେଠି ଭାତ ଖାଇ ମନ ଉଚ୍ଛୁଳି ପଡୁଥାଏ । ଶ୍ରମ ଆଦୌ ଜଣା ପଡ଼ୁ ନ ଥାଏ । ଏ ଦଶମାଇଲ ରାସ୍ତା ପ୍ରାୟ ଗୁଡ଼ି ଗୁଡ଼ି ଚାଲି ଚାଲି ଛକି ଯାଇଥିଲି ଓ ପ୍ରାତଃ ଭ୍ରମଣ ଭଳି ଲାଗିଥିଲା । ବିଶେଷ ଉଠାଣିଆ ନ ଥିଲା । ଯାହା ଥିଲା, ତାହା ପୋଲ ପାଣିଆ ଲଟାଣିପରି ଥିଲା ।

ବାହାରି ମଣ୍ଡଳ 'ମାଲ୍ପା' ଅଭିମୁଖେ । ଶୁଣିବାକୁ ପାଇଥିଲି ଯେ ଯାତ୍ରୀଦଳଟି ସକାଳେ ସେଠାରୁ ସେହ୍ୱଠାକୁ ଯାତ୍ରା କରୁଛନ୍ତି । ଯଦିଓ ବାଟରେ ଦୁଇଟି ଅଧମାଇଲିଆ ଚଢ଼ାଣି ଅଛି, ଦୂରତା ମାତ୍ର ଛ'ମାଇଲ ଥିବା ହେତୁ ନିଶ୍ଚୟ ସନ୍ଧ୍ୟା ପୂର୍ବରୁ ପହଞ୍ଚି ପାରିବୁ । କୁଲିଟି ମଧ୍ୟ ହର୍ଷଭରା । ପାହାଡ଼ିଆ ହିସାବରେ ଓଜନ କିଛି ନୁହେଁ, ଦୂରତା କିଛି ନୁହେଁ, ସମୟ ମଧ୍ୟ କିଛି ନୁହେଁ । ମୋର ସାଥିରେ ସାଥିରେ ଚାଲିବାକୁ ତାଗିଦ୍ କରି, ମୋର ଝୁଲିଟା ମଧ୍ୟ ତାକୁ ଧରାଇ ଦେଇ, ଦୁଇ ହାତକୁ ଦୁଇ ଦୃଷ୍ଟା ବ୍ୟାୟାମ କରାଇ, ଖୁସିରେ ଗଦ୍ ଗଦ୍ ହୋଇ ବାହାରି ପଡ଼ିଲି । ସେଠାରେ ଥିବା ଦୁଇ ଗୃହିଜଣ ବିଦାୟ ଦେଇଥିଲେ । ସସ୍ମିତ ମୁଖ ସହ ହାତକୁ ଉଠାଇ ବିଦାୟ ଦେଇ ଅଧକ୍ଷ କହିଥିଲେ—ସାଗଡ଼ା ଆଦ୍ମି ହେ ।

ଅନୁପାନଟି କାମ କରିଥିଲା, ଫୁଲି ଯାଇଥିଲି ।

ଜୀପ୍ ଛାଡ଼ିଲା—

ଏଠାରେ ପାହାଡ଼ ଗୁଡ଼ିକର ଦୃଶ୍ୟ ବର୍ଣ୍ଣନାତୀତ । ମାଇଲିଏ ଖଣ୍ଡେ ଗଲା ପରେ ଗୋଟିଏ ମୋଡ଼ ପଡ଼ିଲା । ଆଗ ପଛ ଦିଗ ପୁରା ଓଲଟିଗଲା । ସେହି ବାଙ୍କ ପାଖରେ ଦେଖିବାକୁ ପାଇଲି ସମସ୍ତ ଦିଗନ୍ତବ୍ୟାପ୍ତ ମୁକ୍ତ ଅନନ୍ତ ଆକାଶ । ମୋଡ଼ଟି ଗୋଟିଏ ଅତି ଉଚ୍ଚ ଶିଖରର କେତେ ହଜାର ଫୁଟ ତଳକୁ ଅଢଟ ଥିବା ଧାରରେ ଅବସ୍ଥିତ । ତଳେ, ପାତାଳ ଗର୍ଭରେ ପ୍ରବାହିତ ହେଉଛି କ୍ଷୀଣ ଗୋଟିଏ ନଦୀ । ସାମନାକୁ ଓ ବହୁତ ଦୂରରେ ଗୋଟିଏ ନାତି-ଉଚ୍ଚ ପାହାଡ଼ । ପୃଥିବୀ ବର୍ତ୍ତୁଳ ଥିବା ହେତୁ ଟେଢ଼ା ଭାବରେ ଥାଇ ଧନୁ ଆକାରରେ ବାଁ ପଟରୁ ଡ଼ାହାଣ ପଟକୁ ଲମ୍ବି ଯାଇଛି, ଏପରି ପ୍ରତୀୟମାନ ହେଲା । କେବଳ ପଛ ପଟରେ ଥାଏ ପାହାଡ଼ର ଚିପ ଖଣ୍ଡିକ ।

ସେଠାରେ 'ମୁଁ' କିଏ ? ମୋର ଅସ୍ତିତ୍ୱ ବା କେଉଁଠି ଅସ୍ତିତ୍ୱମାନେ ବା କଣ ?

'ମୁଁ' ହେଉଛନ୍ତି ସେହି ଦୃଶ୍ୟକୁ ଉପଭୋଗ କରିବା । ମୋର ଅସ୍ତିତ୍ୱ ଉତ୍ପନ୍ନ ଉପଭୋଗ କରିବାରେ । ଅସ୍ତିତ୍ୱମାନେ ଦର୍ଶନ କରିବା ।

ଏହି ବିଶାଳ ଖଣ୍ଡର ବିରାଟ ଦୃଶ୍ୟକୁ ଆଖିର ଡୋଳା ଦେଇ ଠୁଳ କରାଯାଇଛି ତାର ପଛରେ ଥିବା ଗୋଟିଏ ବିନ୍ଦୁ ଉପରେ । ସେହି ବିନ୍ଦୁ ଠାରୁ ପୁନରାୟ ସୃଷ୍ଟି ହୋଇଛି ସେହି ବିରାଟ ରୂପ ମନର ପର୍ଦ୍ଦା ଉପରେ, ଚିନ୍ତାର ଊର୍ଦ୍ଧ୍ୱରେ ଥିବା ସେହି ଆତ୍ମାର ସାହାଯ୍ୟରେ । ତାହା ହୋଇ ପାରିଛି ଯେହେତୁ ଏହି ସାରା ସୃଷ୍ଟିର ସର୍ଜନା ଏକ ଚିତ୍ ବିନ୍ଦୁ ରୂପକ ପରମାତ୍ମାର ପରିବ୍ୟାପ୍ତ ମନର ଅନ୍ତରାଳରେ ହୋଇଛି । ମନ ଭିତରେ ଦୃଶ୍ୟର ଅସ୍ତିତ୍ୱ ଯେତିକ, ଏ ସାରା ସୃଷ୍ଟିର ଅସ୍ତିତ୍ୱ ମଧ୍ୟ ସେତିକି ବା ତା ଠାରୁ ଅଧିକତର ବିଭ୍ରାନ୍ତକର ଭ୍ରମ । କେବଳ ସେହି ଚିତ୍‌ବିନ୍ଦୁର ଅସ୍ତିତ୍ୱ ହେଉଛି ସତ୍ । ଚୈତନ୍ୟମୟ ପରମାତ୍ମାର ଇଚ୍ଛା ଶକ୍ତିର କଳ୍ପନା ତାର ପରିବ୍ୟାପ୍ତ ମନର ପର୍ଦ୍ଦାରେ ଘାତ୍ପ୍ରତିଘାତ କରାଇ ରଚେଇଛି ଏ ସାରା ସର୍ଜନା ଓ ତା ସହିତ ଅଙ୍ଗାଅଙ୍ଗି ଭାବେ ଜଡ଼ିତ ହୋଇ ଥିବା ଜୀବର ମନ ଉପରେ ଘାତ୍ପ୍ରତିଘାତ ହୋଇ ପ୍ରତୀୟମାନ ହେଉଛି ଏହି ଅବାସ୍ତବ କଳ୍ପିତ ସୃଷ୍ଟି । ଏହାର ଅସ୍ତିତ୍ୱ ଉତ୍ପନ୍ନ ସେ ଘାତ୍ପ୍ରତିଘାତ ଉପରେ ଆସ୍ଥା ରଖି ଉପଭୋଗ କରିବାରେ ।

ସେହି ଚିତ୍ ବିନ୍ଦୁ ହେଉଛି ପଞ୍ଚମୁଖୀ ଶିବ—ପଞ୍ଚପରମାପର କଳ୍ପନା ଓ ଏ ସାରା ସୃଷ୍ଟି ହେଉଛି ଚତୁର୍ମୁଖୀ ବ୍ରହ୍ମା—ପଦ୍ମ ନୀପରମାପର ସର୍ଜନା, ପଞ୍ଚ ପରମାପର କରତଳଗତ ମୁଖ ।

ବଜ୍ଞାନ ହେଲ ସୃଷ୍ଟିର ସର୍ଜନାର. ନିୟମାବଳୀ ଓ ସେ ନିୟମାବଳୀ ହେଲ ଚତ୍ ବନ୍ଦୁର କ୍ରିୟାକଳ୍ପ, ଫଳରେ ଇଚ୍ଛା କେ ।

ବନ୍ଦୁରୁ ବସ୍ତୁ ଓ ବସ୍ତୁରୁ ବନ୍ଦୁ

$$\left(\frac{I}{\text{ମ}}(\text{ମ}\propto\text{୦}) = \text{୦ ଓ } \frac{I}{\text{ମ}}(\text{ମ}-\text{୦}) = \propto\right)$$

ମୋଟରଟି ରାସ୍ତା ପ୍ରାୟ ଦୁଇ ମନଢୋଣ ଦୂରକୁ ପରେ ପଡ଼ିଲ ଏ ଦେଶୀମାନ୍ତ ଅନୁକୂଳ ନ ଥିବା ଲକ୍ଷଣିଯର ରାସ୍ତା । ରାସ୍ତାଟି ଏତେ ଖାସ୍ ଯେ ପାହାଡରେ ମାହାଡ ପାହାଡ ହୋଇ ଖସିଛି । ପ୍ରତ୍ୟେକ ଦଶ ଫଣ୍ଡର ଫୁଟରେ ବାଁ ପଟରୁ ଡ଼ାହାଣ ପଟକୁ ଓ ଡ଼ାହାଣ ପଟରୁ ବାଁ ପଟକୁ ଏପରି ଭାବରେ ମୋଡ଼ ହୁଙ୍କି ଗୁଳିଛି । ଉପର ପାହାଡରେ ହାତ ବଢ଼ି ତଳ ପାହାଡକୁ ଗୋଡ଼ ଦେବା ପାଇଁ ଚାଲୁ ଥାଏ— ବାହାର ପଟକୁ ମୁଣ୍ଡ କରି ଲକ୍ଷଣିରେ ଯେପରି ଓହ୍ଲାଇବା ।

ଚଢ଼ିବା ଠାରୁ ଓହ୍ଲାଇବାଟା ଅଧିକ ବିପଦଜନକ ।

ଓହ୍ଲାଇ ସାରି କିଛି ଦୂର ଗଲ ପରେ ପୁଣି ସେହିପରି ଗୋଟିଏ ଠିଆ ଉଠାଣି ପଡ଼ିଲ । ଅଣ୍ଟୁ ଉପରେ ହାତ ଭର ଦେଇ ଚଢ଼ିବାକୁ ଡ଼େଇଲ । ପ୍ରତ୍ୟେକ ଦୀର୍ଘ ନିଶ୍ୱାସରେ ଗୋଟିଏ ଗୋଟିଏ ପାହାଡ ଚଢ଼ୁଥାଏ । ଏହି ଯେଉଁ ଉଠାଣିଟି ଆରମ୍ଭ ହୋଇଛି ତାହା ଗୋଟିଏ ମସ୍ତବଡ଼ ଜଳପ୍ରପାତ ପାଖରେ ଓ ତାକୁ ଅତିକ୍ରମ କରିବାରେ । ଉଠାଣି ଶେଷରେ କିଛିଟା ସମତଳ । ଜଳପ୍ରପାତର ଦୁଇ ଗୃହଟା ଷୀଣ ଉପଧାର ରାସ୍ତା ପାର କରି ତଳକୁ ଯାଇଥାନ୍ତି । ବାଟଟା ସନ୍ତସନ୍ତିଆ ଥାଏ ଓ ଗୋଟିଏ ପଥର ତଳଦେଇ ଯାଇଥାଏ ଓ ପଥର ଉପର ଦେଇ ପ୍ରପାତର ମୂଳ ଧାରଟି ବହି ଯାଇଥାଏ ।

ବର୍ଷା ପଡ଼ିଲା ପରେ ପାଣି ଉପରୁ ଛିଟିକୁ ଥାଏ । ଛତା ଫୁଟାଇ ଚାଲିଲି । ରାସ୍ତାଟି ପ୍ରାୟ ଚାରି ଫୁଟ ଚଉଡ଼ା ଥାଏ ।

ମୋର ସାଥୀ ଜଣକ ମୋ ଠାରୁ ଦୁଇହାତ ଆଗରେ ଚାଲୁଥାଏ । ଠିକ୍ ତାର ଆଗରେ ଜଣେ ଆଗନ୍ତୁକ । ସେ ଦୁଇଜଣ କଥା ଜମେଇ ଥାନ୍ତି । ହଠାତ୍ ସେମାନଙ୍କ ଭିତରେ କିଛିଏ ଅସ୍ପଷ୍ଟ ଉତ୍ତେଜନା ଅନୁଭବ କଲି । ଚାଲକୁ ଦେଖେତ ମୋର ବାଁ ପଟକୁ ପାହାଡ଼ ଢଳେ ଢଳେ ଗୋଟିଏ ଦୁଇଫୁଟ ଲମ୍ବାର ସାପ ଚାଲୁଛି । ମୋ ଠାରୁ କିଛିଏ ଆଗେଇଛି । ମୋର ଦୃଷ୍ଟି ଯେମିତ ପଡ଼ୁଛି ସେ ସାପଟି ବାଁ ପଟରୁ ଡ଼ାହାଣ ପଟକୁ ମୋଡ଼ିବାକୁ ଚେଷ୍ଟା କଲା । ସାଙ୍ଗେ ସାଙ୍ଗେ ମନରେ ଆସିଲା ରାଗ । 'ଅଟେ ମୁଁ ଏତେ କଷ୍ଟରେ ତୀର୍ଥଯାତ୍ରା କରୁଛି, ତୁ ମୋର ଅଶୁଭର କାରଣ ହେଉଛୁ' । ଲମ୍ବା ବାଡ଼ିରେ ଦେଲି ଗୋଟାଏ ଗୋବା—ଠିକ୍ ଡ଼ାହାଣ ପଟକୁ ନନ୍ଦାଇ ମୁଣ୍ଡଟେକ କେନା ଦେଲେଇ ଜିଭ କାଢ଼ିଥିଲା ସପସପ କରି, ଠିକ୍ ତାର ମୁଣ୍ଡର ଡ଼ାହାଣ ପଟକୁ ଲଗାଇ । ଦୁଇ ଚାରି ଥର ଜିଭ କାଢ଼ି ମୁଣ୍ଡଟିକୁ ସାଙ୍କୁଡ଼ାଇ ଦେଲା । ନତମସ୍ତକ ହୋଇ ବାଟ ଛାଡ଼ି ଦେଲା । ମୁଁ ଆଗେଇ ଯିବା ପରେ ରାସ୍ତା ପାର ହେଲା ।

କଏ କହିବ ସାପର ବୁଦ୍ଧି ନାହିଁ, ଜ୍ଞାନ ନାହିଁ ? ମଣିଷ ପରି —ବୋଧ ହୁଏ ତା ଠାରୁ ଅଧିକ, ସାପ ବୁଝି ପାରେ ।

ସାପଟିର ବିଶେଷ ଚଞ୍ଚଳତା ନ ଥିବା ହେତୁ ଓ ବିଷାକ୍ତ ହୋଇ ପାରେ ବୋଲି ମୋ ମୁଣ୍ଡରେ ପଶି ନ ଥିବା ହେତୁ ମୁଁ ସେପରି କରିଥିଲି । ଭାବିଥିଲି ଯେ ଯଦି ବିଶେଷ ଫଁ ଫଁ କରିଥାନ୍ତା, ଜାଠି ଅଗ ମୂନରେ ଫଳକୁ ଛାଟି ଦେଇଥାନ୍ତି ।

ସାଥୀ ଜଣକ ମୁଣ୍ଡ ବଙ୍କେଇ ମୋର କାର୍ଯ୍ୟକଳାପ ଦେଖୁଥିଲା । ଗୋବାଟି ଦେବା ସାଙ୍ଗେ ସାଙ୍ଗେ ପାହାଡ଼ ଦୁଇଜଣ ଜଣ ଦୁଇପଦ ଛୁଟପାଠ ହୋଇ ଏକା ନିଶ୍ବାସରେ ଧାଇଁଲେ । ଆଖି ପିଛୁଳାକେ ଅଦୃଶ୍ୟ । ଭାବିଲି, 'କଣ କଥାବାର୍ତ୍ତା ହୋଇ ଜନସ ସଙ୍ଗ ଧରି ଚାଲିଗଲେ ? ଯିବେ କେଉଁଠି ଆଉ ? ରାସ୍ତା ତ ଏକ । ଲୁଚିବେ ବା କେଉଁଠି ? ଲୁଚିବା ପାଇଁ ଜାଗା ନାହିଁ । ମରିବାକୁ ଥିଲେ ରାସ୍ତା ଛାଡ଼ିବେ । ଜନପଦର ବିଶେଷ ମୂଲ୍ୟ ନ ଥିଲେ ମଧ୍ୟ ଆଗରେ ଯୋଗାଡ଼ କରିବା ଅସୁବିଧାଜନକ । ନିର୍ଭୟ ଚିତ୍ତରେ ମୋର ମୁଁ ଗୋଟିଏ ଗୋଟିଏ ଚାଲିଲି ।

ଫେର ପଡ଼ିଲା ଓହ୍ଲାଇବା ପାଇଁ ପାହାଚ ପାହାଚ ରାସ୍ତା । ପାଣି ଛିଟିକାରେ ଜଳସିକ୍ତ ଓ ଖସଡ଼ା । ଖସି ଯାଇ ପିଚୁ ଛେଚା ହେବା ସମ୍ଭାବନା ଖୁବ୍ ବେଶି । ଖୁବ୍ ସାବଧାନତା ସହକାରେ ଓହ୍ଲାଇବାକୁ ପଡ଼ିଲା । ତା ପରେ ପଡ଼ିଲା ଟିକିଏ ନୂଆଁଣିଆ ରାସ୍ତା । କିଛି ଦୂର ଆଗେଇଛି ଦେଖିଲି ଉପନଦୀ ଉପରେ ଗୋଟିଏ ପୋଲ । ପୋଲ ପରେ ରାସ୍ତାଟି ଧୀରେ ଧୀରେ ଉଠିଯାଏ ଓ କିଛିଟା ଗଲା ପରେ ଦେଖିଲି ଯେ ରାସ୍ତାଟି ଗୋଟିଏ ଗୁହାର ମୁହଁ କାଟି ଯାଇଛି । ଉପରେ ଗୋଟିଏ ପଥର ଓ ବାଁ ପଟେ ବସିବା ପାଇଁ ଜାଗା । ଆମର ସାହେବ ଦୁଇଜଣ ବସି ଚିଲମ୍ ଟାଣୁଥାନ୍ତି ।

ମୋତେ ଦେଖି ଆମର ସାହେବ ଜଣକ ଦାନ୍ତର ଛଟା ଦେଖାଇଲା । ସେଥିରେ ଟିକିଏ ତରଳି ଗଲି । ରାଗ ଗଲା, କିନ୍ତୁ କୃତ୍ରିମ ରାଗ ଦେଖାଇ ତାକୁ ଧମକାଇ କହିଲି—

'କହେ—ମୋତେ ଛାଡ଼ି ଅସିଗଲ ଯେ । କଥାତ ହୋଇଥିଲ ମୋ ସାଥିରେ ଯିବା ପାଇଁ'।

ସେ କହିଲ—"ସାପ୍ ସାପ୍ । ଜୀଭ୍ 'ଓଁ' 'ଓଁ', ଢମ୍ ଢଗ୍, ଢଗା" ।

ଭୁଟିଆ ଲୋକଟ ତାର ଭାଷା ଅଲଗା । ଶୃଷୀ ଥିବା ହେତୁ ତାହାର କମାନା ସହିତ ତାର ବେଶି ସମ୍ପର୍କ ଘଟି ନାହିଁ ।

କହିଲି—''ଦେଖ, ମୋର ସାଙ୍ଗରେ ରହିଲେ ତୋର କିଛି ଅନିଷ୍ଟ ଘଟିବ ନାହିଁ, ଯେହେତୁ ମୁଁ ଜଣେ କୈଳାସ ଯାତ୍ରୀ । ଜଣା ଅଛିଟେ ଏ ସବୁ ଜାଣି ନ ଥିଲେ ମୁଁ ଏପରି ବିପଦ ସଙ୍କୁଳ ଦୂର ବିଦେଶକୁ ଅସି ନ ଥାନ୍ତି । ଏଥର ବରାବର ମୋର ସାଙ୍ଗରେ ରହିବୁ ।" ।

ସତରେ କହିବାକୁ ଗଲେ ଏ ଅଖାଡ଼ୁଆ ପାହାଡ଼ ଇଲକାର ପାହାଡ ଗୁଡ଼ିକର ବିଶାଳତା ଦେଖି ମୁଁ ଟିକିଏ ଡ଼ରି ଯାଇଥିଲି ଓ ମାଙ୍ଗ ଗୃହୁଁ ଥିଲି । ଯଦିଓ ମୋର ମନେ ପଡ଼ୁଥିଲା ଯେ ପାହାଡ଼ିଆ ଓ ସାମୁଦ୍ରିକ ସାପ ସମସ୍ତେ ବିଷାକ୍ତ ବୋଲି ପଢ଼ିଥିଲି, ସେ ବିଷୟରେ ଭୟ କରିବାର କିଛି ନ ଥିଲା । କାରଣ ସେହି ସାପ ଥିଲା ଗ୍ଲେଟ ଓ ତାର ଚଳନ ଋଜୁ କମ୍ । ଗୋଡ଼ ପାଇଁ ଯୋତା ହେଲା ଏକ ସାଙ୍ଗୁଆ । ବାଡ଼ି ଓ ଯୋତା ସାହାଯ୍ୟରେ ତାର ମୁକାବିଲା କରିପାଇ ପାରିବ ବୋଲି ମୋର ଦମ୍ଭ ଥିଲା ।

ଗୋଟେ ଧୁଇଠା ଦମ୍ ଚଲମ ଟାଣି ଅମେ ବାହାରି ପଡ଼ିଲୁ । ସାଥୀ ମୁଲିଆ କହିଲା—

"ଏହି ଘାଞ୍ଚାଡ଼ ଉଠିଲେ, ଆଉ ଘଣ୍ଟାରେ 'ମାଲପା'," ସନ୍ଧ୍ୟା ହେଉ ହେଉ ସେଠାରେ ପହଞ୍ଚିଲୁ ।

ମାଲପା ୭୨୦୦ ଫୁଟ ଚାଲିଲୁ ୩୨+୧୬=୪୮ ମାଇଲ—

'ମାଲପା' ଦୁଇଟି ନଦୀର ସଙ୍ଗମ ସ୍ଥଳରେ ଅବସ୍ଥିତ । ନଦୀ ଉପରେ ଗୋଟିଏ ପୋଲ ଓ ପୋଲ ଦେଇ ଆମର ବାଟ । ନଦୀ ଦୁଇଟି ଅତି ନିକଟରେ ଓ ତଳ ଥିବା ହେତୁ ତାର ଜଳ ଛଳ ଘଡ଼ର ଝଙ୍କାର ସତତ ଶୁଣିବାକୁ ପାଉଲୁ । ଜାଗାଟା ବଡ ଘନ୍ତଘନ୍ତିଆ । ସେଠାରେ ଗୋଟିଏ ପୂର୍ତ୍ତ ବିଭାଗର ଅଡ୍ଡା ଥାଏ । ଦୁଇ ଗୁରଖା ଟମ୍ବୁରର ଯାବତୀୟ କାର୍ଯ୍ୟ ତୁଲାଉ ଥାନ୍ତି । ତାଙ୍କୁ ନିର୍ଭର କରି କେତେ ଗୁଡ଼ିଏ ମଜୁରିଆ ଓ ସେମାନଙ୍କୁ ନିର୍ଭର କରି ତିନି ଗୁରଖାଙ୍କ ଦୋକାନ । ଯିବା ଆସିବା ଓ ବାସସ୍ଥାନ ଲୋକଙ୍କ ପାଇଁ ଗୋଟିଏ 'ଧର୍ମଶାଳା' ମଧ୍ୟ ଥାଏ । ସେଇଠା ଥିଲା ତାଳୁ ନ ଥାଇ ଗୋଟିଏ ଚୁଲାଣ୍ଡ ଘର । କାଠଟା ନିଆଁ ଦିଆଯାଇ ଟିକ ନିଆ ପଡ଼ିଥାଏ । ତାର ଗୋଟିଏ କୋଣକୁ ଆମ ଯାତ୍ରୀ ଦଳଟି ଗଡ଼ୁଥାନ୍ତି । ସେମାନଙ୍କ ଭିତରୁ ନରମ ଚେହେରା ଥିବା ଜଣେ ବଙ୍ଗାଳୀବାବୁ ଲୋକ ଖୁବ୍ ରସଗୋଲା ଖାଉଥାଏ, ଗୋଟିଏ ମଟକିଆ ହାଣ୍ଡିରୁ । ଅନ୍ୟମାନେ ମୋ ଅଡ଼କୁ ଦୃଷ୍ଟି ନିକ୍ଷେପ ନ କରିବା ଦେଖି ଓ ସେ ମୋତେ ମିଟି ମିଟି କରି ଚାହିଁବାରୁ ତାଙ୍କୁ ପଚାରିଲି ଆପଣ ଜଣେ କୈଳାସଯାତ୍ରୀ ନା ?

ମନେ ହେଲା ପ୍ରଶ୍ନଟା ତାଙ୍କୁ ଭଲ ଲାଗିଲା ନାହିଁ । ସାମାନ୍ୟ ଟିକିଏ ମୁଣ୍ଡ ଲଡ଼ଲେ । ସହୃଦୟତା କମ ଦେଖି ମୁଁ ରହିବା ଜାଗା ଅନ୍ୱେଷଣରେ ବାହାରିଲି ।

ଜାଗାଟା ଲୋକରେ ଭର୍ତ୍ତି । ମୁଣ୍ଡ ଗୁଞ୍ଜିବା ପାଇଁ ଜାଗା ମିଳିଲା ନାହିଁ । ଅଖ ପାଖରେ ଥିବା କୁଡ଼ିଆ ଗୁଡ଼ିକ ଭିତରୁ ଗୋଟିଏ ନେପାଳି ମଜୁରିଆର କୁଡ଼ିଆରେ ମୁଣ୍ଡ ଗୁଞ୍ଜିଲି । ବାବୁ ଲୋକ ବୋଲି ତାର ଟିକିଏ ସହାନୁଭୂତି ଦେଖିଲି । କାଠ ପଟାଟା ଉପରେ କନାପତ୍ର ରଖିଲି ।

ମୋ ପାଇଁ ପାଏ ଅଟା ଓ ଘିଅ, ସାଥିଟି ପାଇଁ ଦୁଇପା ଅଟା, ଏତକ ଟଙ୍କେ ଦୁଇଅଣା ଦେଇ କିଣିଲି । ସେ ରାନ୍ଧିଲା । ଖାଇଲୁ । ଯେଉଁଠାରେ ଅଟା କିଣାଗଲା, ସେ ଦୋକାନଟି ଥିଲା ଗୋଟେ ବୁଢ଼ୀର । ଅନବରତ ତାର ଚୁଲି ଜଳୁ ଥାଏ । ତାଉଆ ବସି ଥାଏ । ଯା'ର ତାର ଅଟା କିଣି ଜଣକ ପରେ ଜଣେ ସେକନ୍ତି । ରୋଟିରେ ଘିଅ ମରେଇବା ପରେ ବୁଢ଼ିକୁ ଖଣ୍ଡେ ଲଙ୍କା ମାଗିଲି । ଗୋଟିଏ ଲଙ୍କା ଆଣି ଦେଲା ।

ଭଦ୍ରଲ—ନୁଣ ଟିକିଏ ଦେଲ ନା ?

ସେ—ଭାହିଁ ମାଗି ନ ଥିଲ ଯେ ।

ଜଣେ ପୋଲିସ କନଷ୍ଟେବଲ ଗସ୍ତରେ ଥିଲା । ତାର ଝୁଲିରୁ ପୁଟିଳି ଖଣ୍ଡେ ପର ଦୁଇ ତିନିଖଣ୍ଡ ଲୁଣ ବାହାର କରି ଦେଲା । ଉଣେଇଶ କୋଡ଼ିଏ ବର୍ଷର ଟୋକାଟିଏ । ସାହେବ ଗସ୍ତରେ ଆସି ଥାନ୍ତି । ସେ ତାର ଅର୍ଦ୍ଦଳି ।

ଭଦ୍ରଲ—'ଏଥର ଅସୁବିଧା ଘଟେ ବୋଲି ସେ ପାଖରେ ଲୁଣ ରଖି ଥାଏ । ବଡ଼ ଦରକାରି ଜିନିଷ କି ନା ?

ରାତିରେ କାଠ ପଟାଟା ଉପରେ କମ୍ବଳ ପାରି ଶୋଇଲି । ଖୁବ୍ ଥଣ୍ଡା ହେଉଥିଲା । ସେ ଜାଗାରେ ମଧ୍ୟ ବହୁତ ଲୋକ ଜମି ଯାଇଥିଲେ । ଖୁବ୍ ନିଦ ହୋଇ ନ ଥିଲା ।

ସାଲପ ଘଡ଼ଲ ୧୯ ଜୁନ ସୋମବାର— ·

ସେ ଦନ ଖୁବ୍ ସ୍ୱେରରୁ ଉଠିଥିଲ । ସାଙ୍ଗେ ସଙ୍ଗେ ଖବର ପଢ଼ଥିଲ ଯେ ଯାତ୍ରୀଦଳଟି ବାହାର ପଡ଼ଛନ୍ତି । ସେହ ମୁହୂର୍ତ୍ତରେ ବନ୍ଧାବନ୍ଧ କର ଆମେ ଦୁଇଜଣ ବାହାର ପଡ଼ଲୁ । କଛି ଦୂର ଯିବା ପରେ ସେମାନଙ୍କୁ ବାଟରେ ଭେଟିଲ ।

ସବା ପଛରେ ଥିଲେ ବୁଢ଼ାଟିଏ ଆଉ ଟୋକାଟିଏ । ଯୁବକଟି ମୋ ଆଡ଼କୁ ଦେଖାଇ ପାରଲ । ବୁଢ଼ାଟି ବୁଲ ପଡ଼ ମୋତେ ପଚାରଲ—

'ତୁମେ କଣ କୈଳାସ ଯାତ୍ରୀ' ?

କହଲ—'ହଁ'

ସେ—'ଘର କେଉଁଠି ?

ମୁଁ—ଭୁବନେଶ୍ୱରରେ ।

ସେ—କଣ ଜଗାଧିଧାସ୍ପ (ଗ୍ରେଜୁଏଟ୍ ?)

ମୁଁ—ହଁ

ସେ—ଚାକର କରଛ ?

ମୁଁ—ହଁ

ମୁଁ—ତୁମେ କଣ ବାପ ପୁଅ ?

ଯୁବକ—ନା, କନ୍ତୁ ବାପ ପୁଅ ଭଳଆ । ଆମେ ଦୁଇ ଜଣ ମିଶି ଅନେକ ତୀର୍ଥ ଯାତ୍ରା କରଛୁ । ସେହେତୁ ସମ୍ପର୍କଟା ସେହପର ହୋଇ ଯାଇଛୁ ।

ସେମାନେ କୁଆଡ଼େ ୧୯୫୮ ସାଲରେ କୈଳାସ ଯାତ୍ରା କରିବେ ବୋଲି ଆଲ୍‌ମୋଡ଼ା ଆସି ଭର୍ତ୍ତି ପାଇ, ଏଠି ସେଠି ବୁଲିଫେରି ଯାଇଥିଲେ । ସେହେତୁ ସେମାନଙ୍କର ଜନ୍ମପତ୍ର ଗୁଡ଼ିକରେ 'କୈଳାସ ଯାତ୍ରୀ—'୧୯୫୮' ବୋଲି ଲେଖା ଯାଇଥାଏ ।

ମୋର ମଧ୍ୟ ଅନୁରୂପ ଅନୁଭୂତି ଥିବା କହିଲି ଶୁଣି ସେମାନେ ଖୁସିରେ ହସି ଥିଲେ । ଏଥର କିନ୍ତୁ ନିଶ୍ଚିତ ଯାତ୍ରା କରିବା ବୋଲି ବୁଢ଼ା ଦମ୍ପତି ସହଜଭାବରେ କହିଲେ ।

ପଚାରିଲେ—ଗୌରିକୁଣ୍ଡରେ କଣ ଖୁବ୍ ଥଣ୍ଡା ହେବ । କଣ ଭୀଷଣ କଷ୍ଟ ହେବ ?

ମୁଁ—ବହି ତ ସେପରି ଲେଖୁଛି । ଦେଖାଯାଉ କଣ ହେଉଛି । ଅନ୍ୟ ଲୋକେତ ଫେରି ଯାଇ ଆସିଛନ୍ତି । ଯେତିକି ହେବ ସେତିକି କରି ଫେରିବା । ଅଯଥା ବିପଦ ମୁଣ୍ଡାଇବା ନାହିଁ । ମୋର ବିଶ୍ୱାସ ଆମେ ନିଶ୍ଚୟ ପାରିବା, ଯେହେତୁ ଚାଲି କରି ଯାଉଥିବା ହେତୁ ଅଳ୍ପେ ଅଳ୍ପେ ଅଭ୍ୟସ୍ତ ହୋଇ ପଡ଼ିବା । ଉଚ୍ଚ ଜାଗାରୁ ଓହ୍ଲାଇ ଆସି ତଳ ଖଣ୍ଡରେ ରାତି କଟାଇବା ।

ସେ—ଆମେ ନିଶ୍ଚୟ ପାରିବା ।

ଏଇ ଜାଗାରେ ରାସ୍ତା ସଙ୍କୀର୍ଣ୍ଣ ଥିଲା । ଠାଏଁ ଠାଏଁ ମାତ୍ର ଫୁଟେ ଖଣ୍ଡେ ଓସାର ଥିଲା । ଜାଗା ଜାଗାରେ ମାଟି ଖସି ଯାଇ ଥାଏ । ସେଠାରେ ଦୁଇ ପଟରୁ ଦୁଇଟି ସରୁ ଡାଠଗଡ଼ା ଯୋଡ଼ି ଦେଇଥାନ୍ତି । ତା ଉପରେ ବେଳେ ବେଳେ ଖଣ୍ଡେ ଚେପଟା ପଥର ପଡ଼ିଥାଏ । ଠିକ୍ ମଝିରେ ମଝିରେ ହାତେ ମାପି ଗୋଡ଼ ଖଣ୍ଡେ ଚାଲିବାକୁ ହୁଏ । ଏଭିତରେ ଯଥେଷ୍ଟ ଅଭ୍ୟସ୍ତ ହୋଇ ପଡ଼ିଥିଲି ଦେହର ଭାରସାମ୍ୟ

ରକ୍ଷା କରିବାରେ । ମନେ ପଡ଼ିଲା ଆମର ଗାଁ ଗଣ୍ଡା ମୁଣ୍ଡରେ ନାଳ ଉପରେ ଦୁଇଟି ତାଳଗଣ୍ଡି ପଦ ଏକାଠି କରି ପଡ଼ିଥାଏ, ମୁଁ କେବେ ତାହା ଉପର ଦେଇ ଯିବାକୁ ସାହାସ କରି ନ ଥିଲି । କିନ୍ତୁ ଏଠାରେ ଦୁଇ ଚାରି ଇଞ୍ଚ ବ୍ୟାସର ଦୁଇଟି କାଠଗଣ୍ଡି ଉପରେ ଆବୁଡ଼ା ଖାବୁଡ଼ା ଭାବରେ ସଜା ଯାଇଥିବା ପାତଅ ପଥରର ଦୁଲୁକୁ ଥିବା ରାସ୍ତା ଅପେକ୍ଷା ଦୁଇଟି ତାଳଗଣ୍ଡି ଅନେକ ସୁବିଧାଜନକ । କିନ୍ତୁ ପକ୍କା ରାସ୍ତା ଓ ଦାଣ୍ଡରେ ଚାଲିବା ହେତୁ ଭାରସାମ୍ୟ ରକ୍ଷା କରିବା କୌଶଳଟି ଆମର ଆୟତ୍ତ ହୋଇ ନ ଥାଏ । କେବଳ ଅଭ୍ୟାସ ହିଁ ଆୟତ୍ତ କରାଇଥାଏ ।

ଆମେ ପହଞ୍ଚିଗଲୁ 'ବୁନ୍ଦି' ନାମକ ଗ୍ରାମରେ—

ସେହି ଗାଁରେ ଥିଲା ଗୋଟିଏ ଗୃହଶାଳୀ । ସେଠାରେ ସମସ୍ତେ ବସା ଉଠା କରି ରନ୍ଧାବଢ଼ା କରି ଦୁଇ ପ୍ରହରରେ ବିଶ୍ରାମ ନେଲୁ । ଗାଁଟି ଟିକିଏ ବଡ଼ । ଜନୈକ ଧନି ଦୋକାନୀ ଠାରେ ପ୍ରାୟ ସବୁ ଜିନିଷ ମିଳୁଥିଲା । ଲୋକଟିର ସମ୍ଭ୍ରାନ୍ତ ବଂଶୀୟ ବୋଲି ଟିକିଏ ଗର୍ବ ଥାଏ । ଏହାର ଗୋଟିଏ ଝିଅ ଆଲମୋଡ଼ାରେ ଇଣ୍ଟର ମିଡ଼ିଏଟରେ ପଢ଼େ ବୋଲି ଶୁଣିଲି । ଚାରି ଦିନର ରାସ୍ତା ବାଟ, ଦୁଇ ଦିନ ଧରି ବସରେ ଯିବା ପରେ ପଡ଼ୁଥିବା ନିକଟତମ ସହରରେ ଝିଅକୁ ପାଠ ପଢ଼ାଇବା କିଛି କମ୍ କଥା ନୁହେଁ । ତାର ଜୁଆଇଁ ଭଳି ଗୋଟିଏ ଲୋକକୁ ରଖିଥିଲା । ତାକୁ ସେ (ନୋକରି) ଖୁଡ଼ି ବୁଲି ପାଉଛି ବୋଲି ଶୁଣିଲି । ତାର ଅନ୍ୱେଷଣରେ ଲାଗିଛି । ତାର ଝଙ୍କଡ ଝଟପଟ୍ ଚୈତ୍ତଡାକ୍ତୁ ବାପ କୁଆଡେ କହୁଥିଲା— 'ପାହାଡ଼ମେ ଭଲ ହୋଇ ନ ଯିବ ହେବ ? ସଇତାନ ଯଦ ମୁଣ୍ଡରେ ପଶେ ନିଜ୍ଦରେ ବ୍ୟତେକମା ନିୟମ ଭଳିଆ ନାରେଗ ଓ ନିୟମଟି

ବ୍ୟତିକ୍ରମ ଭଳିଆ ଲାଗେ । ଉପମାନଙ୍କୁ ଶାସ୍ତ୍ର ପ୍ରମାଣ ମଧ୍ୟ ମିଳିପାଏ ।

ଦୁଇ ପ୍ରକାର ଲୋକଙ୍କ ଦ୍ୱାରା ଉଭୟ ଅର୍ଥ କରାଯାଇ ଥାଏ—

ଅହଲ୍ୟା ଦ୍ରୌପଦୀ କୁନ୍ତୀ ତାରା ମନ୍ଦୋଦରୀ ତଥା ।
ପଞ୍ଚକନ୍ୟା ସ୍ମରେନ୍ନିତ୍ୟଂ ମହାପାତକ ନାଶନଂ ॥

ପାହାଡ଼କୁ ଦୋଷ ଦେବା ଉଚିତ ନୁହେଁ । ମାଟି, ପାଣି, ଓ ପବନର ଦୋଷ ନାହିଁ । ବରଂ ସେମାନେ ଶୌନ୍ଦର୍ଯ୍ୟରେ ସାହାଯ୍ୟ କରନ୍ତି । ମଣିଷ ତାର ଲାଳସାରେ ସୃଷ୍ଟି କରେ । ସେଠି ରହୁଥିବା ବ୍ୟକ୍ତି ବିଶେଷର ଦାୟିତ୍ୱ, ଦେଖ ସେପରି କିଛି ଦାୟିତ୍ୱ ଜ୍ଞାନ ଥାଏ ।

ସେହି ଦୋକାନୀ ଠାରୁ ପାଏ ଦହି ଛ ଅଣା ଦେଇ କିଣିଲି ଓ ଲୁଣ ମିଶାଇ ପିଇଲି । ଯାତ୍ରୀ ଦଳଟି ଦେଶରୁ ଆଣି ଥିବା କିଛି ଶୁଖିଲା ଜଳଖିଆ ଦେଲେ—ସୁଜି ଲଡୁ, ବାରମଜା, ଚୁଡ଼ାଭଜା ଇତ୍ୟାଦି । ମୋର ସାଥିଟି ଝୁଣ୍ଟି କରୁଥିଲେ, ଦୁଇଟି ଖାଇଲି ।

ଧନ ବାବୁଙ୍କ ପାଖରେ 'ଝୁଲି'କୁ ରଖିଦେଲୁ । ଝୁଲି ପରେ ପରେ ମାଇଲିଏ ଖଣ୍ଡେ ଉଠାଣି ଚଢ଼ିଲୁ । ଉଠାଣି ମୁଣ୍ଡରେ ଗୋଟିଏ ଅଧିତ୍ୟକା । ଏଣୁ ଠାରୁ ରାସ୍ତା ଅନେକ ଭଲ । ସୁବିଶାଳ ଅଖାଡ଼ୁଆ ପାହାଡ଼ ଆଉ ନ ଥାଏ । ଉପ୍ ନ ଥାଇ ଭୂରସାମ୍ୟ ଉପରେ ନିର୍ଭର କରିବା ରାସ୍ତା ଓ ଦୁଇକୁ ଥିବା ରାସ୍ତା ଯାଇଥାଏ । ଠିଆ ଉଠାଣି ଓ ଲମ୍ବପାତ କରୁଥିବା ଜାଣୁଣି ବାଟ ଯାଇଥାଏ । ଖସି ପଡ଼ିବା ଭୟ କୈଳାସ ପର୍ଯ୍ୟନ୍ତ ଆଉ ନ ଥିଲା । ଏହା ପରଠାରୁ ଘୋଡ଼ାରେ ମଧ୍ୟ ଯାତ୍ରା କରାଯାଇ ପାରେ—କେବଳ

ଲୟୁ ଲେଖ, ଗିରି, ସଙ୍କଟ, ପାଖରେ କଷ୍ଟ ଅଂଶ ଛାଡ଼ ଦେଲେ । ଏଥିରୁ ଅଧିକାଂଶଟା ନରମ ବରଫ ହେତୁ—ଉଠାଣି ବା ସଙ୍କୀର୍ଣ୍ଣତା ହେତୁ ନୁହେ ।

ଗର୍ବିୟାଙ୍ଗ ୧୦,୩୦୦ ଫୁଟ-ଚୂଲିଛୁ; ୪୮ + ୧୦ = ୫୮ ମାଇଲ—

ଗର୍ବିୟାଙ୍ଗରେ ତିରେଇଶ ଜୁନ ସୋମବାର ଦିନ ସାଢ଼େ ଦୁଇଟାରେ ପହଞ୍ଚିଲୁ ।

ଏ ପର୍ଯ୍ୟନ୍ତ ପାହାଡ଼ରେ ଗ୍ରାମ ଗୁଡ଼ିକର ନାମ ଥିଲା— ଆଲ୍‌ମୋଡା, ପିଠୋରାଗଡ, ଅସ୍‌କୋଟ, ଧାରଚୁଲା, ଖେଲା, ଠାଣି, ଧାର୍ଚୁ, ସୁଯା, ଶୀର୍ଖା, ଜିପ୍ତି, ଆଲଗା, ବୁଦ୍ଧି । ନା ଗୁଡ଼ିକ ପୂର୍ବପୁର୍ବ ଭାରତୀୟ । ପ୍ରଥମ କେତୋଟିରେ ହିନ୍ଦି ତଥା ଉର୍ଦ୍ଦୁର ପ୍ରଭାବ ହେତୁ ହଲନ୍ତ ଥାଇ ଉଚ୍ଚାରଣ । ତା ପରେ ସରଳ ଭାବରେ ଓ ଶ୍ଲୋକ ଥାଇ ଓଡ଼ିଆ ବା ପାଲିର ଉଚ୍ଚାରଣ ଯେପରି । ମଝିରେ ମଝିରେ ସଂସ୍କୃତ ଉଚ୍ଚାରଣ । ଯୁକ୍ତାକ୍ଷର ଅଛି । ସମତଳର ହିନ୍ଦିର ପ୍ରଭାବ କମେ କମି ଆସି ଥାଏ । ସ୍ଥାନୀୟ ଭାଷାରେ କେତେ ଗୁଡ଼ିଏ ଓଡ଼ିଆ ଶବ୍ଦ ମଧ୍ୟ ଲକ୍ଷ କରିଥିଲି । କିନ୍ତୁ ଗର୍ବିୟାଙ୍ଗ ନାମଟି ମନେ ପକାଇ ଦେଇଥିଲା ଶିଙ୍କିୟାଙ୍ଗ ଓ ମାଉସେଟୁଙ୍ଗ୍ ।

ବାଟରେ ଜଣେ କହୁଥିଲେ ଯେ ସମତଳ ପ୍ରଦେଶଟା ଗରମ ଥିବା ହେତୁ ଓ ହିମାଳୟ ଥଣ୍ଡା ଓ ଅଗମ୍ୟ ଥିବା ହେତୁ ସ୍ଥାନୀୟ ଖଣ୍ଡରେ ଆମର ପ୍ରଭାବ କମି ଆସିଛି । ସେ ପଟ ଅଡ଼ୁ ଲୋକେ ଆସି ଛେଳି, ମେଣ୍ଢା ଚରାଇ ଚାଲିବୁଲି କରି ଓ କାଁ ଭୁଁ ଜଣେ ଅଧେ ବସତି ସ୍ଥାପନ କରି ତାଙ୍କ ଭାଷାରେ ଜାଗା ଗୁଡ଼ିକ ନାମିତ କରିଛନ୍ତି । ତାର ଦ୍ୱାହି ଦେଇ ଚୀନ ତିବ୍ବତୀୟ ଭାଷାର ଅଞ୍ଚଳରେ ମାଡ଼ି ବସିବାକୁ ଚାହୁଁଛି । ଆମ ସରକାର ସେ ନା

ଗୁଡ଼ିକଙ୍କୁ ଅନ୍ତତଃ କାଗଜ ପତ୍ରରେ ନ ନେଇ ସ୍ୱରଷ୍ଟ୍ର ନାଁରେ ନାମିତ କରିଥିଲେ ବୁଦ୍ଧିମାନର କାର୍ଯ୍ୟ ହୋଇଥାନ୍ତା ।

ଏମାନଙ୍କ ଭିତରୁ କେତେକଙ୍କୁ ଧରି ଚୀନାମାନେ ଆମର ଅଗୁଆ ଗ୍ଲାଜିଣି ବିଷୟରେ ଖବର ସଂଗ୍ରହ କରନ୍ତି । ସୀମାନ୍ତ ଅଞ୍ଚଳରେ ଶୀତ ଦିନରେ ରାସ୍ତା ଅଗମ୍ୟ ହେଲା ପୂର୍ବରୁ ଗ୍ଲାଜିଣିବାଲା ଫେରି ଆସନ୍ତି । ସେ ଜାଗାରେ ବରଫ ପଡ଼ିଥାଏ । ଏମାନେ ଚାଲି ଆସିଲେ, ଚୀନାମାନେ ଝପ୍ ଝପ୍ ଘୋଡ଼ାରେ ଆସି ଗ୍ଲାଜିଣିର ଖୁଣ୍ଟ ସବୁ ଦେଖି ମାପଚୁପ କରି କେତେ ଲୋକବଳ ଧରି ଗ୍ଲାଜିଣି ଥିଲା ସେମାନେ ଧରି ନିଅନ୍ତି । ଦୁଇ ବାଗରୁ ତଥ୍ୟ ସଂଗ୍ରହ କରି ସଠିକ୍ ଭାବେ ଜାଣି ପାରନ୍ତି ।

କିନ୍ତୁ ସେମାନଙ୍କର ଲୋକବଳ କେତେ ସେ ଖବର ଆମଠି ନ ଥାଏ ।

ମୁଁ ସମବେଦନା ଦେଖାଇଥିଲି । ମନ୍ତବ୍ୟ ଦେଇ ନ ଥିଲି । ଏ ସବୁ କଥା କିଛିଟା ସତକୁ ଭିତ୍ତି କରି କୁହାଯାଇ ଥାଏ, କିଛିଟା ସ୍ୱଦେଶ ପ୍ରୀତି ଥାଏ ଓ ସ୍ୱଦେଶ ପ୍ରୀତି ଭିତରେ କିଛିଟା ସଂକୀର୍ଣ୍ଣତା ଥାଏ । ସଂକୀର୍ଣ୍ଣତାଟା କିଛିଟା ଅବପଟରେ ଜଗ୍ରତର ହିଂସାର ଜକାଣି ପ୍ରବାହ ହେତୁ ହୋଇଥାଏ ।

ଭାବିଲି ଯଥା ଓଡ଼ିଶା ତଥା ଭାରତ । ଆମର ଦେଶ ଜଗନ୍ନାଥ ଦେଶ । ସମସ୍ତ ଆସିବ ଯେତେବେଳେ ଜଗନ୍ନାଥ ପାଲଟେଇ ଦେବେ ଓଡ଼ିଶାର ଭାଗ୍ୟ, ତଥା ଭାରତର ତଥା ମାନବର ।

ଦତ୍ତାତ୍ରେୟାନନ୍ଦଜୀ ଦିନେ ଦୁଇଦିନ ଆଗରୁ ସେଠାରେ ପହଞ୍ଚି ଯାଇଥିଲେ । ଆମମାନଙ୍କ ସକାଶେ 'ନାଗେଶ୍ୱର ଓ କଚଖମ୍ବା' ଧର୍ମଶାଳାରେ ରହିବା ପାଇଁ ଜାଗା କରିଥିଲେ । ତଳେ ଗୋଟେ

କୋଠରୀରେ ମୋଟ ଛ ମିଶାଇ ଦୁଇଜଣ ରହିବା କଥା । କିନ୍ତୁ ସେ ଜାଗାଟା ଅପରିଷ୍କାର ହୋଇଥିବା ହେତୁ ସେ ଦଳର ତିନି ଜଣ ଅନ୍ୟମାନଙ୍କ ସାଙ୍ଗରେ ଉପରେ ରହିଲେ । ବରେଣ୍ଡିରେ ଗୁଡ଼ାଏ ଛାଲ, ଯନ୍ତ୍ରପାତି, ଦଉଡ଼ି, ତମ୍ବୁ, କାଠଚେଢ଼ି ଓ ଅନ୍ୟାନ୍ୟ ଗୁଡ଼ାଏ ଜିନିଷ ରଖା ଯାଇଥିଲା । ମୁଁ ଏକଲା ସେଠାରେ ରହିଲି ।

ତଳେ ଗୋଟିଏ ବଖରାରେ ଜଣେ ସାଧୁ ରହିଲେ । ସେ ବଖରାଟି ହେଲା ତାଙ୍କର ରନ୍ଧନଶାଳା ଓ ସେ ସାଧୁ ହେଲେ ସେମାନଙ୍କ ପାଚକ । ସେମାନଙ୍କର ରନ୍ଧାରନ୍ଧର ଯୋଗାଡ଼ ତଥା କ୍ରିୟା ଆରମ୍ଭ ହେଲା ।

ମୁଁ ଗୋଟାଏ ଚା ଦୋକାନରେ ସଗିଏ ହେବ ଅଳ୍ପ ତିନି ଅଣା ଦେଇ ଜଳଖିଆ କଲି ଓ ଗଡ଼ରେ ଛୁଟି ସକାଳେ ବଗିଚ ଦେଇ ଆସିଲି ।

ମୋର ବସେରେ ବସି କାଲିନଦୀ ଆରପଟେ ନେପାଳର ଗୋଟିଏ ପାହାଡ଼ ଦେଖିବାକୁ ପାଉଥିଲି । ଗଛପତ୍ର ଭିଡ଼ରେ ଭରି ରହିଛି । ଦୂରଦେଶରେ ଯାହା ସବୁ ନେଇ ଦେଖିଲି ତାହା ଥିଲା ଗାଢ଼ ନୀଳ ଓ ସବୁଜ । ଅଣି ଅଗରେ ଦପ୍ ଦପ୍ କରୁଥାଏ ଗାଢ଼ନୀଳର ଚୈତନ୍ୟମୟ ସତ୍ତା । ଖାଗୁଆ ବର୍ଣ୍ଣ ଜୀବନର ପ୍ରତୀକ । ମନେ ମନେ ଏହି ଜୀବନଭରା ସବୁଜମୟ ବନସ୍ପତିର ପୂଜା କଲି—

ଓଁ ଯୋ ଔଷଧୀଷୁ  
ଯୋ ବନସ୍ପତିଷୁ  
ତସ୍ମୈ ଦେବାୟ ନମୋନମଃ ।

ପାର୍ଥିବ ଅଙ୍ଗାର ସାହାଯ୍ୟ ନେଇ ମନକୁ ବ୍ରହ୍ମରେ ଲଗାଇବା ହେଉଛି ଧର୍ମ । ଏ ଧର୍ମ ହେଲା ଆର୍ଯ୍ୟଙ୍କର ।

ସନ୍ଧ୍ୟାବେଳେ ସେଠାକାର ହାଇସ୍କୁଲର ଅଧ୍ୟକ୍ଷଙ୍କ ପାଖକୁ ଯାଇଥିଲି । ଦରବାରଙ୍କର ଅନୁମତି ପତ୍ର ଦେଖାଇ ସାରି, ଅସ୍-କୋଟରେ ଧୂଆଁଯାଇଥିବା ଚିହ୍ନୋଟ ପତ୍ର ତାଙ୍କୁ ଦେଲି । ଚିରକୁଟ ଦେଖାଇ ଗୁଣ୍ଡି ହୋଇ ସେ କହିଲେ—'ଆପଣ ନୌବେଡ଼ ଫେର ଏ କଥା କହିବେ' । ମୋତେ ଖାସଣ ସନ୍ଦେହ ଚକ୍ଷୁରେ ଦେଖିଲେ । ସୁରାଅର୍କ (ସ୍ପିରିଟ୍) ଭରା ଶିଶି ମାଗିଥିଲି । ମନା କଲେ । ସେଠାର ବେତାର ଯନ୍ତ୍ର ଚଳାଇବା ପାଇଁ ଗୋଟିଏ ବାୟୁ ଚାଳିତ ବିଦ୍ୟୁତ୍ ଉତ୍ପାଦକ ଯନ୍ତ୍ର ଦେଖିଲି । କୌତୁହଳୀ ହୋଇ ତାର ଷ୍ଟ୍ରେ କେତେ ଭୋଲଟେଜ୍ ବୋଲି ପଚାରିବାରେ ୫୦ ଟପି ଦେଖାଇ ସବୁ ଦେଖାଇ ଥିଲେ । ହଦ୍ରାମି ରଖି ନମସ୍କାର କରି ଚାଲି ଆସିଲି ।

ନାଁ ଟା ତାଙ୍କର ଥିଲା ଜଗେଶ ସିଂ । ମୋର ନାଁ ପ୍ରତି ମୋର ଯେଉଁ ଆସକ୍ତି ଥିଲା ତୁଟିଗଲା ।

କିନ୍ତୁ, ବଡ଼ ଖୁସି ହୋଇଥିଲି ତାଙ୍କର କର୍ତ୍ତବ୍ୟ ପ୍ରତି ଉଗ୍ର ଅନୁରାଗ ଦେଖି । ସନ୍ଧ୍ୟାବେଳେ ଦଳେ ଲୋକ ଆସିଲେ । ସେମାନଙ୍କ ଭିତରେ ଜଣେ ଡାକ୍ତର ଥିଲେ । ବଙ୍ଗଳାର ଲୋକ । ଶ୍ରଦ୍ଧା ସହକାରେ ବଙ୍ଗଳାରେ କଥାବାର୍ତ୍ତା କଲେ ।

ରାତିରେ ଖାଇବା ପାଇଁ ସେଠିକୁ ଜଳଖିଆ ଦୋକାନକୁ ଗଲି । ଆହାର ରୁଚି କରି ନ ଥିଲା; କରିଥିଲା—ପାହାଡ଼ିଆ ଉପରର ପିଠୋଇ ହାଲ ମୋଟା ମୋଟା ପିଠା । ଟିକିଏ ପିଚ୍ଛିଳିଆ ଲାଗୁଥିଲା । ଖାଇବା

ପାଇଁ ଚେଷ୍ଟା କରୁଛୁ ଦୁଇଜଣ ଆସିଲେ । ଗୋଟିଏ କୋଣରେ
ଥିବା ଗୋଟାଏ ତମ୍ବାକୁ ତାଳ ଗଛରେ ଲେଖା ପଦ ଦେଖାଗଲା ।
କ ଜଳୁଛି ନେସ ଗନ୍ଧ ! ସମ୍ଭାଳ ହେଲା ନାହିଁ । 'ବ୍ରହ୍ମାର୍ପଣ ବ୍ରହ୍ମ
ହବି' ଇତ୍ୟାଦି ଏ... ଚଳିଲା ନାହିଁ । ଭୋଜନ କିମ୍ବା ସାଙ୍ଗ
କଲୁ । ପିଇବା ପାଣି ମାଗିଲି । ଧୋଇ କରି ସେ ଧାନ ପାତ୍ରରେ
ପାଣି ଦେଲା । ସେଥିରେ ମଧ୍ୟ ଗନ୍ଧ । ପାଣି ନ ପିଇ ଚାଲି ଆସିଲା ।
କେବଳ କୌତୁହଳ ଆଜ୍ଞ ଗୁଣ୍ଡି ଗୁଣ୍ଡି ଖାଇଥିଲି । ଭଗବାନଙ୍କର
ନିର୍ମମ ଦୟା !

## ଯୋଗାଡ଼—

ଏହି ଗର୍ବିୟାଙ୍ଗ ଠାରୁ ଆରମ୍ଭ ଅସଲ ଯାତ୍ରା । ଏଠାରୁ ରାହାରି
କୈଳାସ ଥରେ ଦେଖିକରି ଫେରି ଆସିବା ପାଇଁ ଘୋଡ଼ାଏ ଦିନ
ଲାଗିବ । ଏହା ହେଲା ଯାତ୍ରାର ଅଣ୍ଡାସ୍ତ ପର୍ଯ୍ୟାୟ ଏବଂ ଯାତ୍ରାପଥ
ପ୍ରସ୍ତୁତ ଓ ଯୋଗାଡ଼ ଏହି ଘୋଡ଼ାଏ ଦିନ ପାଇଁ । ଘୋଡ଼ାଏ ଦିନ
ମାନେ ପ୍ରାୟ ଦୁଇଶହ ମାଇଲ । ଏହି ସମ୍ବନ୍ଧରେ ଟଙ୍କା ବା ଅର୍ଥର
ଅତିରିକ୍ତ ବ୍ୟୟକୁ ଅପବ୍ୟୟ କୁହାଯିବ ନାହିଁ । ଉପଦେଶ ଦିଆ
ଯାଇଥିଲା ଯେ ତାହାଉପରେ ଟଙ୍କାର ମୂଲ୍ୟ ନଥାଏ, ଥାଏ କେବଳ
ଜୀବନର । ଟଙ୍କା ପାଣି ପରି ଖର୍ଚ୍ଚ ହେଉ କିନ୍ତୁ ଜୀବନ ଥାଉ ।
କିନ୍ତୁ ହିମାଳୟ ପାର କରି କୈଳାସ ଦର୍ଶନାଭିଳାଷୀର ଜୀବନକୁ
ପଞ୍ଚ ପଣ କରି ପ୍ରାଣ ମୂର୍ଚ୍ଛିବା କଥା । 'କର ବା ମର' ମନ୍ତ୍ରର
ନକଲ, 'ମଲେ ମରିବି' ଭାବରେ ଆଗେଇବା କଥା । ଶୁଣିଥିଲି
ମଣ୍ଡା ଛଡା ଆଉ ଶବ୍ଦେ କଷ୍ଟ ନାହିଁ । ସେହେତୁ ସେଥିପ୍ରତି
ସଜାଗ ଓ ଯତ୍ନବାନ ଥାଇ ଆଗ ରଖି ଆଗେଇବା କଥା ।

ପୂର୍ବ ଅନୁଭୂତି ହେତୁ ଏ ପର୍ଯ୍ୟନ୍ତ ସାହାଡ଼ ଥିଲ ଖାତ-ସାରେ । ଏହା ପରେ କିଛିଟା ଦୁଃସାହାସ ଦରକାର ହେଉପାରେ । କିନ୍ତୁ ଦୁଃସାହସର ସମ୍ମୁଖୀନ ହେବାକୁ ହେଲେ କିଛିଟା ଦୁସାହ-ଜନ୍ୟ ସତର୍କତା ଅବଲମ୍ବନ କରିବା କଥା । ସତର୍କତା ଅବଲମ୍ବନ ପୂର୍ବକ ଏ ଦଳଯାତ୍ରୀଙ୍କର ଯିବି ବୋଲି ନିଷ୍ପତ୍ତି କରିଥିଲି ।

ଏମାସର ଷୋଳଏ, ଏକୋଇଶ ଓ ବାଇଶ ଜୁନ—ଏପରି ପୂରା ତିନିଦିନ ରହିଲୁ ।

ପ୍ରଥମ ଦିନ ସକାଳେ ଗରମ ପାଣି ଗାଧୋଇ ଚଣ୍ଡୀପାଠ କଲି । ଚଣ୍ଡୀପାଠ ହେଲା ମୋହର ବୃଦ୍ଧାବାଣି; କାମ କରିବା ପାଇଁ ଉନ୍ମାଦନା ଆଣିଦଏ । ଯାତ୍ରୀ ଦଳଟି ଛୋଟ ଛୋଟ ହେଉଥାନ୍ତି । ଏକଲା ବସି ଧନପାଳ ଅନେକ ଶ୍ଳୋକ ଆବୃତ୍ତି କଲି । କାରଣ ବସିବାଠାରୁ କାଶିବା ଭଲ ।

ଭୟ ସେତେ ଉଚ୍ଚ ନ ଥିଲା । ଉଦ୍ଦେଶ୍ୟ ଆଉଗୋଟିଏ ମଧ୍ୟ ଥିଲା । ଦଳ ଭିତରେ ମୁଁ ଥାଏ ଏକ ମାତ୍ର ବ୍ରାହ୍ମଣ ଓ ଦେଖେଇ ହେଉଥାଏ ଭାରି ଧାର୍ମିକତା । କାରଣ ଏକଲା ଯିବାରେ ବିପଦ ଥାଏ । ଚୀନାମାନେ ସନ୍ଦେହ କରି ଗୁଳି କରିବେ ବା ଧରିନେଇ କାମରେ ଖଟାଇବେ, ଯିବାକୁ ଛାଡ଼ିବେନି । ପ୍ରକୃତି ଥଣ୍ଡା ଓ ବରଫଦ୍ୱାରା ତାର ଦାନ୍ତ ସାଧିବ । ତିବ୍ବତୀୟ ମାନେ ଖାଇବା ଚଢ଼ାଇ ନେବେ—ଇତ୍ୟାଦି । ସାହାସ ହେଉ ନ ଥାଏ ଏକଲା ଯିବାକୁ । ଏକୁଟିଆ ଯିବାଟା ବିଜ୍ଞତାର ଲକ୍ଷଣ ବୋଲି ଭାବୁ ନଥିଲି । ବଜାରରେ ଜଣେ ତିବ୍ବତୀୟ କହିଲା—'ଚାଲନ୍ତୁ ମୁଁ ଆପଣଙ୍କୁ ନେଇ ବୁଲାଇ ଆଣିବି ।' ମଙ୍ଗି ନଥିଲି । ତିବ୍ବତୀୟ

ବାସ୍ତୁହରା କଣ ? ତା ଉପରେ କଏ ନିର୍ଭର କରିବ ? ଆରପଟକୁ ଯାଇ ମୋତେ ବାସ୍ତୁହରା କରି ଦିଅଯିବ । ବଜାରରେ ଦଳେ ଉଦ୍‌ବାସ୍ତୁ ଓ ଦଳେ ସ୍ଥାନୀୟ ଲୋକଙ୍କ ଭିତରେ ବଚସା ଦେଖିଥିଲି । ଦୁଇପଟରେ ଅଶାନ୍ତି ଯାଇ ଏ ପଟକୁ ଫେରି ଆସି ନପାରେ । ସ୍ଥାନୀୟ ଲୋକଙ୍କୁ ଧରିନେବା ଭଲ ଯେହେତୁ ସେ ଏ ପଟକୁ ଫେରିବାକୁ ବାଧ୍ୟ । ଚଳନ୍ତି ସହଜ ଗଲେ ଭଲ । କାରଣ ଚଳନ୍ତିଯାକ ଏବାବେଳକେ ନିଶ୍ଚିନ୍ତ ହୋଇ ପାରିବେ ନାହିଁ । କିନ୍ତୁ ସେମାନଙ୍କର ଅଲଗା ବନ୍ଧ ।। ଭିକ ଯାଜ ନଥାଏ । ଦଶରଥ୍ୟାନନ୍ଦଜୀଙ୍କୁ କହିଲି—'ଏମା ଧର୍ମ୍ମାରର କଣ କରୁଛନ୍ତି ?'

ସେ କହିଲେ—"ଏହି ଧର୍ମଶାଳାର ମାଲିକ, ସେଠାର ସମସ୍ତଙ୍କ ଠାରୁ ବେଶି ଘୋଡ଼ାର ମାଲିକ, ଶ୍ରୀ କଟଖମା · ଚନ୍ଦ୍ରକାନ୍ତ ମାଇଚନ୍ଦ୍ର । ସେ ଆସିଲେ ଯିବାର ବନ୍ଦୋବସ୍ତ ହେବ । ଏମାନଙ୍କର ଜିନିଷପତ୍ର ବହୁତ । ଘୁଡ଼ାଏ ଘୋଡ଼ା ଦରକାର । ଦୁଇ ତିନି ଘୋଡ଼ା ମାଲିକଙ୍କୁ ନେବା ଅପେକ୍ଷା ଜଣକୁ ନେବା ସୁବିଧା-ଜନକ । ସେହେତୁ ତାର ଆସିବାକୁ ଅପେକ୍ଷା କରି ରହିବା । ଆମ୍ଭେମାନେ ଶୀତ ଓ ପତଳା ପବନ ସହିତ କିଛିଏ ଅଭ୍ୟସ୍ତ ହୋଇଯିବା ଦରକାର । ଖାଇବା ପିଇବାର ବନ୍ଦୋବସ୍ତ କରି, ଚଳିବା ଓ ରହିବା ପାଇଁ ଜିନିଷ ପତ୍ରର ଯୋଗାଡ଼ ଓ ସବୁବନ୍ଦୋବସ୍ତର ସୁବିଧା କରି, ପୂରା ପ୍ରସ୍ତୁତ ହୋଇ, ଶୀତ ଓ ପତଳା ପବନ ସହିତ ଧୀରେ ଧୀରେ ଅଭ୍ୟସ୍ତ ହୋଇ ଯିବାଟା ଶ୍ରେୟ" ।

କଟଖମା ଉପର ବେଳା 'ଲମ୍ବୁଲେଣ୍ଟ'ରୁ ଆସିଲ । କହିଲା:—

"ସେ ଗିରି ସଙ୍କଟରେ ବରଫ ନରମ ହୋଇ ଯାଇଛି । ପରିମାଣ ଅଳ୍ପ ହେଲେ ମଧ୍ୟ ଘୋଡ଼ା ଖୁରା ଦବିଯାଉ, ଯିବାରେ ବାଧା ସୃଷ୍ଟି କରୁଛି । ଘୋଡାମାନେ ଗ୍ଲାଲିଆ ହୋଇ ପଡିଛନ୍ତି । ସେମାନଙ୍କୁ ବିଶ୍ରାମ ଦରକାର । ମୋର ମଧ୍ୟ ପେଟର ବେମାର । ମୋତେ ବିଶ୍ରାମ ଦରକାର ଓ ଚିକିତ୍ସା ଦରକାର" ।

ସେ ଯିବା ପାଇଁ ମନା କଲା । ବୁଝାସୁଝା, ଯୁକ୍ତି ତର୍କ ଚାଲିଲା । କ୍ଷଣକରେ ଏମାନେ କୁହାବୋଲା କରି ଗାଳି ପକାଇଲେ । କଚ-ଙ୍ଗମା ତା ଜୀବନରେ ତେଇଶ ଥର କୈଳାସ ଯାତ୍ରା କରିଛି ବୋଲି ଶୁଣିଲି । ମହୀଶୂରର ମହାରାଜାଙ୍କୁ ମଧ୍ୟ ସେ ବାଟ ଦେଖାଇ ନେଇଥିଲା । ପ୍ରଣବାନନ୍ଦ ସ୍ୱାମୀଙ୍କ ସହିତ ମଧ୍ୟ ସେ ଅନେକ ଥର ଯାଇଛି । ବହିରେ ତାର ନା ଓ ଫୋଟ ଛପାଇବା ପ୍ରଶଂସାପତ୍ର ଦେଖାଇବାରୁ ସେ କହୁଥିଲା ଯେ ଏପରି ବହୁତ ବହି ଛପା ଯାଇଛି ଓ ବହୁତ ବଡ଼ ଲୋକଙ୍କ ସାଙ୍ଗରେ ସେ ଯାଇଛି । ସେଥି ପ୍ରତି ତାର ଆଉ ଆଗ୍ରହ ନାହିଁ । କଥାଟାକୁ ଭୁଲ ନ ବୁଝିବାକୁ କହୁଥିଲା ।

ସେ କହିଲା ଯେ ଯାତ୍ରା, କେତେ ଓ ଯେଉଁ ପ୍ରକାରର ପ୍ରସ୍ତୁତ ହୋଇ ଆଉନା, କାହିଁକି ପ୍ରତ୍ୟେକଙ୍କର ରହିବା ପାଇଁ ତମ୍ବୁ, ଘୋଡ଼ାଇ ହେବା ପାଇଁ ଥୁଲ୍ମା ଓ ପାଚିବା ପାଇଁ ଷ୍ଟୋଭଗ୍ଯାସ ନିହାତି ଦରକାର । ଏ ସବୁ ସେ ଭଡ଼ାରେ ଯୋଗାଇ ପାରିବ । ଅବ ଯାତ୍ରୀମାନେ ସମସ୍ତେ ଗୋଟିଏ ତମ୍ବୁ ତଳେ ରହିବାକୁ ଚାହୁଁ ଥିବାରୁ ଓ ଏତେ ବଡ଼ ତମ୍ବୁ ତା ପାଖରେ ନ ଥିବାରୁ, ସେ ବନା ଭାଡ଼ି ତମ୍ବୁ ସିଲେଇ କରିବାରେ ଲାଗିଲା ।

ମୋ କଥା ଶୁଣାଇବାକୁ କହନ୍ତୁ — କେଜାଣେ କପିଳ ହୋଇଲ ଚଳପିଚ ।

ଭକ୍ତ ଶୀଘ୍ର ହେଉ ମୁଁ ଗୋଟିଏ ଟୁଲ୍‌ପା ଆଗକୁ ନେଇ ନେଲ ।

ଦୁଇଓଳା ଖାମୀର ସ୍ତ୍ରୀ ରୁହି ଚଳୁଦଏ । ଯାହା ଅଟା ଲଗିଗା କଥା ତାହା ତାହାଠାରୁ ଜାଣି ତାକୁ ଦେଇଦଏ । ତାର ବ୍ୟବସାୟ ବୁଦ୍ଧି ବଡ଼ ପ୍ରଖର । କିନ୍ତୁ ଚୁଲ ପାଖରେ ମାତ୍ର ହୃଦୟା । ସକାଳ ଏକ ସାମାନ୍ୟ କରୁ ଦେଇ ତାଠାରୁ ଗାଧୋଇବା ପାଇଁ କିଛିଣ ଗରମ ପାଣି ପାଇଯାଏ ।

ସେଠାରେ ବାସନ ମାଜିବା ପାଇଁ ପାଣି ବ୍ୟବହାର ହୁଏ ନାହିଁ । ଚଢ଼ ଗଛରୁ ଝଡ଼ି ପଡ଼ିଥିବା ଝାଉଁଗଛ ଭଳ କାଟି ପତ୍ର ସାହାଯ୍ୟରେ ବାସନ କୁସନ ମଜାଯାଏ, ନିର୍ମଳ କରାଯାଏ ଓ ଯୋଗ୍ଣମାଏ ।

ଦ୍ୱିତୀୟ ଦିନ ସକାଳେ ଗାଧୋଇ, ପୂଜାପାଠ କରି, ଦୁଧ ଓ ବିସ୍କୁଟ ଜଳଖିଆ କରି ଦତ୍ତନସ୍ତ ନନ୍ଦଜୀଙ୍କ ଆମନ୍ତ୍ରଣ କ୍ରମେ ତାଙ୍କ ସାଥିରେ କାଳୀ ନଦୀକୁ ଗଲି । ସେ ସେଠାରେ ସ୍ନାନ ସାରି, ଜପ, ଧ୍ୟାନ କଲେ ।

ଆଉ ମୁଁ ନଦୀ ତଟର ଗୋଟିଏ ବଡ଼ ପଥର ଉପରେ ଉପବିଷ୍ଟ ହୋଇ ଏକ ଧ୍ୟାନରେ ନିରେଖି ରହିଁ ରହିଥିଲି ସେ କାଳୀ ନଦୀର ସୁନ୍ଦର ପ୍ରବାହକୁ । ହିମାଳୟର ଉତ୍ତୁଙ୍ଗ ଶିଖରରେ ଜମି ରହିଛି

ଅନନ୍ତ ଭ୍ରମର ସୃଷ୍ଟି । ତପନର ତାପ ତାକୁ ତରଳାଇ ଦିଏ ବିନ୍ଦୁ କରି । ବିନ୍ଦୁ ବିନ୍ଦୁ ଜଳ ଟପ୍ ଟପ୍ କରି ଖସି ଗଡ଼ି ଚାଲନ୍ତି ତଳକୁ । ଏମିତି ଅନେକ ସହସ୍ର ମିଶି ସୃଷ୍ଟି ଗଢ଼ି ଅନେକ କ୍ଷୀଣ ଗୋଟିଏ ଧାରା । ଜଳଧାରା ଗୁଡ଼ିକ ଉଚ୍ଛୁଳି ମାଡ଼ି ଚାଲି ସଙ୍କୀର୍ଣ୍ଣ ହୁଅନ୍ତି ଝରଣାରେ । ଝରଣାର ଜଳ ବଢ଼ି ବଢ଼ି ତଳକୁ ଖସି ପ୍ରବାହିତ ହୁଏ ସ୍ରୋତ । ସ୍ରୋତ କ୍ରମଶଃ ପରିପୁଷ୍ଟ ହୋଇ ପ୍ରବାହିତ ହୁଏ ଏକ ନଦୀ । ନଦୀର ଶେଷର ମୂଳ ସାକ୍ଷୀ ରୂପେ ଉପସ୍ଥାପିତ, ଶାୟିତ ଓ ଦଣ୍ଡାୟମାନ ଭିନ୍ନ ଜ୍ୟାମିତିକ ଢଙ୍ଗର ପ୍ରସ୍ତର ଖଣ୍ଡ । ନଦୀ ମଧ୍ୟ ବିଭିନ୍ନ ଜ୍ୟାମିତିକ ଢଙ୍ଗରେ ଅଙ୍କା ବଙ୍କା, ମୋଡ଼ି ବାଙ୍କି ବା ଠାଏଁ ଠାଏଁ ସିଧା ସଳଖ ଭାବରେ ଗତି କରୁଥାଏ । ଏହି ନିଷ୍କ୍ରିୟ ମୂଳ ସାକ୍ଷୀ ଜ୍ୟାମିତିକ ଆକାର ଗୁଡ଼ିକ ନେଇ ସ୍ରୋତର ଗତିଶୀଳ ଶକ୍ତି ଦ୍ୱାରା ସର୍ଜନା ହୁଏ ନାନା ପ୍ରକାର କ୍ରୀଡ଼ାଶୀଳ ରୂପ—ଫେଣ, ବୁଦ୍ବୁଦ୍, ଭଉଁରୀ, ଲହଡ଼ି, ଖାଲୁଆଧାର, ଦ୍ରୁତଧାର, ନିମ୍ନଗାମୀ ସ୍ରୋତ ଓ ଜଳପ୍ରପାତ ଇତ୍ୟାଦି । ଏମାନଙ୍କ ଭିତରୁ କେତେକ ସେହି ମାଡ଼ି ନଉଥିବା ସ୍ରୋତର ଦେହରେ ପ୍ରବାହିତ ହୋଇ କାଳାନୁକ୍ରମେ ବିଲୋପ ଲଭନ୍ତି ଓ ସେହି ଅନୁପାତରେ ତାଙ୍କର ଉତ୍ପତ୍ତି ସ୍ଥଳରୁ ଅନୁରୂପ ସର୍ଜନା ଚାଲିଥାଏ । ଅନ୍ୟ କେତେକଙ୍କର ସ୍ଥିତି ସ୍ଥାୟୀ ଥାଏ । ଏମାନେ ସବୁ ବିଲୋପ ପାଉଥିବା ରୂପଗୁଡ଼ିକର କାରଣ ହୋଇଥାନ୍ତି । କିନ୍ତୁ ମୂଳ କାରଣ ଥାଏ ଜ୍ୟାମିତିକ ଆକାର ଗୁଡ଼ି-କର ପ୍ରଖର ନୂଆ ସହିତ ସଂଯୋଗ । ଭସି ଭସି ଆସେ ଗୋଟେ ଗୋଟିଏ ଭେଳା । ବୁଲିପଡ଼େ, ଘୂରିଯାଏ, ଡେଇଁପଡ଼େ, ପଡ଼ିଯାଏ, ଚକାଚକେ, ବୁଡ଼ିଯାଏ, ବାହାରି ପଡ଼େ, ଅଟକିଯାଏ ଓ ସେଠାରେ ଧୀରେ ଧୀରେ ଠେଲି ଖାଇ ଫେରେ ଭସିଯାଏ ।

ଜଳକଣା ଗୁଡ଼ିକର ଧର୍ମ ହେଲା ହିମାଳୟର ଅନନ୍ତ ଭୂମିର ଗ୍ରୀଷ୍ମରୁ ଛାଡ଼ ପାଇବାର ମହୋଦଧିର ମହାର୍ଣ୍ଣବରେ ଲୀନ ହେବା ଓ ସେହି ଲକ୍ଷ ନେଇ ସେମାନେ ତୀବ୍ର ଧାବମାନ—ମାଧ୍ୟାକର୍ଷଣ ଶକ୍ତିର ବଳରେ ।

ଏ ହେଲା ସେହି ମହାକାଳୀର ସ୍ରୋତର ସୃଷ୍ଟି ଓ ଖେଳ । ଯେତେବେଳେ ଜଳର ପ୍ରବାହ ବନ୍ଦ ହେବ, ଏହି ଖେଳ ଓ ଗର୍ଜନା ବନ୍ଦ ହେବ । ଏ ହେଲା ବିଜ୍ଞାନ ।

କାଲି ଆସିବ ଯେତେବେଳେ ହିମାଳୟର ଏହି ଜଳ ପ୍ରବାହ ଗୁଡ଼ିକ ସାରା ଭାରତକୁ ବିଦ୍ୟୁତ୍ ଶକ୍ତି ଯୋଗାଇବ ।

ଦତ୍ତାତ୍ରେୟାନନ୍ଦଜୀ ମୌନବ୍ରତ ପାଳନ କରୁଥାନ୍ତି । ଫେରିଲା ବେଳକୁ ବାଟରୁ ଦେଖା ଯାଉଥିବା ଅର୍ଦ୍ଧବର୍ତ୍ତୁଳ ଗୋଟାଏ ବରଫାବୃତ ଶୃଙ୍ଗକୁ ଦେଖାଇ ପାରିଲେ । କହିଲି—'ଲିଙ୍ଗ ଆକାରରେ ଅଛି" । ଅନୁମୋଦନ କରି ହସିଲେ । ପରେ ସେ କହିଥିଲେ ଯେ ତାକୁ ଗର୍ବିସ୍ୱାଙ୍ଗ କୈଳାସ କହନ୍ତି । ଶୀତ ଉପାନ୍ତ ହେଲେ, ସେ ପଥକୁ ଯିବା ବନ୍ଦ ହୋଇଗଲେ ଲୋକେ ସ୍ୱାକୁ ପୂଜା କରିବାକୁ ଆରମ୍ଭ କରିବେ ।

•

ଗୁଜରାଟ ଦଳର ଯେ ପୁରୋଧା ତାଙ୍କର ଡାକ ନାମ ଥିଲା ସେଠଜୀ । ସେଥିରେ ସେହି ବୃଦ୍ଧ ଯାହାଙ୍କୁ ମୁଁ 'ବୁଢ଼ୀ' ପୂର୍ବରୁ ଭେଟିଥିଲି । କଟଖମ୍ଭା ଖୁବ୍ ଆଦର ଓ ଖାତିର କରି ତାଙ୍କୁ ସେହି ନାମ ଦେଇଥିଲା । ବଜାରରୁ ଫେରିଲା ସମୟରେ ସେ ମୋତେ

ହାଟରେ ଦେଖି ପଚାରିଲେ—'ତୁମେ ଭୁମର କଣ ବନ୍ଦୋବସ୍ତ କରିଛ' ? କହିଲି—'ତୁମ ସାଙ୍ଗରେ ଅଧା ମହଣର ଡାମ ଦେଇ ମୁଁ ଯିବି' ।

ସେ ମନା କଲେ, କହିଲେ—'ତାହା କପରି ହେବ ? ଜଣେ ସେଠାମ ସ୍ୱାମୀ ଆସିଛନ୍ତି ତା ସାଙ୍ଗରେ ମିଶାଅ' ।

ବୋଧହୁଏ ସେ ସେତେବେଳେ ଭାବିଥିଲେ ଯେ ମୁଁ ତାଙ୍କର ଗୋଡ଼ାଣିଆ ହୋଇଛି, ଗୋଡ଼ାଣିଆ ହୋଇ, ବୋଝ ହୋଇ ଫାଇଦା ଉଠାଇବାକୁ ଚାହୁଁଛି । ମୁଁ କେବଳ ସେ ଦଳର ସାନିଧ୍ୟ ଚାହୁଁଥିଲି । ଦଳର ଭାଗିଦାର ହେବାକୁ ଚାହୁଁ ନଥିଲି ।

ସନ୍ଧ୍ୟାବେଳେ ସେ ସ୍ୱାମୀ ଆସିଲେ । ତାଙ୍କର ନାମ ସହଜା-ନନ୍ଦ ସ୍ୱାମୀ । ସହଜ ପ୍ରଣାଳୀରେ ସାଧନା କରୁଥିବା ହେତୁ ସହଜାନନ୍ଦ ସ୍ୱାମୀ । ଗୁରୁ କେରଳର ରାମଦାସ ବାବା । ଦୟାନନ୍ଦସ୍ୱା-ନନ୍ଦଜୀ ମଧ୍ୟ ଆମ ପାଖରେ ଆସି ବସିଲେ । କଥାବାର୍ତ୍ତା ହେଲା । ଦୁଇଜଣ ଗୋଟିଏ ଘୋଡ଼ା କରି, ଗୋଟିଏ ତମ୍ବୁ ମିଶିକରି ଭଡ଼ା ନେବାକୁ ଠିକ୍ କଲୁ ।

ସେ ସେଠାରୁ ରାମଦାସ ବାବାଜୀ ଓ ସେଠ୍‌ଜୀଙ୍କୁ ଅନ୍ୱେଷଣ କରି-ବାକୁ ଲାଗିଲେ । କଥାଟା ଧିରେ ଧିରେ ବୁଝିଲି । କଥା କଣହେଲା କି ଏମାନେ ସମସ୍ତେ ଅଲମୋଡ଼ାରେ ରହିଛନ୍ତି । ରାମଦାସ ବାବାଜୀ ରାନ୍ଧୁଣିଆ ସାଜନ୍ତି । ଦୟାନନ୍ଦଜୀ ଦଳର ପରିଚାଳକ ହୋଇଛନ୍ତି । ସେ ଦଳଟା ଯାକର ବ୍ୟବସାୟୀ, ବ୍ୟୟସାପେକ୍ଷ ହେତୁ ସହଜା-ନନ୍ଦ ସ୍ୱାମୀଙ୍କୁ ଦଳରେ ମିଶାଇ ନଥିଲେ । ସେମାନେଇ ଆଜ

ଅନୁଛେଦ ଖୋଲି ନାହାନ୍ତି । ସଚ୍ଚିଦାନନ୍ଦ ସ୍ୱାମୀ ଔଷଧ ପତ୍ର ବିଷୟରେ ଅନେକକଥା ଜାଣନ୍ତି । ଏମାନଙ୍କ ଆଗରେ ତାଙ୍କର ନୈଷ୍ଠିକ ଗୁଣକୁ ବାନ୍ଧି ବସିଥିଲେ । ଏମାନେ ମନା କରୁଥିଲେ । ଯେ ସେଠୁ ଯାଇ ସ୍ୱାକୁ ତାକୁ ଧରାଧରି କରି, କିନ୍ତୁ ଠେଙ୍ଗା ଯୋଗାଡ଼ କରି ଆସି ପହଞ୍ଚିଛନ୍ତି ଓ ନିଜର ବାହାଦୁରି ଦେଖାଉଛନ୍ତି ଯେ ସେ ନିଜେ କୈଳାସ ଯିବା ପାଇଁ ପ୍ରସ୍ତୁତ । ସେ ମୋ ସାଙ୍ଗରେ ଖୁବ୍ ମିଳାମିଶା ଭାବରେ କଥାବାର୍ତ୍ତା କଲେ । ଦୁଇଟା ଥିଲା ସନ୍ଧ୍ୟା କି ସେପରି ସେ ମୋର ପୂର୍ଣ୍ଣ ତତ୍ତ୍ୱାବଧାନ ନେଇ ପାରିବେ । ତାଙ୍କର ଘର କେରଳରେ । ସେହେତୁ ଓ ଯେହେତୁ ସେ ଧର୍ମ ଜାଣିନ୍ତି ତାଙ୍କର କମ୍ୟୁନିଜମ ପ୍ରତି ପ୍ରଗାଢ଼ ଶ୍ରଦ୍ଧା ଅଛି । ସେ ଜଣେ କମ୍ୟୁନିଷ୍ଟ ।

ଓଡ଼ିଶା ଏତେ ଗରିବ ଦେଶ ହୋଇ ମଧ୍ୟ କମ୍ୟୁନିଜମର ପ୍ରଭାବରେ କାହିଁକି ଆସି ନାହିଁ ବୋଲି ପଚାରୁଥିଲେ । ପ୍ରଶ୍ନ ଭିତରେ କିଛିଟା ଆକ୍ଷେପ ଥିଲା ଭଳିଆ ଲାଗିଲା । ଉତ୍ତରରେ ମୁଁ କହିଥିଲି ଯେ ଯେଉଁଠି ଦୁର୍ନୀତି, ଦୁରାଗ୍ରହ, ଦଗାବାଜିର ବ୍ୟାପକତା ହେତୁ ଅସନ୍ତୋଷ ଓ ଅତୃପ୍ତି ଖେଳି ଯାଇଥାଏ ସେଠାରେ ତାର ପ୍ରଭାବ ପଡ଼େ । ଅନ୍ୟଥା ନୁହେଁ । ଅଭାବର ପୂରଣ ଭାବରେ ଘଟିଥାଏ, ବିଷୟ ଭୋଗରେ ନୁହେଁ । ଭାବ ଆସିବ ସ୍ୱଭାବରୁ । ଅଭାବ ଥିଲେ ସ୍ୱଭାବ ବଦଳାଇବା ଦରକାର । ଲୋକେ ଗୁଣ ଅନୁଯାଇ ଆଗ୍ରହର ପନ୍ଥା ତଥା ଜୀବନ ଦର୍ଶନ (ଧର୍ମ) ଆଦରନ୍ତି । ଉଦାହରଣ ସ୍ୱରୂପ କମ୍ୟୁନିଜମର ପ୍ରଭାବ ପଡ଼ିଥିବା ଯେ କୌଣସି ଜାଗା ନେଇ ପାରନ୍ତି ବୋଲି କହିଥିଲି । ଯେଉଁଠି ମଇଳା ପାଣି ଜମିଛି ସେଠି ମଶାର ପ୍ରାଦୁର୍ଭାବ ବଢ଼ିଛି । ଏ ହେଲା ଦାର୍ଶନିକ ପଣ୍ଡିତଙ୍କ ମତ ।

କିଛି ସମୟ ସେଠାରେ ଅନୁଧ୍ୟାନ କରି ରହିଁ ରହିଲେ ।

ଦେଖିଲି ଭୃତ୍ୟ ଦଳ ସଜାଲେ ମୋହନ ସିଂ ଗାଡ଼ିବାଲାଙ୍କ ଘରକୁ ତଥା ଦୋକାନକୁ ଯାଇ ଏକ ସେର ଛଣା ସୋଲଚଣା ଟଙ୍କାଏ ଗୁଡ଼ାଏ ଦେଇ କିଣିଲ । ସେ ଦେବଚନ୍ଦ୍ର ସେଠାଙ୍କର 'ନଗର ଶେଠ୍' । ଉଭୟର ତାଳକୋଟରେ ଓ ଧାରଚୁଲରେ ମଧ୍ୟ ତାଙ୍କର ଦୋକାନ ଅଛି । ଧାରଚୁଲର ଦୋକାନ ଖୁବ୍ ବଡ଼ । ଯାତ୍ରୀ ଦେଖି ଦରକାର ଅନୁଯାଇ ସବୁ ପ୍ରକାର ସାହାଯ୍ୟ କରନ୍ତି— ଟଙ୍କା ପଇସା ମଧ୍ୟ । ଗସ୍ତାରେ ତାଙ୍କର ନାଁ ଶୁଣିଥିଲି । ଅନ୍ୟ ଯାତ୍ରୀ-ମାନେ ମଧ୍ୟ ସାଙ୍ଗରେ ଥିଲେ ।

ସନ୍ଧ୍ୟାବେଳେ ଏଠୁ ସେଠୁ ଗୋଟିଏ ଗୁମଚ—ନ' ଅଣା, ତେର ଛଟାଙ୍କି ଘିଅ—ଗୁଡ଼ାଟଙ୍କା ଚଉଦ ଅଣା, ଅଧାସେର ଚିନି— ଏକ ଟଙ୍କା ଦୁଇଅଣା ଓ ଦୁଇ ଛଟାଙ୍କି ଗୁଆ—ଏକ ଟଙ୍କା ଦେଇ କିଣିଲି ।

ଗୁଆ ଚୋବାଇବା ମୋର ଅଭ୍ୟାସ । ଖାଇବା ପରେ ଗୁଆ ଚୋବାଇଲେ ତୃପ୍ତି ଲାଗେ । ଖାଦ୍ୟ ଅଖାଦ୍ୟ ଜଣାଯାଏ ନାହିଁ । ଟିକିଏ ନିଶା ପରି ଲାଗେ । ଯାତ୍ରାରେ ଗୁଆ ଚୋବାଇବା ଭଲ ବୋଲି ଶୁଣିଥିଲି । ଦାନ୍ତ ନିର୍ମଳ ରହେ, ବାଟ ସରେ ।

ଗର୍ବିୟାଙ୍ଗ ଦେଖିଛି ସେ ବାଟରେ ଭାରତର ସୀମାନ୍ତ ଗ୍ରାମ । ଗୋଟିଏ ଡ଼ାକଘର ଅଛି । ସେଠାକୁ ଯାଇ କର୍ମକ୍ଷେତ୍ରର ଜନୈକ ବନ୍ଧୁଙ୍କ ପାଖକୁ ପତ୍ରଲେ ପରେ ପରେ ମୋର ଛୁଟି ସମୟର ବେତନ ପଠାଇବାକୁ ଲେଖିଲି, ଯେପରି କି କୈଳାସରୁ ଫେରିବା ପରେ

ପଟରେ ବିଳମ୍ବ ନ ହୋଇଣ ପାରିବାରେ । ଆମେମାନେ କୈଳାସରୁ ଫେରିଆସିବାର ତାରିଖ ଅତଃପର ଫେରିବାର ଥିଲ । ସ୍ଥିର କରିଥିଲି ଯେ ଠିକ୍ ସେହି ସମୟରେ ଟଙ୍କା ପହଞ୍ଚି ଯିବ । ଯଦି ଆଗରୁ ଆସେ, ଅଟକାଇ ରଖିବାକୁ ଡାକ ବାବୁଙ୍କୁ ଲିଖିତ ଆକାରରେ ଅନୁରୋଧ ଜଣାଇ ଥିଲି ।

ଘରକୁ ଏବଂ ଅନ୍ୟାନ୍ୟ ଶୁଭେଚ୍ଛୁ ଓ ହିତାକାଂକ୍ଷୀ ବନ୍ଧୁ, ଆତ୍ମୀୟ ସ୍ୱଜନ ପାଖକୁ ଆଜ କେତୋଟା ଚିଠି ଲେଖିଥିଲି । 'ଏ କଥା ସମସ୍ତେ ଜାଣନ୍ତୁ ଯେ ମୁଁ ହିମାଳୟ ପାର ହେବା ଉପରେ'—ଏହି ଭାବ ରଖି ଚିଠି ଗୁଡ଼ିକ ଲେଖିଥିଲି ।

ରାତିରେ ଚୁଲି ପାଖରେ ବସି ରାମଦାସ ବାବାଜୀ, ଦତ୍ତାତ୍ରେୟାନନ୍ଦଜୀ ଓ ଭଗବତ୍‌ଜୀଙ୍କ ସାଙ୍ଗରେ କଥାବାର୍ତ୍ତା ହେଉଥିଲି ।

ଭଗବତ୍‌ଜୀ ପଚାରିଲେ—'ତୁମେ କଣ ଘୋଡ଼ା କରି ବସି ଯିବ' ?

କହିଲି—'ନା' ।

ସେ କହିଲେ—କାହିଁକି ?

ମନେ ହେଲା, ସେ ମୋ ପାଖରୁ କିଛି ଶୁଣିବାକୁ ଇଚ୍ଛା କରୁଛନ୍ତି ଅଥଚ କାରଣଟା ଜାଣନ୍ତି । ବୋଧହୁଏ ମୋର ପଇସା କମ୍ ବୋଲି କହିବି—ଏହି ଅନୁମାନ ।

କହିଲି—'ତୀର୍ଥ ଦର୍ଶନ କରି ଆସିଛି, ପଦଯାତ୍ରା ହିଁ ମୋର କାମ୍ୟ । ଅଥଚ ମୋପାଖରେ ସେତେ ବେଶି ପଇସା ନାହିଁ ମୋର

ନିଜର ସାମର୍ଥ୍ୟ ଅନୁଯାୟୀ ନେବା ପାଇଁ ଯଥେଷ୍ଟ ଅଛି । କିଏଣ୍ଟ ପଡ଼ିଲେ ଉର୍ମିଷ୍ଟେରୁ ମଗାଇ ନେବ ।

ଦତ୍ତାତ୍ରେୟାନନ୍ଦଜୀ କହିଲେ ଯେ ସେ କୈଳାସ ଓ ମାନସରୋ-ବରରେ ମନ ଇଚ୍ଛା ବୁଲିବେ । ଉଙ୍ଗୀଠା ଥିଲା ଭଗବତ୍ ନିଶାରେ ମାତାଲ୍ ହୋଇ ବୁଲିବେ । ତୀର୍ଥପୁରୀ ଯିବେ । ତୀର୍ଥପୁରୀ ବଦ୍ରିନାଥ-କୈଳାସ ରାସ୍ତାରେ ପଡ଼େ—ଆମର ରାସ୍ତାର ପଶ୍ଚିମ ଦିଗରେ । ସେଠାରେ ଭସ୍ମାସୁର ଭସ୍ମ ହୋଇଥିଲା ବୋଲି କଥିତ ଅଛି । ସେ ହାଁସଦ୍ରୂନ ମହାତ୍ମାଙ୍କର କିଛି ଅନୁଭୂତ ବଖାଣିଲେ । ରାମଦାସ ଗୋଡ଼ାଜୀ କହିଲେ ଯେ କୈଳାସ ଯାଇ ଫେରିବା ବଡ଼ କଷ୍ଟକର, ସହଜ ନୁହେଁ । ମୁଁ କହିଲି ଯେ କେଦ୍ୟାତିର୍ମୟ ଲିଙ୍ଗରେ ଲୀନ ହେଲେ ଦୁଃଖ ନାହିଁ ।

ସେ ଦିନ ଥିଲା ଜୁନ ତେଇଶି ତାରିଖ, ଶୁକ୍ରବାର । ସକାଳ ହେଲା । ଅଠରଟି ଘୋଡ଼ାକୁ ଆଣି ଧର୍ମଶାଳା ଆଗରେ ଠିଆ କରାଗଲା । ଧୂମଧାମ ଓଜନ କରାଗଲା । ହିସାବ କରାଗଲା ।

କଚେଖମା କହିଲା—ଦେଖ, ତୁମ ପାଇଁ କିଛି ଅଟା ଓ ଗୁଡ଼ଜଳ ନେବାକୁ ହେବ । କିଛି ଗରମ ଗରମ ଖାଇବାଟା ଅନ୍ୟ ବନ୍ଦୋ-ବସ୍ତ ଅପେକ୍ଷା ଭଲ । ଆମେମାନେ ତୁମ ପାଇଁ ଆମର ଖାଇବାଟା ସଙ୍ଗେ ରାନ୍ଧିଦେବୁ । ଯେବ ଅବସ୍ଥା ଯେମନ୍ତ ହୁଏ, ଯାହା ତାର ଅବସ୍ଥା କଣ୍ଡାଗ୍ରତ ଓ କିଏ କାହାକୁ ସାହାଯ୍ୟ କରି ପାରିବ ନାହିଁ । ନିଜେ ପ୍ରସ୍ତୁତ ରହିବା ଉଚିତ । ଅନ୍ୟ ଉପରେ ନିର୍ଭର କରିବା ଭଲ ନୁହେଁ ।

ସ୍ୱଭାବ ବୁଝି ସାରି ମଙ୍ଗିଗଲି । ପାଞ୍ଚସେର ଅଟା ଓ ପାଞ୍ଚସେର ଚାଉଳ ଅଧିକା ଲଦାଗଲା । ଚାଉଳ ଥିଲା ପାହାଡ଼ିଆ ନାଲି ଚାଉଳ । ଗୋଟିଏ ତମ୍ବୁ, ତାର ଓଜନ ଥିଲା ଷୋହଳ ସେର । ତାହା ସହଜାନନ୍ଦ ସ୍ୱାମୀ ଓ ମୋ ପାଇଁ ଉଦ୍ଦିଷ୍ଟ । ଦୁଇ ଜଣଙ୍କର ଭାଗରେ ପଡ଼ିଲା ଆଠସେର ଲେଖାଏଁ । ଘୋଡ଼ାଏ ଧନ ପାଇଁ ସେହି ବସ୍ତୁ ଘରର ଭଡ଼ା ହେଲା ଷୋହଳ ଟଙ୍କା । ଆମ ଦୁଇ ଜଣଙ୍କର ଭାଗରେ ପଡ଼ିଲା ଆଠଟଙ୍କା ଲେଖା । ଟୁଲ୍‌ମାଟିର ଭଡ଼ାହେଲା ସାଢ଼େ ପାଞ୍ଚ ଟଙ୍କା । ଗୋଟିଏ ଛୋଟ ଛାଲ, ଯାହାକୁ କହନ୍ତି 'ଖାଲ' ତାର ଭଡ଼ା ହେଲା ତିନିଟଙ୍କା । ତମ୍ବୁ ତଳେ, ମାଟି ଉପରେ, ଛାଲ ପକାଇ, କମ୍ବଳ ବିଛାଇ, ଟୁଲ୍‌ମା ଘୋଡ଼ାଇ ହୋଇ ଶୋଇବାକୁ ହେବ । ଅଟାରେ ରୋଟି ହେବ, ଚାଉଳରେ ଖେଚଡ଼ି ହେବ । ପାହାଡ଼ରେ ଅରୁଚି ଧରେ । ଯିଏ ଯାହା ଅନ୍ୟ ଜିନିଷ ଧରିଛନ୍ତି ତଣ୍ଟି ଭିତରେ ଗଳେଇବାକୁ ସାହାଯ୍ୟ କରିବ । ବନ୍ଦୋବସ୍ତଟି ମୋଟାମୋଟି ସୁନ୍ଦର ଓ ନିର୍ଭୁଲ । ମୁଁ ମୋର ପାଇଜାମା, ଗଞ୍ଜି, କମିଜ, ପେଣ୍ଟ, ଛତା, ଚଡ଼ ଡ଼ାଏରି, ଗୀତା, କନ୍‌ଭସ ଯୋତା, କୋଟ ଇତ୍ୟାଦି ବାନ୍ଧି ଝମ୍ପାଘରେ ରଖିଦେଲି । ସାଥିରେ ଗୋଟେ ଛୁଣ୍ଡା ବର୍ଷାତି ଝମ୍ପାଠାରୁ ନେଇଥିଲି । ଛୁଣ୍ଡାଥିବା ହେତୁ ତା ପାଇଁ ଭଡ଼ା ଦେବାକୁ ପଡ଼ି ନ ଥିଲା । ମୋର ସମୁଦାୟ ଜିନିଷର ଓଜନ ହେଲା ଏକ ମହଣ । ମାନେ—ଅଟା, ଚାଉଳ ଓ ମୋର ଭାଗର ତମ୍ବୁର ଓଜନ ଛାଡ଼ିଦେଲେ ବାକି ସବୁର ଓଜନ ହେଲା ବାଇଶି ସେର । ପ୍ରତ୍ୟେକ ଘୋଡ଼ା ଉପରେ ଦେଢ଼ ମହଣ ଓଜନ ଲଦାଯାଏ ଓ ପ୍ରତ୍ୟେକ ଘୋଡ଼ା ପିଛା ଛଅ ଟଙ୍କା ଭଡ଼ା ନିଆଯାଏ । ଅର୍ଥାତ୍ ମୋତେ ଦୈନିକ ଚାରିଟଙ୍କା ଦେବାକୁ ପଡ଼ିବ । ମୋଟ ଉପରେ ଅଣିଏ ଟଙ୍କା । ଦେଖିଲି ବିଶେଷ କିଛି ନୁହେଁ ।

ଅଟା ଓ ଗୁଡ଼ଙ୍କର ପଇସା ଦେଇଦେଲୁ ।

ସେଟ୍‌ଜୀ ନେପାଳର ପାହାଡ଼ରୁ ଆସି ଯାଇଥିବା କିଛି ବସ୍ତ୍ର-ଖଣ୍ଡ, ଥୋଲା ନବେ ଟଙ୍କା ହିସାବରେ, ଅଧଥୋଲା କିଣିଲେ । ସେଠ୍‌ଜୀଙ୍କର ବୟସ ଟିକିଏ ବେଶୀ । ପ୍ରାୟ ଛପନ ସତାବନ ହେବ । ବସ୍ତ୍ର ନେବା ପାଇଁ ସେଠାର କେତେକ ଲୋକ ଉପ-ଦେଶ ଦେଇଥିଲେ । ତା ପରେ ଉମେଶ ସିଂ ଠାରୁ ଗୋଟିଏ 'ଫେଲ୍ଟର କୋଟ' ନେଇଥିଲେ ।

ଦତ୍ତାତ୍ରେୟ ନନ୍ଦଜୀଙ୍କ ସାଙ୍ଗରେ କାଳୀ ନଦୀକୁ ଯାଇ ଗାଧୋଇ ପୂଜାପାଠ କଲି । ସାଙ୍ଗେ ସାଙ୍ଗେ ଟିକିଏ ଥଣ୍ଡା ଧରିଦେଲା । ବିସ୍କୁଟ ଓ ଓଭମାଲ୍‌ଟ ଖାଇଲି । ଆମ ଭିତରୁ, ଦତ୍ତାତ୍ରେୟାନନ୍ଦଜୀ, ଗୁରୁଦାସ ବାବାଜୀ ଓ ମୋତେ ଛାଡ଼ିଦେଲେ ଅନ୍ୟ ସମସ୍ତେ ଦୈନିକ ଛ ଟଙ୍କା ଦେଇ ଘୋଡ଼ା ପିଠିରେ ବସିବା ପାଇଁ ଆୟୋଜନ କରିଥିଲେ ।

ଗର୍ବିୟାଙ୍ଗ ଛାଡ଼ିଲି ୨୦ଶ ଜୁନ, ଶୁକ୍ରବାର—

ଏହାକୁ ମହାପଥ କୁହ, ମହତ୍ ପଥ କୁହ, କିନ୍ତୁ ମୋର ମନ ମଧ୍ୟରେ କୌଣସି ଦ୍ୱନ୍ଦ ନାହିଁ । କାରଣ ଭୁଲ ବୁଝାମଣାରୁ ଦ୍ୱନ୍ଦର ସୃଷ୍ଟି । ଦ୍ୱନ୍ଦର ଦୁଇ ବିଷୟ ବସ୍ତୁ ହେଲା ଚୁମ୍ବକର ଦୁଇ କାଣିରେ ଥିବା ତଥାକଥିତ ଦୁଇ ପ୍ରକାରର ଚୁମ୍ବକୀୟ ଶକ୍ତି ଭଳି । ଦୁଇଟି ନାକ ଏକ ଅପରଙ୍କର ପରିପୂରକ ଓ ଗୋଟିଏ ବସ୍ତୁର ପରିପୂରକ ।

ଶ୍ଲୋକ ଅଛି—"ମୃତ୍ୟୋର୍ମା ଅମୃତଂ ଗମୟ" ।

ଅର୍ଥ—ମୃତ୍ୟୁ ମନ୍ଦିରରୁ, ମୃତ୍ୟୁ ଦେଇ ଅମୃତକୁ ନେଇଯାଏ । ମୃତ୍ୟୁ ହେଉଛି ଅମୃତକୁ ବାଟ ।

ଗୀତାରେ ଅଛି—'ଅନ୍ତକାଳେ ଯୋ ମାମେବ ସ୍ମରନ୍ ମୁକ୍ତ୍ୱା କଳେବରମ୍' ଓ ବ୍ରାହ୍ମଣ ପୂଜାଙ୍କରେ—ଓଁ ମୃତ୍ୟବେ ନମଃ;
ଓଁ ଅମୃତାୟ ନମଃ ।

ମହା ଓ ମହତ୍ତ୍ୱ ଏ ଦୁଇ ପଥ ଆଖପାଖେ ଥାଇ ସମାନ୍ତରାଳ ଭାବେ ଗତି କରନ୍ତି ।

ପ୍ରାଣି ମୂର୍ଚ୍ଛିତାକୁ ପ୍ରସ୍ତୁତ, କିନ୍ତୁ ଏ ମହାତୀର୍ଥର ମହତ୍ତ୍ୱ ପଥରେ ଯାଇ ବଞ୍ଚି ରହି ଫେରି ଆସି ପାରିଲେ ସୌଭାଗ୍ୟ ।

ପ୍ରତ୍ୟେକେ ନିଜକୁ ଅତି ସୌଭାଗ୍ୟବାନ ମନେକରି ମନ ଜଲ୍ଲାସରେ ଭଗବାନଙ୍କୁ ସ୍ମରଣ କରି ବାହାରି ଗଲେ । ଗୋଟିଏ ଗୋଟିଏ ଚଟିଲଣ୍ଡ ଚେପରା ଦୋକାନ ବଜାର ଦେଖାଗଲା ।

ଗାଁ ମୁଣ୍ଡରେ ପହଞ୍ଚିଛୁ ଗୋଟିଏ ସମତଳ ଜାଗାରେ ମୋହନ ସିଂ ଗଡ଼ବ୍ୟାଲକୁ ଦେଖିଲି । ରାସ୍ତା ହେବା ପରେ ସେ ଜାଗାଟିରେ ବସ୍ ଅଡ୍ଡା ହେବା କଥା । ସବୁ ମାପଚୁପ ହୋଇ ସାରିଥାଏ । ସେହେତୁ ଏସ ଆଗରୁ ଦୋକାନ ଘର କରିବାରେ ଲାଗିଛନ୍ତି । ରାସ୍ତାଟା ଗାଁର ଉପର ଦେଇ ଯିବା କଥା । ସେଥିପାଇଁ ଗାଁ ଉପରେ ମାଟିଖଣ୍ଡ ଓ ପଥରକଟା ଚାଲିଥାଏ । ଜଣେ ସ୍ତ୍ରୀ ଦଳେ ରାଗି କରି କହୁଥିଲେ—'ଏଟା କ ସରକାର, ଯେ କି ଗାଁ ଉପରେ ଦେଇ ରାସ୍ତା କରୁଛି । ବର୍ଷା ହେଲେ ଉପରୁ ପଥର ମାଟି ଇତ୍ୟାଦି ଗଡ଼ିବାର

ସମ୍ଭାବନା; କେବେ କେବେ ଦୁର୍ଘଟଣାରେ ପଡ଼ିବେ । ଗାଁ ଟା ସେପରି ଖାଲ ଢିପ ଜାଗାରେ ଅବସ୍ଥିତ ନୁହେଁ ଯେପରି କି ମାଟି ସେପରି ପରିମାଣରେ ଧସି ଆସିବ । ସରକାରଙ୍କର ପ୍ରତ୍ୟେକ କାମରେ ଦୋଷ ଗ୍ରୁଟି ଦେଖି ବାହାରିବାର ପ୍ରଗତିଶୀଳତା ଖମାଣ୍ଡୀ ପର୍ଯ୍ୟନ୍ତ ପହଞ୍ଚିଛି । 'ମାଲପାରେ' ଜଣେ ଦୋକାନୀବାଲ କହୁଥିଲ—'ଏ କି ସରକାର ମ ? ଦେଖ, ଚୀନରେ ଚୀନା ଲୋକ ଚଟାପଟ କି ସୁନ୍ଦର ରାସ୍ତା କରୁଛନ୍ତି, କିନ୍ତୁ ଏ ସରକାର ଅନେକ ଦିନ ହେଲ କିଛି କରିପାରୁ ନାହାନ୍ତି ।" ପାହାଡ଼ର ରାସ୍ତା ତିଆରି କରିବା ଯେ କି କଷ୍ଟସାଧ୍ୟ ଓ ଭାରତରେ ଟାଙ୍ଗ ମାଟିରେ ଚଞ୍ଚାଚଞ୍ଚି କରି ରାସ୍ତା କରିବାଟା ସହିତ ତୁଳନା କରିବାଟା ମନରେ ଯେ ଅଙ୍କ ହୋଇଥିବ ସେ ଏପରି କହିବ । ଏପରି କହିବାଟା ଉଦ୍ଦେଶ୍ୟମୂଳକ । ଚୀନା ପ୍ରୀତି ଓ ଭାରତ ପ୍ରତି ବିଦ୍ୱେଷ ତା ମନକୁ ଅନ୍ଧ କରି, ମନ ଚକ୍ଷୁକୁ ରଙ୍ଗୀନ୍ କରି ଦୃଷ୍ଟିକୋଣ ବଦଳାଇ ଦେଇଛି ।

ପରେ ପରେ ପଡ଼ିଲ ଗୋଟିଏ ଗୋଡ଼ ପଥର ପୂର୍ଣ୍ଣ ପାହାଡ଼ିଆ ନଦୀ । ଟୋଲ ପାର କରି, ବାଁ ପଟେ ଭାରତ ଭିତର ଦେଇ ରାସ୍ତା ଛାଡ଼ି ନଦୀ ଆରପଟେ ନେପାଳ ଭିତର ଦେଇ ଚାଲିଲୁ । ଦୁଇ ମାଇଲ କମ୍ ପଡ଼ିବ ବୋଲି ଶୁଣିଲି । ବାଟରେ ପଡ଼ିଲ ଗୋଟିଏ ପାର୍ଶ୍ୱସ୍ଥିତ ପାହାଡ଼ରୁ ଆସିଥିବା ନାଳ । ଗାଡ଼ିର ଟୋକେଇ ଫାଟି ଖରଣ୍ଡି ହେବ କିନ୍ତୁ ପାଣି ନାହିଁ । ଗାଡ଼ିକୁ ଓହ୍ଲାଇବା ପାଇଁ ଆମ ପଟରେ, ଟେଲିନାଳ କଡ଼ରେ ମାଟି ଉଠାଇବାକୁ ଯେପରି କରିଥାନ୍ତି, ସେପରି ଖଣ୍ଡେ ରାସ୍ତା ପଡ଼ିଥାଏ । କିନ୍ତୁ ଏଇଟା ନଦୀର ପଖା ସହିତ ଏପରି ମିଶି ଯାଇଥାଏ ଯେ ବାଟ ବାରିବା କଠିଣ ଓ ସାମାନ୍ୟ ଅସାବଧାନତାରେ ଗୋଡ଼ ଖସି ଯିବାର ସମ୍ଭାବନା

ଥାଏ । ତାହାର ବିଶେଷ କିଛି ଚିହ୍ନ ନଥାଏ । ଏଠାରୁ ଉତ୍ତର ପଟେ ପ୍ରାପ୍ତ ପ୍ରତ୍ୟେକ ନଦୀରେ ଏହି ଭଳିଆ ଝୁଲାଇବାକୁ ଓ ଉଠିବାକୁ ପଡ଼େ । କିନ୍ତୁ କ୍ରମଶଃ ଅଭ୍ୟସ୍ତ ହୋଇ ପଡ଼ିଥିଲି । ବିଶେଷ କଷ୍ଟ ହୋଇ ନଥିଲା ସେ ଦିନ । ଠିକଣା ଜାଗା 'ଭାଲପାଣି' ରେ ଅନାୟାସରେ ପହଞ୍ଚିଲି ।

## କାଲାପାଣି—୧୩୦୦୦—୪୮+୯=୭୭ ମା ଇଲଛି

ଏହିଠାରେ ଭାରତର ଶେଷ ଯାଞ୍ଚସ୍ଥଳୀ । ତାକୁ ଲଗି ବିଶେଷ ପୋଲିସ ସଂସ୍ଥାର ଗୋଟିଏ ଛାଉଣୀ, ଜଣେ ସହାୟକ କମାଣ୍ଡାଣ୍ଟ ଅଧିନରେ ଥାଏ । ପାଖରେ ଥାଏ କାଳୀ ନଦୀ । ଆମକୁ କିଛି ଦୂରରେ ତମ୍ବୁ ପକାଇବା ପାଇଁ କୁହାଗଲା । ଆମକୁ ଦିଆ ଯାଇ-ଥିବା ଅନୁମତି ପତ୍ର ସବୁ ଯାଞ୍ଚ କରି ଫେରସ୍ତ ଦିଆଗଲା । ଉତ୍ତର ପଟୁ ଅନେକ ଲୋକ ଆସନ୍ତି । ସେମାନଙ୍କୁ ଯାଞ୍ଚ କରି ଏମାନେ ଭାରତ ଭିତରକୁ ଅନୁମତି ପତ୍ର ଦେଇ ଛାଡ଼ନ୍ତି । ଏ ପଟରୁ କେହିଲି ସେଣ୍ଟା ପଲ ଚୋରେଇ କରି ନିଅନ୍ତି । ଆଗେ ଅବାଧ ବାଣିଜ୍ୟ ଚଳୁଥିଲା । ବର୍ତ୍ତମାନ ଗହମ, ଚାଉଳ, କିରାସିନ, ଲୁଗାପଟା ନେବା ମନା । ଅନ୍ୟାନ୍ୟ ଶସ୍ୟ ଧରି ଏମାନେ ଆର ପଟକୁ ଯାଆନ୍ତି । ସେ ପଟରୁ ଲୁଣ ଓ ଉଲ୍ ଧରି ଆସନ୍ତି । ଜିନିଷ ପତ୍ର ବଦଳାଇବାର ନିୟମ ହେଲା ଗୋଟେ ଶସ୍ୟକୁ ଗୋଟେ ଉଲ୍ ବା ତିନିଟି ଲୁଣ— ଓଜନରେ । ଉତ୍ତରରେ ଅପର୍ଯ୍ୟାପ୍ତ ପରିମାଣର ପାହାଡ଼କୁ ପାହାଡ଼ ଲୁଣ ଥିବା ଶୁଣିଲି । ସେ ସବୁ ଥାଏ କୈଳାସଠାରୁ ଉତ୍ତରକୁ ଆଠ ଦଶ ଦିନର ରାସ୍ତାର ଦୂରରେ ।

କେଉଁ ଯୁଗରେ ତିବ୍ବତ ସାଗର ଗର୍ଭରେ ଥିଲା । ପରେ ଭୂମିକମ୍ପରେ ଉପରକୁ ଉଠି, ସମୁଦ୍ର ପତନଠାରୁ ହାରାହାରି ପନ୍ଦର ହଜାର ଫୁଟରୁ ଉର୍ଦ୍ଧ୍ୱରେ ଅବସ୍ଥିତ । ସେହେତୁ ସମୁଦ୍ର ତଳରେ ଥିବା କେତେକ ଜଳଚର ସନ୍ଧାନ ତିବ୍ବତରେ ମିଳେ ।

ସେ ଦିନ ରାତିରେ ଦୁଇ ଖଣ୍ଡ ରୁଟି ଓ କିଛି ଲୁଣ ଖାଇଛୁ ।

ତା: ପରଦିନ ସକାଳେ କାଳୀନଦୀକୁ ଗାଧୋଇବାକୁ ଗଲୁ । ଶୁଣିଲୁ ଗୋଟିଏ ତପ୍ତପାଣି ଝରଣା ଅଛି । କିନ୍ତୁ ଠାବ କରିପାରିଲୁ ନାହିଁ । ଡେକଚିରେ ପାଣି ନେଇ ଗାଧୋଇଲୁ । ଝରଣି ପାଖରେ ଜାପାନୀମାନେ ଦୁଇ ତିନି ଫୁଟ ଉଚ୍ଚର ମନ୍ଦିର ସ୍ଥାପନ କରିଥାନ୍ତି । ସେଠାକୁ ଯାଇ ପୂଜା ପାଠ କଲୁ । ସେମାନଙ୍କର ଉତ୍ସାହ ଓ ଉଦ୍ଦୀପନା ଦେଖି ପୂଜା ସମୟରେ ସ୍ୱତଃ ପାଠ କରିଥିଲୁ ।

ଦେହଂ ଜନ୍ମତମ୍ ଭୂତ ଜନ୍ମତେ ନୃଣା ।
ଉଚ୍ଚଂ ଉତ୍ତାଂସି ଶେଷଠତମ୍ ଅମୀବାଃ ॥

ଆଜି ଯିବା ପାଇଁ ପ୍ରସ୍ତୁତ ହେଉଛୁ, ମୋତେ ଦେଖି ପାଞ୍ଚ-ଚୁଲୀ ଅଧ୍ୟକ୍ଷ କହିଲେ—'କେବଳ ଯାଙ୍କ ପ୍ରତି ଟିକିଏ ଭୟ ଅଛି ଏ ସରକାରୀ କର୍ମଚାରୀ ପରି ଦେଖା ଯାଉଛନ୍ତି । ଓକିଲତି କଲେ ମିଛ କହିବାକୁ ପଡ଼େ, ଚାକିରୀ ଯାହାର କେବଳ ଅଟା ସେମାନେ ନିରୀହ—ଏହି ମୋର ଧାରଣା ଥିଲା । କିନ୍ତୁ ଆଜି କଣ କରିବି ?

ସେତେବେଳେ ମୁଁ ପିନ୍ଧିଥିଲି, ଗୋଡ଼କୁ ଚାରି ଅଙ୍ଗୁଳି ଛୁଉଁଥିବା ଗୋଟିଏ ଉଲର୍ ପେଣ୍ଟ୍, ଗଞ୍ଜି, ତା ଉପରେ ସାର୍ଟ,

ତା ଉପରେ ଗୋଟେ ଠିକ୍ ମାପର ସ୍ୱେଟର୍ ଓ ଗଳା ସଗରେ ଗୋଟେ ଅଜାନୁ ଲମ୍ବିତ ଧୂସର ଅଲଷ୍ଟର—ଉଭସ୍ଥ କଲର୍ । ମୁଣ୍ଡରେ ଥିବ ସର୍କିଟକେପ୍ । ହାତରେ ବାଡ଼ି ଓ କାନ୍ଧରେ ପଇତା ପରି ଝୁଲୁଥାଏ ଝୁଲଣା । ଗୋଡରେ ଥିବ କମ୍ବଲ ଯୋତା ଓ ଉଲ୍‌ର ମୋଜା । ଶେଷ ଦୁଇଟା ଖଦ୍ଦରର ଓ ଠିକ୍ ମାପର । ବାକି ଲୁଗାପଟା ମଗାମଗି କରି ବା ପୁରୁଣାରେ କିଣା । ଚଳପ୍ରଚଳ ପାଇଁ ମୋଜା ଯୋତା ଠିକ୍ ଥିବ, କମର କସା ହୋଇଥିବ ଓ ହାତ ଖାଲିଥିଲେ ଯଥେଷ୍ଟ । ଥଣ୍ଡା ପାଇଁ ପୋଷାକ ଥିବ ଉପଯୁକ୍ତ । କଅଣ ଦେଖାଯାଏ ତାର ପ୍ରତି ଭ୍ରୂକ୍ଷେପ ନଥାଏ । କିନ୍ତୁ ଥିବ ବାକି ଏପରି ପିନ୍ଧିବ ନାହିଁ । ବୃକଟିଅର ଟିକିଏ ବାହାର ବୃଦ୍ଧତ୍ୱ ଥିବା କଥା ।

ବାପଜୀ ଘର ପାଖରେ ଗୋଟିଏ ସୈନିକମାନେ ଧରିବା ପାଣି ବୋତଲ ଥିଲା । ସେ କହୁଥିଲେ— 'ଏ ପାଣି ବୋତଲଟି ଯାଙ୍କୁ ଧରିଛି ପଥ ତାହାହେଲେ ସବୁ ଠିକ୍ ହୋଇଯିବ । ସୈନା-ମାନେ ଯାହା ପଚରି ଉଚରି ହଇରାଣ କରିବେ, କେବଳ ଯାଙ୍କୁ ହିଁ କହିବେ । ଇଂରେଜୀରେ କଥା ନ କହିବା ପାଇଁ ଓ ହରତକୁ ଅଙ୍ଗ ଅସିବା ଭଲ କିନ୍ତୁ ନ କହିବା ପାଇଁ କହୁଥିଲେ ।

ଭଲାପାଣିର ଉଚ୍ଚତା ବାର ତେର ହଜାର ଫୁଟ ଉପରେ । ସକାଳେ ଗାଧୋଇବାରୁ ସର୍ଦ୍ଦି ଟିକିଏ ଜୋରରେ ଧରି ଦେଇ-ଥିଲା । ସେଥିରୁ ନିଭକ ଜ୍ୱର ସ୍ୱାସ୍ଥ୍ୟରେ ବିଶେଷ କଷ୍ଟ ଦେଇଥିଲା । ଏହା ପୂର୍ବରୁ ତୁଙ୍ଗନାଥଠାରେ ଏହି ଉଚ୍ଚତାର ଅନୁଭୂତି ଥିଲା । କିନ୍ତୁ ସେତେବେଳେ ଶୀତ ଅସହ୍ୟବୋଧ ହେଉଥିବା ହେତୁ

ପାଞ୍ଚ ଘଣ୍ଟାଏ ଖଣ୍ଡେ ରକ୍ତ ତଳକୁ ଓହ୍ଲାଇ ଆସିଥିଲି । ଅଗୁଆବାଟ
ଅଜଣା ଥିବାରୁ ଦ୍ଵିପ୍ରହରରେ କଣ ଖେଳ ବନ୍ଦୋବସ୍ତ ନଥାଏ ।
ଅଣ୍ଡାରେ ହାତ ଦେଉଥିଲି—ଯେତେବେଳେ ଯେତେ ଖଣ୍ଡ ଚିଠି
ଲେଖି, ବୋଇପାରେ ମୋ ଏ ମୋର ଶେଷ ଚିଠି; କିନ୍ତୁ ଦେହ
ମୋର ଠିକ୍ ଓ ମୁଁ ଆଶାବାନ ଅଛି ବୋଲି ଲେଖୁ ସମସ୍ତଙ୍କୁ
ଜଣାଇ ଦେଲି । ବିଶେଷ କିଛି ଲେଖିପାରି ନଥିଲି । ଚିଠି ବାହାକ
ହାତରେ ଚାର୍ବୁଙ୍ଗରେ ପଠାଇଥିଲି ଦଆଯାଇଥିଲା । ଚାର୍ବୁଙ୍ଗରେ
ଡ଼ାକଘରର ସୁବିଧା ନାହିଁ ବୋଲି ଶୁଣିଲି । ଚୀନାମାନେ ତାଙ୍କର
ଅଲଗା ବନ୍ଦୋବସ୍ତ କରି ନିଆଆଣ କରନ୍ତି । ପୁଣି ଏକ ମାସ
ପର୍ଯ୍ୟନ୍ତ ମୋ ଠାରୁ କୌଣସି ଚିଠି ପତ୍ର ପାଇବ ନାହିଁ—ଏହି କଥା
ଜଣାଇ ଦେଇଥିଲି ।

## କଳାପାଣି ଛାଡ଼ିଲୁ ୨୪ ଜୁନ୍, ଶନିବାର

କଡ଼େଇମା ମୋତେ ଆଗରେ ବାହାରି ପଡ଼ିବାକୁ କହିଲା ।
ବାହାରି ପଡ଼ିଲି । କଳାପାଣି ଛାଡ଼ିଲି, କାଳୀ ନଦୀ ଛାଡ଼ିଲି ।
ପ୍ରଥମରେ ଅଧମାଇଲ୍ ଏ ଖଣ୍ଡେ ସମତଳ ଜାଗା ଦେଇ ଉତ୍ତର
ଦିଗକୁ ଗଲି ପରେ ରାସ୍ତା ବାଁ ପଟକୁ ମୋଡ଼ିଲା । ସେଠାରୁ ଅଳ୍ପ
କିଛି ଦୂର ଗଲାପରେ ଛୋଟ ଗୋଟିଏ ପୋଲକୁ ପାରି କରି କାଳୀ
ନଦୀକୁ ବିଦାୟ ଦେଲି । ଏଠାରେ ସେ କେତେ ଛୋଟ କେତେ
ନମ୍ର ସତେ ! ଆଜ ଟିକିଏ ଆଗେଇବା ପରେ ଦୁଇ ପାହାଡ଼
ପାଖକୁ ମିଶି ଆସିଥିବା ଯାଗାଟେ ପଡ଼ିଲା । ତା ଭିତରେ ପଶିପାଇ
ଦେଖିବାକୁ ପାଇଲି ଏକ ବିଚିତ୍ର ଦୃଶ୍ୟ ! ବାଲି ଉପରେ ବାଲି
ଥାଇ ଏକ ଭୈରବ ରୂପେ ଠିଆ କରି ଟାଙ୍ଗିବି ଚରଫାଇଡ଼

ତ୍ୱଲରେ ମଧ୍ୟ ଏ ଗୁମ୍ଫଦଣ୍ଡ ଦେଖନ୍ତି ମୁକ୍ତିଭିକ ପାଇଁ ସୁଖା ଭୂଲ ପାରିବ ନାହିଁ ।

ପ୍ରବାଦ ଅଛି ଯେ ଭାରତର ବୌଦ୍ଧ ଧର୍ମର ପ୍ରଚାର ପାଇଁ ଅନେକ ଦଣ୍ଡା ଦଣ୍ଡା ବୌଦ୍ଧ ସନ୍ୟାସୀ ତିବ୍ବତକୁ ଯାଇ ଯାଇ ଯାଇଥିଲେ । କିନ୍ତୁ ବାଟରେ ଭୂତ ପ୍ରେତ ଇତ୍ୟାଦି ଦୁଷ୍ଟ କ୍ରୋଧ କବଳରେ ହଇରାଣ ହୋଇ ମରୁଥିଲେ ବା ଫେରି ଆସିବାକୁ ବାଧ୍ୟ ହୋଇଥିଲେ । ପ୍ରତ୍ୟେକ ପାହାଡ଼ ଉପରେ ଗୋଟିଏ ଗୋଟିଏ ଅଧିଦେବତା ବା ଦୁଷ୍ଟ ଶକ୍ତି ଅବସ୍ଥାନ କରେ ବୋଲି ତିବ୍ବତୀୟ ଲୋକଙ୍କର ବିଶ୍ୱାସ । ତିବ୍ବତୀୟମାନେ ମଧ୍ୟ ତନ୍ତ୍ର ଶାସ୍ତ୍ରରେ ଖୁବ୍ ଧୂରନ୍ଧର ଥିଲେ । ଏବେ ମଧ୍ୟ ଅଛନ୍ତି ବୋଲି ଶୁଣିଛୁ ଓ ଦେଖିଛୁ । ଶେଷରେ ଭାରତରୁ ଜଣେ ସନ୍ୟାସୀଙ୍କୁ ପଠାଗଲା ଯାହାରକି ବୌଦ୍ଧ ଧର୍ମରେ ପ୍ରଗାଢ଼ ଜ୍ଞାନ ଥିଲା ଓ ତନ୍ତ୍ର ଶାସ୍ତ୍ରରେ ନିପୁଣତା ଥିଲା । ସେ ଭୂତଗଣଙ୍କୁ ତନ୍ତ୍ର ବଳରେ ଦମନ କରି ତିବ୍ବତକୁ ଆଗମନ କଲେ ଓ ବୌଦ୍ଧ ଧର୍ମର ପ୍ରଚାର କଲେ । ତାଙ୍କର ନାମ ଥିଲା ପଦ୍ମସଂଭବ । ଶୁଣୁଛୁ ସେ କୁଆଡ଼େ ଓଡ଼ିଶାର ଲୋକ ଥିଲେ ।

ତାଙ୍କ ନାମକୁ ଜଡ଼ିତ ଏହି ଗୁମ୍ଫ ଦେଖନ୍ତି । ସାରା ତିବ୍ବତ ତାଙ୍କୁ ଗୁରୁ ମାନି ଏହି ମନ୍ତ୍ରକି ଅହର୍ନିଶି ଜପୁଥାନ୍ତି । ତିବ୍ବତରେ ବା ଭାରତରେ ଯେତେ ତିବ୍ବତୀୟ ମଠ (ଗୋମ୍ପା) ଦେଖିଛୁ, ପ୍ରତ୍ୟେକଟିରେ ବୁଦ୍ଧଙ୍କର ପ୍ରତିମୂର୍ତ୍ତି ପଛରେ, ଟିକିଏ କଡ଼କୁ ଯୋଡ଼ା ହୋଇ ଥାଏ ଭୟଙ୍କର ଲୋକ ଜଣ୍ଡା ଦେଖା ମୂର୍ତ୍ତି ।

ସମସ୍ତ ସମୟରେ ଯେଉଁଠାରେ ଦୁଇ ପଟର ବାଟ ପରସ୍ପରରେ ମିଶିଥାନ୍ତି, ସେଠାରେ ପଥର ଖୋଳିଏ ଫୁଟ ଉଚ୍ଚର ଗୋଟିଏ ପଥରରେ ଗଢ଼ା ଅମ୍ବ ଭଳି ଦେଉଳ ବା ସମାଧି ଥାଏ । ତାକୁ ମଧ୍ୟ

ପଥର କୁହୁଗୁଡ଼ିକ ପଛ ଡାହାଣ ପଟେ ରଖି ଚାଲିବାକୁ ହୁଏ ।
ସେଠୁ ଦେହୁ ବାଟ ଭଣା ହେବାର କୌଣସି ଆଶଙ୍କା ନ ଥାଏ ।
ନଦୀର ତଟଟା ଗୋଟାଏ ବିଶାଳ ପ୍ରାଚୀର ପରି ଥାଏ । ନଦୀ ଷଯ୍ୟାର
କଚ୍ଛ ଉପରେ ଥାଉ ଥାଉ ଭୋଠସ୍ର ଦେଖିବାକୁ ପାଇଲି । ଏ
ଗୁମ୍ଫାକୁ ଦେଖି ମନେ ହେଲା ହଠଯୋଗ ପ୍ରଦୀପିକାରେ ବର୍ଣ୍ଣିତ
ସାଧନା ଭୋଠସ୍ର । କିନ୍ତୁ ଖଣ୍ଡଗିରିର ଗୁଣିଗୁମ୍ଫା ପରି । କିନ୍ତୁ
ଆକାରରେ ଅନେକ ବଡ଼ ଓ ପ୍ରାଚୁର୍ଯ୍ୟରେ ଅନେକ ବେଶି ।
ଚଳନ୍ତାପଥକୁ କେତେକ କାଳ ମେ ଯାଆନ୍ତି ମୁଁ ଧାରମାନ ନଥିଲି ।
ପାଖକୁ ଗଲେ ବୋଧହୁଏ ଦେଖି ମାରୁଥାନ୍ତି । ପ୍ରକେଷ ବୋଧହୁଏ
ଉପର ପଟେ । କିନ୍ତୁ ସଂଯୋଗରେ ଶତେକ ଯିବା ଆସିବାର
ଦରକାର ପଡ଼ନ୍ତ ନାହିଁ । ଦରକାର ସ୍ଥାନରେ ଶାନ୍ତ, ଭଲ
ମିଳୁଥିବ, ପାଣି ଅତ ପାଖରେ ନ ଥିବ ବା ଦୂରରେ ନ ଥିବ,
ପ୍ରକୃତ ବଲ୍ଲକୁ ରକ୍ଷା କରୁଥିବ ଇତ୍ୟାଦି । କିଛୁ ଦୂର ଚାଲି ଚାଲି
ଯାଇଛୁ କୌତୂହଳ ଦେଖିଛ ଚାରି ପାଖଟା ଘର ଦେଖିଲି ।
ଗୋଟିଏ ଘରର ଦାଣ୍ଡ ଅଗଣାର ବେଢ଼ାର ଦୁଆରମୁହଁ ଉପରକୁ
ରଖାଯାଇ ଥାଏ ସିଂଘ ସହିତ ଗୋଟିଏ ଗୋରୁ ମୁଣ୍ଡ ହାଡ଼ ।
ଭୟଙ୍କର ଦେଖା ଯାଉଥିଲା । ଶୁଣିଲି ଅଶାନ୍ତ ଭୂତଯୋନି ସମୂହକୁ
ଏଡ଼ାଇବା ପାଇଁ ଏପରି କରାଯାଇ ଥାଏ । ସେହି ଗଡରେ
ଅଗଣାରେ ଗୋଟିଏ ଚୋଢ଼ଏ ପଚାଶ ଫୁଟ ଉଚ୍ଚର ସବୁ ସବୁ
ଧାଡ଼ ଥିବା ଗଛଟିଏ ଦେଖିଲି । ଗଛଟି କଇଁଠ ପତ୍ର ଝାଙ୍କୁ
ନଥିଲା କ ଶତ ବା ଝାଙ୍କି ଭଲ ଡେଙ୍ଗା ନଥିଲା । ବୁଢ଼ା ହୋଇ-
ଯାଇଥିବା ଅନୁମାନ କଲି । ଜଳାଯାଣୀ ଘଉଡ଼ାବାଠାରୁ ସେଠାରେ
ପହଁଚିବା ପର୍ଯ୍ୟନ୍ତ ସେଠୁ କେବଳ ଗୋଟିଏ ଗଛ ମୁଁ ଦେଖିଛି ।
ଆଉ ଦୁଇ ତିନି ମାଇଲ ଗଲା ପରେ ଆଉ ଦୂର ଧନଟା ଧାର

ମଣ୍ଡଳ । ସେଠ କିଛି ତାଜା ଗାଈର କ୍ଷୀର ଦୁହାଁ ଯାଉଥିଲା । କିଣି ପିଇଲୁ । ସାମାନ୍ୟ ଗନ୍ଧ ଥାଏ । ପିଠଉ ଭଳିଆ ବହଳିଆ । କିନ୍ତୁ ସୁସ୍ୱାଦୁ । ସଦ୍ୟ ଦୁହାଁ କ୍ଷୀର, ଗୋଟା ଯାଗା ହୋଇଥିବା ହେତୁ, ଭଅଁଳା ବାଛୁରୀଙ୍କ ଫେଉ୍ ହଳଦ ଲଗୁଛି ଗୁଡ ନାଭ ଚପି ଲଭାର ଶୂନ୍ୟ ହେଇ ପିଇନେଲି । ଭର୍ତାସ୍ୱମାନେ ଆଦର ସହକାରେ ଭାରତୀୟ ମୁଦ୍ରା ଗ୍ରହଣ କରୁଥିଲେ । ସେମାନଙ୍କର ନେପାଳ କିନ୍ତୁ ମାଗଣ୍ଡ ନଥାଏ ବା କ୍ଷୀରର ବ୍ୟବସାୟ ନଥାଏ, କ୍ଷୀର ହେଉଛି ୯ଦଶ ଗୋଟେ ଟଙ୍କା । ସେଠାରେ ଖଣ୍ଡେ କ୍ଷୀର ନହେଲେ ଜନତାଙ୍କ ଆଜ ଖାଇବାକୁ ମଡ଼େ ନାହିଁ । ଜଙ୍ଗଲରେ ରହଣୀ ସମୟରେ ଏଗଲ ମୋଟେ ବନ୍ଧାଇ ରଖିବାରେ ବିଶେଷ ସାହାଯ୍ୟ କରୁଥିଲା । ପ୍ରତିଦିନ ନ ମିଳିଲେ ମଧ୍ୟ ଦିନେ ଛଡ଼ା ଦିନେ ଜାଉ ହେଲେ ମିଳୁଥିଲା । ଗୁଜରାଟି ଦଳଟି ସେଥିରେ ଗୁଡ଼ ଦେଇ ଖାଆନ୍ତି ଓ ଖାଣ୍ଟି ପିଇବାକୁ ପସନ୍ଦ କରୁ ନଥିଲେ । ସେଥିପାଇଁ ଏ କ୍ଷୀର ପାଇବାରେ ବିଶେଷ କଷ୍ଟ ହେଉ ନଥିଲା ।

ଏହାପରେ ପଡ଼ିଲା ଗୋଟିଏ ନଦୀ ଓ ନଦୀ ପରେ ଅଧ ମାଇଲଏ ଖଣ୍ଡେ ଚଲା ରାସ୍ତା ପରେ ଫେର ଉଠିଲା ସଡ଼କ । ସଡ଼କଟା ଦେଖି ଆମ ପଟରେ ନାଳ ମାଟି ଓ ପଥର ବୋଝେଇ ହୋଇ ଟ୍ରକ୍ ଯିବାପାଇଁ ଟାଙ୍ଗର ଜମିବେ ଯେପରି ରାସ୍ତା ଟାଏ ସେହି ରାସ୍ତା ମନେ ପଡ଼ିଲା । ସଡ଼କ କରୁଥିଲେ ମାଟିଟାକୁ ସମତଳ କରି ଗୋଡ଼ି ପଥରକୁ ଏପଟ ସେପଟ କରିବା । କେବଳ ସୈନ୍ୟ ବାହିନୀର ଯାନବାହନ ପାଇଁ ତିଆରି ହୋଇଛି ବୋଲି ମୋର ମନେ ହେଲା ଓ ସେଇ କେବଳ ଯା'ଆସ କରୁଥିବା କଥା ଶୁଣିଲି । ରାସ୍ତାରେ ତ ସେତେ ବର୍ଷା ନାହିଁ, ଜମିତ ଟାଙ୍ଗସ, ଧାସ ଇତ୍ୟାଦି

ଗୁଣ୍ଡୁ, ଝିଙ୍କ ସମତଳ କରିଦେଲେ ହୋଇଗଲା । ନା ପଥର ପଡ଼ା, ନା ଝାମ୍ପ ପଡ଼ା ନା ପିଚୁଢ଼ାଳା—ଫାଟା ଫୁଟି, ଖଣା ଖଣି ଓ ଝାଳିବା କଥା ଛାଡ଼ନ୍ତୁ—ଏ ସବୁ କିଛି ଦରକାର ନାହିଁ । ପାହାଡ଼କୁ ବଙ୍କେଇ ରାସ୍ତା ଯାଇଥାଏ । ଯେଉଁଠି ମୁଣ୍ଡିଆ ଅତିକମ ଉଠିବାକୁ ପଡ଼ୁଛି, ସେତିକିଟିକୁ ଏପରି ବଙ୍କେଇଁ ଢାଲୁ କରି ଉପର ଦେଇ ନେଇଛନ୍ତି ଯେପରିକି ପାହାଚଟା ଦରକାର ନ ପଡ଼େ । ଦୂର ହେଉ ପଛେ, ଘାଟି ଯେପରି ନ ପଡ଼େ ।

ମନେ ହେଲା ନେ ଗାଡ଼ିର ଆକାର, ଗତିର ବେଗ ଓ ଜନତା ଶ୍ରେଣିର ଚାଳକମାନଙ୍କ ନିପୁଣତା ଉପରେ ଦୃଷ୍ଟି ରଖି ସଡ଼କ ନିର୍ମାଣ ହୋଇଛି ।

ଯେଉଁଠି ଜଳଧାର ବୋହୁ ଯାଉଛି, ସେଠାରେ ପଥର ପକାଇ ସଡ଼କ କରିଛନ୍ତି । ପଥରର ସମତଳ ଅଂଶଟା ଉପରକୁ ରହିବ ଓ ପାଣି ପଥର ଫାଙ୍କ ଦେଇ ଚାଲିଯିବ । ଏହି ରାସ୍ତାର ତଳକୁ ଦେଢ଼ ଫୁଟ ଓସାରର ଖୋଳ ଏକ ପ୍ରସ୍ଥ ପଥର ପଡ଼ିଥାଏ । ଲୋକମାନେ ଚାଲିବା ପାଇଁ । ଭାବୁଥିଲି—ଏମାନେ ଏତେ ସହଜରେ ସଡ଼କ ନିର୍ମାଣ କରିଲେ ଭାରତ ସରକାର କେମିତି ଜାଣିବେ ଆକ୍‌ସାଇ ଚୀନ କଥା ।

ଦୁଇ ତିନ ମାଇଲ ପରେ ଆମେ ରାସ୍ତା ଛାଡ଼ି ଓହ୍ଲାଇଲୁ ଗୋଟେ ଘାସବହୁଳ ଗଡ଼ାଣିଆ ଚଗରୁଁଇ ଦେଇ । କାଁ ଭାଁ ଦୁଇ ବୃଦ୍ଧା ଚମରୀ ଗାଈ ଚରୁଥାନ୍ତି । ଦେଖି ଖୁବ୍ ଭଲ ଲାଗିଲା । ଦୂରରୁ ଆଡ଼େଇ ଚାଲି ଗଲୁ । କ୍ଷୀର କିଣିବା ପରେ ପରେ ଅନ୍ୟମାନେ ଘୋଡ଼ାରେ ବସି ସାରିଥିଲେ । ସେହେତୁ ସେମାନଙ୍କ ସମ୍ପର୍କ ଛଡ଼ା ହୋଇ ଯାଇଥିଲା । ଏହି ଚଗରୁଇଁ ଉପରେ ଫେର ଧାଇଁଲି

ଆସିଲା ଯେହେତୁ ଅବସ୍ଥାନ କରିବା ଯାଗା ପାଖେଇ ଆସିଥିଲା । ଭଗବତୀ ପକେଟରୁ କିଛି କାଢ଼ି ଯାଚିଲେ । ମୁଁ ମନା କଲି ସତ୍ତ୍ୱେ ମିନତି କରି ଯାଚିଲେ । 'ଅଳ୍ପ ହେଉ' କହି ନେଲି । ଦେଖିଲି ମୁଠାଏ କିସ୍‌ମିସ୍, ବାଦାମ, ଲଜେନ୍‌ସ ଇତ୍ୟାଦି ଧରିଛନ୍ତି । ସାଙ୍ଗେ ସାଙ୍ଗେ ଅନ୍ୟ ଦୁଇଜଣ ମଧ୍ୟ ଯାଚିଲେ । ପାତରେ ଅନ୍ତର କାହିଁକି ? ତାଙ୍କୁ ମଧ୍ୟ ନେଲି । ଭାବୁଥିଲି ଯେ ତୀର୍ଥରେ ପୁଣ୍ୟ ଅର୍ଜିବା ପାଇଁ ଏପରି ଦେଉଛନ୍ତି କିନ୍ତୁ ଭଗବତୀଙ୍କର ମୋ ପ୍ରତି ନିଶ୍ଚୟ ଦୟାଥିଲା !

ଦାନ୍ଧାଖେଡ଼ି ଯାତ୍ରା ସମୟରେ ଥରେ ଅଧେ ଏପରି ଦୁଇ ଚାରି ମୁଠା କିସ୍‌ମିସ୍ ଆଦି ଓ ଏହା ଗୋଟିଏ ଖୋରାକ୍ ହୋଇ ଯାଉଥିଲା । ସାଧାରଣ ଦୁଇ ବେଳା ଦୁଇ ଡେକ୍‌ଚି ପାମାସୁ ଛଡ଼ା ଅନ୍ୟ କିଛି ତଣ୍ଟିରେ ଯାଉ ନଥାଏ । ଜଡ଼ତାନ୍ତି କଷ୍ଟରେ ଗୁଣ୍ଡେ ବା ଦୁଇ ଗୁଣ୍ଡା ଛେଚୁଡ଼ା ବା ମଟର ଦୁଇପଟ ଭୁଜି ତଣ୍ଟିରେ ଗୁଞ୍ଜି ଖାଉଥାଏ । ଏହା ସଙ୍ଗକୁ କାମ ଦେଉଥିଲା ଚମରୀ ଗାଈର କ୍ଷୀର ଓ ଖାଦ୍ୟପ୍ରାଣ-ସି ବଟିକା । ବିସ୍କୁଟ ଅଦୌ କାମ ଦେଉ ନଥିଲା । ପ୍ରତିଦିନ ଘୋଡ଼ା ଉପରୁ ଓହ୍ଲାଇ ଘୋଡ଼ାବାଲାମାନେ କିଛି କିଛି ଖାଇଦେଉ ଥାନ୍ତି । ଗୁଆ ହେଉ ଦାନ୍ତରୁ ରକ୍ଷା କରୁଥିଲା । ଗୋଟା ଗୁଆକୁ ପଥରରେ ଛେଚି ଗୁଆ ଖଣ୍ଡ ଚୋବାଉଥାଏ—ଏକ ରକମ ନିଶା ଧରିଲା ପର୍ଯ୍ୟନ୍ତ । ସକାଳେ ମାଟି ଓ ପାଣିରେ—ଦାନ୍ତ ଘଷା ହୁଏ ଓ ଯାହା ବାକି ରହିଯାଉଥାଏ ତାହା ପୂର୍ଣ୍ଣ ହୁଏ ଗୁଆ ଚୋବାଇବାରେ ।

## ବୁଭୁଁ ଗ୍ଲେସିଅର ( ୯୬+୧୧=୧୦୭ ମାଇଲ )

ସେ ଦିନ ତିନିଟା କି ସାଢ଼େ ତିନିଟା ସମୟରେ ଆସେ ପହଞ୍ଚିଲୁ ବୁଭୁଁ ନାମକ ଯାଗାରେ । ତମ୍ବୁ ଟଣା ସରିଥାଏ ।

ସେଠାରେ ମୁଁ ପଡ଼ଞ୍ଚି ଯାଇଛି, ଦେଖିଲି ଯେ କର୍ଣ୍ଣମା ଏଡ଼େ ଏଡ଼େ ଆଖିରେ ମୋତେ ଗୃହୁଁଛି । ମନରେ କଷ୍ଟା ଦେଖାଗ୍ରେପର ଭାବ ଅଛି । ଭାବଥିଲି ଆଗରୁ ଘୋଡ଼ାରେ ବସିବା ପାଇଁ ଯୋଗାଡ଼ କରି ପଞ୍ଚିରେ ଘୋଡ଼ାରେ ବସି ତାକୁ କଷ୍ଟ ଦେଇଥିବା ହେତୁ ସେ ମୋ ଉପରେ ରାଗିଛି । ଅଥବା ସନ୍ଦେହ କରି ବାହୁଁ ରାଗି ମୋର ଯାହା ଦଣ୍ଡ କରିଦେଇପାରେ ବା ଅସୁବିଧାରେ ପକାଇ ଦେଇପାରେ । ତାକୁ ଦେଖି ଦେଖି ଥଙ୍ଗି ଅସୁଥିଲି । ନିଜକୁ ସଜାଡ଼ି ନେଲି । ଭଟାଷ୍ଟା ସଠିକ୍ ଭାବେ ନ ଜାଣିଥିଲି ମଧ୍ୟ, ହଲାଇର ରାଗାରାଗିର ଅଲଗା ବନ୍ଧୁଥିବାରୁ ମୁଁ ତାକୁ ଚଲ ଚଲ ଭଲ ପରଲତାର ଅଭିନୟ କରି ବୁହିଁ ରହି ମୋର ଟମ୍ଭୁ ଅଡ଼କୁ ଆଗେଇଲି ।

ପାଥି ସହକା ନଦସ୍ୱାମୀ ଖବର ଦେଲେ—

କଟଖମାର ଗୋଟିଏ ଘୋଡ଼ା ଭ୍ରମଣ କଷ୍ଟ ପାଉଛି, ଚଟପଟ ହେଉଛି । ମୋତେ ଔଷଧ ଦେବାପାଇଁ ଅନୁରୋଧ କଲେ । ମୁଁ ଭଲକରି ଦେଖିପାରୁଛି ଏ ହେଉଛି ମରଣ ଯନ୍ତ୍ରଣା । ଇଏ ଆଉ ବଞ୍ଚିବ ନାହିଁ । ଅଥବା ଔଷଧ ବାହିଁକି ନଷ୍ଟ କରିବ ? ତାହା ଅନ୍ୟ ପାଇଁ ଦରକାର ସମୟରେ କାମରେ ଆସିବ । ସେଥିହେତୁ କିଛି ହୋମିଓପାଥିକ୍ ବଟିକା ଦେଇ ଦେଇଛି, କେବଳ ତାକୁ ଖୁସି କରିବା ପାଇଁ ।

ଭାବିଲି—ମୁଁ ପ୍ରତିଶୋଧ ନେବାକୁ ପାଇ କିଛି ମନ୍ଦ ମନ୍ଦ କରିଛି, ବା ଭଗବାନ ତାକୁ ମୋ ହେତୁ ଦଣ୍ଡ ଦେଇଛନ୍ତି— ଏପରି ଭାବ ସେ ମୋତେ ଅନ୍ତିମ ଦୃଷ୍ଟି ଛଳରେ ବଡ଼ ବଡ଼ ଆଖିରେ ଗୃହୁଁଥିଲା ।

ତାର ଏହି ବଦେଢ଼ରେ ମୁଁ ପ୍ରକୃତରେ ଦୁଃଖି ଥିଲି ଓ ସେ କଥା ସ୍ପଷ୍ଟ ଭାବରେ ଜଣାଇଲି ।

ମାଝରେ ଗୋଟିଏ ଦୋକାନ୍ ଥିଲା । ଗୃହସ୍ୱାମୀ ସେ ଗାଁର ଏକ ଧନୀ ଜମିଦାର ଥିଲେ; ମାନେ ପୂର୍ବ ଇଲାକାଟା ତାଙ୍କର । ଅନେକ ଗାଈ ଗୋରୁ, ଛେଳି, ମେଣ୍ଢା ଥିଲେ । ଶୀତ ଯେବେ ଆସିବା ପରେ ସେ ସବୁ ଚାଲନ୍ତି । ଏବେ ଖଣ୍ଡେ ଗଭୀର । କାଚକମ୍ପାର ଦୂର ସମ୍ପର୍କିତ ବନ୍ଧୁ । ଯେଉଁଠା ସେ ଧର୍ମ ଓ ମାନୀ ଥିଲେ ତାହାର ଭେଟ୍ଟେଶ୍ୱରନ୍ତୁ ଓ ଘାଟରେ ଥିବା ଅତ୍ୟାଧି ଶିଳ୍ପ ଅନୁଷ୍ଠାନରୁ ସ୍ପଷ୍ଟ ଜଣାପଡୁଥିଲା । ଘରମୁ ପାଖ ଦେଇ ଗୋଟିଏ ଖର ସ୍ରୋତା ନାଳ ଥିଲା । ସେହି ପାଣିକୁ ବନ୍ଧ ବାନ୍ଧି ଗୋଟିଏ ଖୁଆ ଉପରେ ଦେଇ ପେଷା କଳକୁ ଚଳାଇବାର ବ୍ୟବସ୍ଥା କରିଥାନ୍ତି । କେଦାର-ବଦ୍ରୀ ରାସ୍ତାରେ ମଧ୍ୟ ଏହି ଧରଣର, କିନ୍ତୁ ଛୋଟ କଳ ଦେଖିଛନ୍ତି । ସେହି ଜାଗାମାନଙ୍କରେ ସୂଅ ଅତି ପ୍ରଖର ଥିବା ହେତୁ ସେଠାରେ ବାଷ୍ପସାପେକ୍ଷ ବା କଷ୍ଟସାଧ ହୋଇ ନଥାଏ ।

ସନ୍ଧ୍ୟାବେଳେ ଭଗବନ୍ତଜୀ ଗୋଡ଼ରେ ଘୁଂଘୁର ଓ ହାତରେ ହେ.ଲଣ୍ଟର 'ଶିବ ଶିବ ହର ହର ଭୋଲେ' ବୋଲି ଗୀତ ଗାଇ ନାଚିଲେ । ଆମ୍ ସାଥିରେ ଥିବା ତିବ୍ବତୀୟ ଗୃହଚରମାନେ ତାଙ୍କ ସାଙ୍ଗରେ ମିଶିଲେ । ଆମ ଭିତରୁ ମଧ୍ୟ କେତେକ ଗୀତ ଓ ଭଙ୍ଗିରେ ଯୋଗଦାନ କଲୁ । ଦେଖଣାହାରୀ ଭିତରେ ପାଞ୍ଚ ଜଣ ତିବ୍ବତୀୟ ମହିଳା ଆସି ଜୁଟି ହେଲେ । ସ୍ତ୍ରୀଙ୍କର ନାଚ ପରେ ଶେଠ୍ଜୀ ତାଙ୍କୁ ନାଚିବାକୁ କହିବାରୁ, ବହୁ ଅନୁରୋଧ ପରେ, ହାତ ଧରା ଧରି କରି ନାଚ ଗାଇବାକୁ ଆରମ୍ଭ କଲେ । ନାଚଟା ଦେଖିଲି ଭଲା

ଲାଗୁଥାଏ । ଶେଠ୍‌ଜୀ ପରିବାରକୁ କୁହାଯାଉଥାଏ—'କୂଅ ଭେକର
ଉପରକୁ ଉପରକୁ ଆଗେଇଛନ୍ତି, ସେହିପରି ଆମମାନଙ୍କୁ କଳ-
କାରଖାନାର ଉତ୍ପାଦନ ବଢ଼ାଇବାକୁ ହେବ । ଶୁଣିଲି ଗୀତା
ସ୍ୱେଚ୍ଛା ସେବକମାନେ ଆଜି ଗାଁ-ଗଣ୍ଡାରେ ବୁଲି ନାଚ ଓ ଗୀତ
ଶିଖାଇ ଯାଉଛନ୍ତି । ହଠାତ୍ ମନେ ପଡ଼ିଲା 'ଟେଙ୍ଗ୍‌ଲିନ ପତନର'
ନାଚଟି ଓ ଧର୍ମନୈତିକ ଏ ଗୀତଟି ହେଉଛି ଇଣ୍ଟରନେସନେଲ୍
ଛନ୍ଦରେ ଲେଖା । ସେମାନେ କେବଳ ସେହି ଗୋଟିଏ ଗୀତ ଓ
ନାଚ ଜାଣିଥିଲେ ।

ଜାଣିଚ ବା କଅଣ ? ତିବ୍ବତ ଗୋଟିଏ ବିଶାଳ ଦେଶ ।
ଜନ ସଂଖ୍ୟା ଖୁବ୍ ପାତଳା ଓ କାଁ ଭାଁ ଜାଗାରେ । ଆମପରି ବା
ଯୋ ବଡ଼ ଦେଶଠି ଲୋକ ଗାଁ ଗଣ୍ଡାରେ ଥାନ୍ତି, ଆଗେ ଯେଉଁଠି
ସ୍ୱାମୀମାନେ ଥିଲେ ବା ଯେଉଁଠି ରାଜଧାନୀ ଥିଲା । ତିବ୍ବତ
ରାଜଧାନୀ ଥିଲା ଲାହାସା, ଏବେ ମଧ୍ୟ ଅଛି—ଏଠାରୁ ଆଠ ଶହ
ମାଇଲ ଦୂରରେ । ଦଲାଇଲାମା ଥିଲେ ତାଙ୍କର ଧର୍ମଗୁରୁ ଓ ରାଜ୍ୟ
ମୁଖ୍ୟ । ତାଙ୍କ ନିର୍ଦ୍ଦେଶରେ ରାଜ୍ୟ ଚାଲୁଥିଲା । ସେ କୁଆଡ଼େ
ବୁଦ୍ଧଙ୍କର ଅବତାର । ଆବାଲ୍ୟ ସନ୍ୟାସୀ । ଉତ୍ତରାଧିକାରୀ କିଏ
ହେବ ? ସେହି ହେବ, ଯିଏକି ଏ ମରିବାର ସମୟରେ ଜନ୍ମ
ହୋଇଥିବ ଓ କେତେଗୁଡ଼ିଏ ଲକ୍ଷଣ ଓ କଳା ଯୁକ୍ତ ଥିବ । ଏପରି
ପିଲା ପାଇଁ ସାରା ତିବ୍ବତରେ ଖୋଜା ପଡ଼େ । ସେଥିରୁ ବିଜ୍ଞ ଲୋକ
ମଧ୍ୟ ଅଛନ୍ତି ଯେଉଁମାନେ ଖୋଜିବା ପାଇଁ ସକ୍ଷମ । ଆଉ ନବ
ଦଲେଇଲାମା ପାଇଁ ମଧ୍ୟ ସେପରି ଇମିତି ଖୋଜା ଯାଇଥାଏ । ରାଜ୍ୟର
ବିଜ୍ଞ ବିଜ୍ଞ ଲୋକଙ୍କଦ୍ୱାରା ପିଲାଟିକୁ ସବୁ ପ୍ରକାର ସାଧନା ଓ ତାଲିମ୍
ଦିଆଯାଇ ଥାଏ । ସେ ଯେତେବେଳେ ନାବାଳକ ଥାଏ ପଞ୍ଚେନ୍‌ଲାମା
ରାଜ୍ୟ ଭାର ନିଅନ୍ତି । ସେ ହେଉଛନ୍ତି ଟିକିଏ ଅଧିକ ସଦ୍‌ଗୁରୁ

ଚଣ୍ଡୀନ୍ଦ୍ର—ସ୍ୱାଭର ଗୁଣ । ସେ ମଧ୍ୟ ବୁଦ୍ଧଙ୍କ ଅଂଶର ଅବତାର । ଗୁଣ ଭେଦରେ କର୍ମ ଭେଦ ।

ସ୍ୱାପରେ ହେଲ ଉତ୍ତର ଧର୍ମ କ'ଣ ? ପ୍ରଥମେ ଧର୍ମ ବା କ'ଣ ? ଧର୍ମ ହେଲା ଯେଉଁ ନିୟମାବଳୀ ଏ ସଂସାରକୁ ଧାରଣ କରି ରହିଛି, ପାଣିକୁ ମାଠିଆ ଯେପରି ଧାରଣ କରି ରଖେ । ମାଠିଆ ଭାଙ୍ଗିଲେ ଗଲା ।

ଧର୍ମ ହେଉଛି—କର୍ତ୍ତବ୍ୟ । ଧାରଣ କରିବା ପାଇଁ ଯାହା କରିବାର କଥା । ମଣିଷ ମଦ ଛାଡ଼ କରିବା କଥାଟି କରେ ତାହାହେଲେ ତୃପ୍ତି ରହିବ ।

ଧର୍ମ ହେଉଛି—ଗୁଣ । ନିଆଁର ଗୁଣ ପୋଡ଼ିବା । ପାଣିର ଗୁଣ ଖେଳେଇ ବ୍ୟାପିବା, ଇତ୍ୟାଦି । ମଣିଷ ନିଜ ତାର ଗୁଣ ଅନୁଯାୟୀ କର୍ମରେ ଲିପ୍ତ ଥିବ, ସେ ହେବ ଧର୍ମ । ବର୍ଣ୍ଣଭେଦ ଏଥିରୁ ସ୍ପଷ୍ଟ । କିନ୍ତୁ ବର୍ତ୍ତମାନ ଋଷିଆ ବା ଆମେରିକାରେ ପିଲାର ଗୁଣ ଅନୁଯାୟୀ ଶିକ୍ଷା ଦିଆଯାଏ । ଏଠାରେ ଗୁଣ ହେଲା ରୁଚି । ସେହେତୁ ଧର୍ମ ହେଉଛି—ରୁଚି ।

ସେହେତୁ ଗୁଣ ଓ ରୁଚି ଅନୁଯାଇ ନିଜକୁ ତଥା ସମାଜକୁ ଧାରଣ କରିବାକୁ ଯାହା କରିବାର କଥା ସେ ହେଲା ଧର୍ମ । ଧର୍ମଟା କର୍ତ୍ତବ୍ୟ, ଗୁଣ ଓ ରୁଚିର ବାହାରେ ହେଲେ ସେ ହେଉଛି ପରଧର୍ମ ଏ ସ୍ଥଳବିଶେଷରେ ଅଧର୍ମ ।

ସ୍ୱଧର୍ମେ ନିଧନଂ ଶ୍ରେୟଃ ପରଧର୍ମୋ ଭୟାବହଃ ॥

ବର୍ତ୍ତମାନ ମାଠିଆ ଭାଙ୍ଗିବା କଥା ହେଉ । ମାଠିଆକୁ ଯଦି ବାଡ଼ିଲେ ମାରିବ ମାଠିଆ ଭାଙ୍ଗିଯିବ । ପାଣିତକ ବହିଯିବ । 'ଦୋଷ

ତାହାର ? ମାଟିଆର ? ନା ସ୍ୱର୍ଗ ଯାହା ତ ତାର ଧର୍ମ ତ ଯାହାରେ ନୁହେ । ବାଡ଼ୁଳାର ? ନା, ସ୍ୱର୍ଣ୍ଣ ତା ତାର ଧର୍ମ । ବନ୍ଧୁ ସ୍ୱର୍ଣ୍ଣ-ଦେବାଷ୍ଟ ହେଉଛି ଅଧର୍ମ । ସ୍ୱର୍ଣ୍ଣରୁ ସନ୍ତାନ ଧର୍ମର ସାହାଯ୍ୟ ନେଇ । କଣ୍ଟାରେ କଣ୍ଟାକୁ ବାହାର କରିବ । ତୁମେ ଯାହା ଦେଖ ଭଲ, ସେ ତାକୁ ଦେଖେ କଣ୍ଟା । ତୁମେ ଯାକୁ ଦେଖ କଣ୍ଟା, ସେ ତାକୁ ଦେଖେ ଭଲ । ସେ ସନ୍ତାନ କିଏ ? ଉତ୍ତର—ଯିଏ ସ୍ୱଙ୍ଗେ । ଭଗବାନ୍ଙ୍କ ଭାବର ପ୍ରବର୍ତ୍ତିତ । ଭଗବାନ୍ଙ୍କ ଶକ୍ତି ସମ୍ପନ୍ନର ସ୍ୱସ୍ପୃ, ମିଳନ ଶକ୍ତି ।

ଏହି କଥାକୁ ବିଶ୍ଳେଷଣ କରି, ତର୍କ କରି, ଅନୁଧ୍ୟାନ କରି, ଜୀବନବ୍ୟାପୀ ସାଧନା କରି, ଋଷିମାନେ ଅବଷ୍ଟାର କରିଥିଲେ—ଯେଉଁ କଥା କି, ଯେଉଁ ନୀତିମାଳା ଏହି ମାନବ ସମାଜକୁ ଧାରଣ କରିପାରିବ—ଧର୍ମ ।

ଯେହେତୁ ସେ ମନୁଷ୍ୟ ସମାଜକୁ ସବୁକାଳ ପାଇଁ ଧାରଣ କରିବ, ସେହେତୁ ସେ ଧର୍ମ ଶାଶ୍ୱତ, ଚିରନ୍ତନ, ସନାତନ ଓ ସଦା ନୂତନ ଥିବାକୁ ହେବ । ସେହେତୁ ସେ ଗୋଟିଏ ଥିବ ସତ୍ୟ ଓ ଅନ୍ୟ ସବୁ ଅସତ୍ୟ । ସେହି ସତ୍ୟ ପ୍ରତି ଦୃଷ୍ଟି ରଖି, କର୍ତ୍ତବ୍ୟ କରିବା ହେଉଛି ଧର୍ମ—ମାନେ ସଠିକ୍ ବାଟ । ମଣିଷ ଏଥିରୁ ଯେତିକି ପାଖରୁ ବାହୁଳି ମାଡ଼ିବ ଲୋଭ ସେତିକି କମିବ ତା ମାଟିଆ ସେତିକି ଅଣ୍ଟ ହେବ । କାରଣ ମଣିଷ ହେଲା, କାମ, ଦୋଷ ଓ ସଙ୍ଗଦୋଷ ଅନୁସାରେ ସେତିକି ପରିମାଣରେ ସନ୍ତାନର ଜାତ ପିତୁଳ । ଦୋଷଯୁକ୍ତ ଲୋକ ଦୋଷଯୁକ୍ତ ଭାବରେ ବ୍ୟାପୃତ ଥାଏ । ସେତିକିବେଳେ ସେ ପୁଣି ସନ୍ତାନ । ବୃଦ୍ଧିରେ କାହିଁ ସେ କ'ଣ କରୁଛି । ସତକୁ ଅସତ୍ୟ ଦେଖେ ଓ ଅସତ୍ୟକୁ ସତ୍ୟ

ଦେଖେ । ବୃଦ୍ଧ ବା ଧର୍ମ ଦୁଇଟି ଯାକରେ ଅଛୁକ ନା ? ଏହି ଭଆଛି ହେଲ ଉଦ୍ୟାନ କମ୍ପ୍ଲେକ୍ସରେ ମାଗସୂଚ । ଅପଣଙ୍କୁ ଅନୁଦ୍ୟ ଏହାର ଅଧ୍ୟୟକରାର ମେଟଲ ନ କରନ୍ତୁ । ରଚନାରେ ତଥା ଧର୍ମନର ଖଣ୍ଡାନ୍ତ ।

ଭଲ ଋଷିଙ୍କ ନାମରେ ଭଲ ପ୍ରକାରର ଧର୍ମର ପ୍ରବର୍ତ୍ତିକା ଭଗାଯାଉଛି ଗୋଲ କୁହାଯାଏ । ବାସ୍ତବରେ କାଳ ଓ ସ୍ଥାନ ଦେଖି, ଦେଖି ଋଷିମାନେ ଧର୍ମର କହୁଛୁ ଅଂଶ, ଅବସ୍ଥା ପ୍ରତି ଦୃଷ୍ଟି ରଖି, ପ୍ରବର୍ତ୍ତନ କରିଥାନ୍ତି । ଧର୍ମ ପ୍ରତି ଲକ୍ଷ୍ୟ କର ସେମାନେ ଦେଖାଇଥାନ୍ତି ଗୋଟିଏ ଗୋଟିଏ ଧାର ବା ପଥ—ବାଟ । ବୌଦ୍ଧ ଧର୍ମ ହେଲ ସେଥିମଧ୍ୟରୁ ଗୋଟିଏ ଅଂଶ, ପଥ, ବାଟ, ପନ୍ଥ ବା ପନ୍ଥା । ତଥା କଥିତ ବୌଦ୍ଧ ଧର୍ମର ପ୍ରବର୍ତ୍ତକ ହେଲ ବୁଦ୍ଧଙ୍କଠାରୁ ।

ସେ ଦେଖିଲେ ଜଗତ ଦୁଃଖମୟ—ଜରା, ବ୍ୟାଧି, ମୃତ୍ୟୁ, ଶୋକ । ଅପୂର୍ଣ୍ଣ ପୁଣି ଏହି ଲୋକମାନେ, ତୃଷ୍ଣାର ବଶ ନେଇ- ଅଛନ୍ତି ବୋଲି, ପୂର୍ଣ୍ଣତ୍ୱ ପ୍ରାପ୍ତି ଉଦ୍ଦେଶ୍ୟରେ, ସୁଖର ସନ୍ଧାନରେ ଲାଗିବାକୁ ଯାଇ, ଇନ୍ଦ୍ରିୟ ଭୋଗରେ ମାତନ୍ତି । ଏଥିରୁ ଦୁଃଖ ଜନ୍ମେ । ସେହେତୁ ସନ୍ନ୍ୟାସ ବୁଦ୍ଧଦେବ ଠିକ୍ ଭାବ, ଠିକ୍ କାମ, ଠିକ୍ କଥା, ଏହିପରି ଠିକ୍-ପଥରେ ପ୍ରବର୍ତ୍ତନ କରିଥିଲେ । ଏହାର ଉଦ୍ଦେଶ୍ୟ ଜନ୍ମ ଅଧିକାଂଶରୁ ନ ହୋଇବୁ ।

ମୁନି ଋଷିମାନେ ଭଗବାନଙ୍କର ତତ୍ତ୍ୱ ଅନୁଭବ କରି ଅନେକ ପ୍ରକାରରେ ବର୍ଣ୍ଣନା କରିଛନ୍ତି । ସେମାନେ କହନ୍ତି ଯେ ଭଗବାନ ଅନନ୍ତ, ଶୂନ୍ୟ, ନିରାକାର, ସାକାର, ସ୍ତ୍ରୀ, ପୁରୁଷ, ଦ୍ୱୈତ, ଅଦ୍ୱୈତ, ଶକ୍ତି, ଏ ସମସ୍ତ, ଇତ୍ୟାଦି । ଯାହାକୁ ନେଇ ଲୋକେ ଯୁକ୍ତି ତର୍କରେ

ମାତ୍ର, ଅଟଳ ଭକ୍ତି ଓ ସାଧନା, ତାଙ୍କୁ ଭୁଲି ଯାଉଥିଲେ। ସେହେତୁ ସ୍ୱାମୀ ଗୌତମ ବୁଦ୍ଧ-ଦେବଙ୍କୁ ଯୁକ୍ତି ତର୍କରୁ ନିବୃତ୍ତାଇ ସାଧନାରେ ଲଗାଇବା ପାଇଁ ଭଗବାନଙ୍କ ଫଙ୍କା ଶୂନ୍ୟ ରଖିଥିଲେ।

ପତନଙ୍କର ସାଧକର ଅହଂଭାବ କେବଳ ଏକ ଏକକ। ଅହଂଭାବକୁ ସାଧନାଦ୍ୱାରା କମାଇ, ଭାଗ ଭାଗ କରି, ଭଗବତ୍ ସତ୍ତା ଅଧିକରୁ ଅଧିକ ଅନୁଭବ କରାଯାଏ। ଧରନିଅ ଜଣେ ସାଧକ ସାଧନା ଆରମ୍ଭ କଲା। କେତେକ ସମୟ ପରେ ତାର ଅହଂଭାବକୁ ଅଧା କରିଦେଲା। ରହିଲା ଅଧେ। ସାଧନାରେ ଆଗେଇ ବଳକାଟାକୁ ଅଧା କରିଦେଲା। ରହିଲା ଏକକର ଚାରିଠେ। ସେହିପରି କ୍ରମଶଃ ଏକକର ଏକ ଭାଗକୁ ଆଠ, ଷୋହଳ, ବତିଶ, ଚଉଷଠି ଏପରି ହୋଇ ଚାଲିଲା। ଏପରି ଅନନ୍ତ ଭାଗ କଲେ, ବଳକା ଅଂଶଟି ଶୂନ୍ୟ ନିକଟକୁ ପାଖେଇ ଆସେ। କିନ୍ତୁ ସମ୍ପୂର୍ଣ୍ଣ-ଭାବେ ଶୂନ୍ୟ ହୋଇପାରେ ନାହିଁ। କାରଣ କିଛିଟା ନିଶ୍ଚୟ ବଳକା ରହିବ, ଯେପରି ଚେଷ୍ଟା କରନ୍ତୁ। ଏହି ନଗଣ୍ୟଟାକୁ ଶୂନ୍ୟ ବୋଲି ଧରି ନିଆଯାଇଥାଏ। ସେହେତୁ ଶୂନ୍ୟ କୌଣସି ସଂଖ୍ୟା ନାହିଁ, ଏହା କେବଳ ଗୋଟିଏ କାଳ୍ପନିକ ସଂଖ୍ୟା— ଯେଉଁ ଅବସ୍ଥାକୁ ଯୋଗ ଶବ୍ଦ ଗତି କରୁଛି, ଯେଉଁ କାଳ୍ପନିକ ଅବସ୍ଥାରେ ଶବ୍ଦ ଦୃଶ୍ୟ ସ୍ପର୍ଶ ଜଗତରେ ତାର କର୍ତ୍ତୃତ୍ୱ ହରାଇ କରାଏ ଓ ଯାହାକୁ ଧରି ବହୁ ଗୁରୁଙ୍କର ନିବୃତ୍ତିର ଗତି ନିରୂପିତ ହୋଇଥାଏ।

ଅର୍ଥାତ୍ ଶୂନ୍ୟ ଏପରି ଗୋଟାଏ କଳ୍ପନା, ଯେଉଁ ଅବସ୍ଥାକୁ ସାଧକ ଗତି କରୁଛି। ଏହି ଶୂନ୍ୟ ପାଖକୁ ସାଧକ ଯେତେ ପାଖେଇ ଆସେ, ଏ ବିଶ୍ୱ-ବ୍ରହ୍ମାଣ୍ଡ ରୂପକ ଲେଖା ବା ଭେଦରେ ଶବ୍ଦ

ଶରୀର ସ୍ଥାନ ନିର୍ଦ୍ଧାରଣ ଓ ଗତି ନିରୂପଣ ସେ ସେତିକି ଠିକ୍
ଧାରେ କରିପାରେ, ଦେଖିପାରେ । କିନ୍ତୁ ସାଧକ ସେହି କଳ୍ପିତ
ଶୂନ ଅବସ୍ଥାକୁ କସ୍ମିନ୍ କାଳେ ଆସିପାରେ ନା । କାରଣ, ସାଧକ
ଥାଏ କିଛି, ବା ସେ କଳ୍ପିତ ଶୂନ ଅବସ୍ଥାଠାରୁ କିଛି ଦୂରରେ,
ସଦା ଓ ସର୍ବଦାର । ଠିକ୍ ଶୂନ ଅବସ୍ଥାର ସ୍ଥିତି ନାହିଁ । ସେହେତୁ
ଜ୍ଞାନୀ ଗୌତମ ବୁଦ୍ଧ ଯେଉଁଥିରେ ଅଯଥା ମୁଣ୍ଡ ନ ଖେଳାଇବା ପାଇଁ
କହୁଛନ୍ତି—'ଭଗବାନ ଶୂନ ଯାର ସ୍ଥିତି ନାହିଁ' । କଥାଟି ସତ ଓ
ମିଛ ନୁହେଁ, ତାର ମାନେ ନୁହେଁ ଯେ ଭଗବାନ ନାହାନ୍ତି ।
କେବଳ କଥାଟି ବୁଝିବାରେ ଭୁଲ । ବୁଝିପାରିବ ହେଲୁ, ଯେ
ଶୂନ ପାଖାପାଖି ହେଉଛି, ଯାହାର ସଂସ୍କାର ଓ ଦୃଷ୍ଟି-ଦୋଷ
ନଗଣ୍ୟ ହୋଇ ଆସିଛି । ସେଥିପାଇଁ ପ୍ରଥମ ପର୍ଯ୍ୟାୟରୁ ଅଶେଷ
ପର୍ଯ୍ୟାୟ ପର୍ଯ୍ୟନ୍ତ ସାଧନା ଦରକାର । ସେ ସେଇଆ କହିଥିଲେ
ଓ ପ୍ରଚଳିତ କରିଥିଲେ ।

ବୁଦ୍ଧଦେବ ଏହାକୁ ପ୍ରଚଳିତ କରିଥିଲେ ଭାରତ ଭୂମିରେ ।
ତେବେ ଭାରତଠାରୁ ପୃଥକ୍ । ହେଗେଲଙ୍କ ଦୃଷ୍ଟିରୁ ମଣିଷର ପ୍ରକୃତି
ସହିତ ସଂଗ୍ରାମ କରିବା ପ୍ରଣାଳୀ ମଧ୍ୟ ପୃଥକ୍ । ସଂଗ୍ରାମ କରିବାକୁ
ପଡ଼ୁଥିଲା ପ୍ରକୃତିର କେତେକ ହିଂସ୍ର ଶକ୍ତି ବିରୁଦ୍ଧରେ—ତନ୍ତ୍ରର
ମାହାତ୍ମ୍ୟରେ । ଅଥବା ସନ୍ତୁଷ୍ଟ କରୁଥିଲେ ପୂଜାପୂଜି କରି, ଯାହାକୁ
ମଧ୍ୟ ନିମ୍ନସ୍ତରର ତନ୍ତ୍ର କହନ୍ତି ।

ତରେ ପ୍ରଶ୍ନ ହେଲା ; ତନ୍ତ୍ର କ'ଣ ? ଯୋଗୀ ଗର୍ବ କରି
କହନ୍ତି ଯେ ସେମାନେ ବୈଜ୍ଞାନିକ । ସେମାନେ ହେଉଛନ୍ତି ଅସଲ
ବୈଜ୍ଞାନିକ ଯେଉଁମାନେ 'କପରି ହୁଏ ?' ତାକୁ ଛାଡ଼ି କାହିଁକି ହୁଏର
ଅନୁସନ୍ଧାନ କରନ୍ତି । ସେମାନେ ଯଦି ସେପରି ଅସଲ ବୈଜ୍ଞାନିକ

ହୋଇଥାନ୍ତି, ତାହାହେଲେ ଅସନ୍ତୁ ପ୍ରୟୋଗଶାଳାକୁ । ଚାଲଯାଅନ୍ତୁ ଟେବୁଲ ପାଖକୁ । ଧରି ଅନ୍ତୁ ଅନେକଗୁଡ଼ାଏ ତ୍ରିଶୂଳ । ସେଗୁଡ଼ିକ ଥିବ ଭିନ୍ନ ପ୍ରକାରର ସ୍ପନ୍ଦନର । ପ୍ରତ୍ୟେକ ସ୍ପନ୍ଦନର ଦୁଇ ତିନୋଟି ଲେଖା ନେଲେ ଭଲ । ସେଗୁଡ଼ିକ ଟେବୁଲ ଉପରେ ସଜାଡ଼ ରଖନ୍ତୁ । ଗୋଟିକୁ ମୃଦୁ ଆଘାତ କରି ଝଙ୍କାରିତ କରନ୍ତୁ । ତାକୁ ହାତ ଲଗାଇ ବନ୍ଦ କରନ୍ତୁ । ସେହି ଝଙ୍କାର ଚାଲିଛି, ଶୁଣିବାକୁ ପାଇବେ । ନିରୀକ୍ଷଣ କଲେ ଦେଖିବେ, ଅଉ ଦୁଇ ତିନୋଟି ବି ଝଙ୍କାରିତ ହେଉଛି । ଗୋଟିକର ସ୍ପନ୍ଦନ ଅନ୍ୟଟିର ସ୍ପନ୍ଦନର କାରଣ ହେଉଛି । ଯେହେତୁ ଆଘାତ ପାଇ ସ୍ପନ୍ଦିତ ହୋଇଥିବା ତ୍ରିଶୂଳ ସହିତ ଅନ୍ୟ ଦୁଇଟି ସମ ସ୍ପନ୍ଦନର । ଅନ୍ୟାନ୍ୟ ତ୍ରିଶୂଳଗୁଡ଼ିକ ଝଙ୍କାରିତ ହେଉ-ନାହାନ୍ତି, ଦେଖିବାକୁ ପାଇବେ । ସେମାନଙ୍କଠାରେ ସ୍ପନ୍ଦନ ନାହିଁ, କାରଣ, ସେମାନେ ପ୍ରଥମଟି ସହିତ ସମସ୍ପନ୍ଦନର ନୁହନ୍ତି । ଏଥିରୁ ଆହୁରି ଜଣାଗଲା ଯେ ଅନେକ ପ୍ରକାରର ସ୍ପନ୍ଦନ ତଥା ଝଙ୍କାର ଅଛି । ସ୍ପନ୍ଦନରୁ ଝଙ୍କାର ଓ ଝଙ୍କାରରୁ ସ୍ପନ୍ଦନ ଜାତ ହୁଏ । ଝଙ୍କାର ହେଉଛି ଶବ୍ଦ । ସ୍ପନ୍ଦନ ହେଉଛି ଶକ୍ତି । ଶକ୍ତିରୁ ରୂପାନ୍ତର ସୃଷ୍ଟି । ଏ ହେଲା ଭଙ୍ଗାନାଗାରର ପ୍ରଣାଳୀ ।

କିନ୍ତୁ ଏ ବିଶ୍ୱବ୍ରହ୍ମାଣ୍ଡ ପଥ୍ୟ ଜଣେ ମହାପାନବର ଭଙ୍ଗାନାଗାର । ତାର ସୃଷ୍ଟି ପଛରେ ଅଛି ଶକ୍ତି । ଶକ୍ତି ପଛରେ ଅଛି ବ୍ରହ୍ମହେଦୀ ଝଙ୍କାର — The word' ବା ଶବ୍ଦ ବ୍ରହ୍ମ । ସୃଷ୍ଟି ପ୍ରବର୍ତ୍ତନକାରୀ ସମସ୍ତ ମୌଳିକ ଝଙ୍କାରର ଐକ୍ୟ ନାଦରେ ହୋଇଛି ଏହି ପ୍ରଣବର ଝଙ୍କାର । ଏହି ଝଙ୍କାର ବା ଝଙ୍କାରଗୁଡ଼ିକର ଶବ୍ଦକୁ ମନ୍ତ୍ର ଋଷିମାନେ ମୌଳିକ ପଣ୍ଡିତ ଶ୍ରେଣୀର ଶବ୍ଦକୁ ନେଇଛନ୍ତି—ତାଙ୍କର ପାଠରେ ଯେଉଁଥିମ ମନ୍ତ୍ର । ତାଳୀ ହେଲେ ମୂର୍ତ୍ତିମନ୍ତ ସ୍ପନ୍ଦନ । ଶବରୂପୀ ନିଷ୍କଳ ବସ୍ତୁରେ ସ୍ପନ୍ଦନ ଆଣି ଈନବରର ସୃଷ୍ଟି ସ୍ଥିତି ଓ ସହାରର ଲୀଳା

ଚଳାଇଛନ୍ତି । ଋଷିମାନଙ୍କ ଭାଷାରେ କଣ୍ଠ ମୂଳରେ ଆରମ୍ଭ ହେଉଛି ଅ, ମଧ୍ୟରେ ଉ, ଓ ଶେଷରେ 'ମ' । ଯେତେ ପ୍ରକାର ଶବ୍ଦ ବା ଝଙ୍କାର ଅଛି, ଏ ମୂଳ ପରସ୍ପର ଭିତରୁ—ଏକର ବା ଅନେକର ନାନା ପ୍ରକାରର ସମ୍ମିଶ୍ରଣରେ ଉଦ୍ଭୂତ ହୋଇଛନ୍ତି । ଏହି ଭିନ୍ନ ଭିନ୍ନ ପ୍ରକାରର ଶବ୍ଦରୁ, ସେହି ସ୍ୱରର ଝଙ୍କାର, ଶକ୍ତି, ରୂପାନ୍ତର ତଥା ସୃଷ୍ଟି କ୍ରମାନ୍ୱୟରେ ହାସଲ କରାଯାଇପାରେ । ଏହି ବ୍ରହ୍ମର ଝଙ୍କାର 'ଅଉମ' ଦ୍ୱାରା ବ୍ରହ୍ମଜ୍ଞାନର ହାସଲ ହୁଏ । ଓଲଟା ଯେତେବେଳେ ବ୍ରହ୍ମଜ୍ଞାନ ହେବ, ଶବ୍ଦ ବ୍ରହ୍ମର ଝଙ୍କାର ତଥା ପ୍ରଣବ ଧ୍ୱନି ଠିକ୍ ଭାବେ ଶୁଣାଯାଇ ପାରିବ । ଏ ହେଲା ସଂକ୍ଷେପରେ ତନ୍ତ୍ର ଶାସ୍ତ୍ର ।

ଆଜି ଗୋଟେ ବିଷୟ କଥା ହେଉ । ଆପଣ ତ ଜାଣନ୍ତି ବିଦ୍ୟୁତ୍ ଶକ୍ତି କଥା । ମନେ କରନ୍ତୁ ତା'ର ମୂଳ ଦୁଇଟି ।

ଗୋଟିଏ କାଚର ପାତ୍ରରେ କିଛି ଗନ୍ଧକାମ୍ଳ ନିଅନ୍ତୁ । ସେଥିରେ ଦୁଇଟି କାଠି—ଗୋଟିଏ ଦସ୍ତାର ଓ ଅନ୍ୟଟି ତମ୍ବାର— ବୁଡ଼ାନ୍ତୁ । ଉପର ପଟୁ ସେ ଦୁଇଟିକୁ ତାର ଦ୍ୱାରା ସଂଯୋଗ କରନ୍ତୁ । ଆଶ୍ଚର୍ଯ୍ୟ । ତାହାଦ୍ୱାରା ନିର୍ଜୀବ ବସ୍ତୁ ସଜୀବ ହୋଇ ଉଠିବ, ଆଲୋକ ଦେବ । ଦୁଇଟି କାଠିରୁ ଗୋଟାକୁ କହନ୍ତି ଋଣାତ୍ମକ ଓ ଅନ୍ୟଟିକୁ ଧନାତ୍ମକ । ମୁଁ କିନ୍ତୁ କହିବି ଗୋଟିଏ ପୁଂ-ମୂଳ ଓ ଆରଟି ସ୍ତ୍ରୀ-ମୂଳ । ଦୁଇଟିର ସଂଯୋଗରେ ଶକ୍ତିର ସଂଗ୍ରହ ଘଟିଛି । ଭିତରେ ସ୍ତ୍ରୀ-ମୂଳରୁ ପୁଂ-ମୂଳକୁ ଓ ବାହାରେ ପୁଂ-ମୂଳରୁ ସ୍ତ୍ରୀ-ମୂଳକୁ ଶକ୍ତିର ସଂଗ୍ରହ ହୁଏ । ଗନ୍ଧକାମ୍ଳର ସ୍ଥିତି ମଧ୍ୟ ବିଦ୍ୟୁତ୍ ଉତ୍ପାଦନର ଗୋଟିଏ କାରଣ । ମନୁଷ୍ୟର ଦେହ ମଧ୍ୟ ଗୋଟିଏ ବିଦ୍ୟୁତ୍ ଉତ୍ପାଦକ । ତାର ଗୋଟିଏ ଜାଗାରେ

ସୁପ୍ତାବସ୍ଥାରେ ସ୍ତ୍ରୀ-ମୂଳ ଶକ୍ତିଟିଏ ଅଛି, ଯାହାକୁ ପୁଂ-ମୂଳ ଶକ୍ତି ସହିତ ଯୋଗ କଲେ ଅସୀମ ଶକ୍ତିର ସଂଗ୍ରହ ହୁଏ । ସେହି ସଂଯୋଗଟା ନେଇଁ ଯୋଗ ସାଧନାରେ ବୈଜ୍ଞାନିକ ଭାବରେ ହୋଇପାରିବ ତାହାକୁ କହନ୍ତି ହଂ ଯୋଗ—'ହ' ଓ 'ଠ' ଅଥବା ସୂର୍ଯ୍ୟ ଓ ଚନ୍ଦ୍ରର ଯୋଗ ।

ବୌଦ୍ଧ ଧର୍ମ ଦୁଃଖ ନାଶକ, ସୁଖ କାରକ ଓ ଶାନ୍ତି ଦାୟକ । ଏହା ବ୍ୟବହାରରେ ଲଗାଯାଏ । ତନ୍ତ୍ର କ୍ଷିପ୍ର ଫଳପ୍ରଦ ଓ ନିଜର ରକ୍ଷା ଓ ରୋଗର ଉପଶମ ପାଇଁ ଲଗାଯାଏ । ଜ୍ଞାନ ଦେଇଥାଏ । ହଂ ଯୋଗ ଅସୀମ ଶକ୍ତିର ସଂଗ୍ରହ କରାଇଥାଏ । ଏହା ନିରୋଳାରେ ବା ଏକାନ୍ତରେ କରାଯାଏ । ଏହି ତିନୋଟିକୁ ଧରି, ଅର୍ଥାତ୍ ବୌଦ୍ଧ ଧର୍ମ, ତନ୍ତ୍ର ଶାସ୍ତ୍ର ଓ ହଂ ଯୋଗକୁ ଧରି ତିବ୍ବତୀୟ ବୌଦ୍ଧ ଧର୍ମର ଆବର୍ତ୍ତିବ । ତିବ୍ବତରେ ମନ ନିବେଶ କରିବାକୁ ଧର୍ମକୁ ଛାଡ଼ିଦେଲେ, ଅନ୍ୟ କୌଣସି ବିଷୟ ନଥିଲା ପରି ମନେ ହେଲ । ମାନେ ଆମ ଦୃଷ୍ଟି କୋଣରୁ ଦେଖିଲେ, ପ୍ରାକୃତିକ ପରିସ୍ଥିତି ହେତୁ ସେଠାର ଜୀବନ ଏକଦମ୍ ନୀରସ । ସେହେତୁ ଧର୍ମ ସେଠାରେ ପ୍ରଭାବ ପକାଇଛି ବା ରୂପ ଦେଇଛି । ଏବଂ, ଜନସାଧାରଣଙ୍କ ଭିତରେ, ଅନ୍ଧ ବିଶ୍ୱାସ ସତ୍ତ୍ୱେ, ଧର୍ମର ଫମ୍ପା ବାହ୍ୟାଡ଼ମ୍ବରଠାରୁ ବଡ଼ବଡ଼ ଗୁଣି ମାନଙ୍କର ସୂକ୍ଷ୍ମ ସାଧନା ପର୍ଯ୍ୟନ୍ତ ସମସ୍ତେ ସେହି ଧର୍ମରେ ମାତିଥିଲେ । ସେହେତୁ ଯାହାକିଛି ନୃତ୍ୟ-ଗୀତ ଓ ସଂସ୍କୃତିର ଚର୍ଚ୍ଚା ହେଉଥିଲା ବେଶିଭାଗରେ ରାଜଧାନୀ ଲହାସାରେ, କିଛିଅଂଶରେ ଧର୍ମପୀଠ ଗୋମ୍ପାଗୁଡ଼ିକ ଭିତରେ—କେବଳ ଧର୍ମର ଅଂଶ ଭାବରେ ବୋଧହୁଏ ।

ସେ ଦିନ ସ୍ତାରେ କିଛି ଦୁଧ ମିଳିଲା । ସାମାନ୍ୟ କିଛି ଖେଚୁଡ଼ି ଖାଇଛୁ । ଏଥି ମେଘରେ ଧୂଆଁ ବାଳ ଘୋଡ଼ାଗୁଡ଼ ଗନ୍ଧ କରୁଥିବାରୁ ପାଟିରେ ଅଧେ ଯାଉ ନଥିଲା । ଯଥେଷ୍ଟ ଖିର ପିଇଥିବା ହେତୁ ଖାଇବା ଇଚ୍ଛା ସେତେ ନଥିଲା ।

## ବୁ ଭୁଁ ଛାଡ଼ିଲୁ (୨୭ ଜୁନ ମଙ୍ଗଳବାର)

ସକାଳେ କରଖିମା ଘୋଡ଼ାଟାକୁ ଚନ୍ଦ୍ରଙ୍କ ଜିମାରେ ଦେଇଦେଲ ଓ ଆମେ ଦୁଇ ଜଣ ଶ୍ରୀ ଚନ୍ଦ୍ରଚରଣ ଭକ୍ତଙ୍କୁ ଧନ ଦେଖାଇ ଆଗରେ ବାହାରେ ପଡ଼ିବା ପାଇଁ କହିଲ । ରାମଦାସଜୀ ଓ ମୁଁ ମିଶି ବାହାରି ପଡ଼ିଲୁ ।

ଦଣ୍ଡିସ୍ୱାମୀଙ୍କ ଗୋଡ଼ରେ ଥାଏ ପନପଦନ ଯାଦୁବା ।

ଉତ୍ତରରେ ଜାଗା ଖୁବ୍ ପ୍ରଶସ୍ତ । ପବନ ନିର୍ମଳ ଓ ଥଣ୍ଡା । ଅନେକ ଦୂରଯାଏ ଦେଖି ହୁଏ । ନାକ ସଳଖା ଚାଲିଲୁ । ବାହାରୁ ବାହାରୁ ବାଟରେ, ବାଁ ପଟରେ ଗୋଟିଏ ବାଛୁରି ମରି ପଡ଼ିଥିବାର ଦେଖିଲ । ଦୁର୍ଗନ୍ଧ ହେଉ ନଥିଲା । ମାଇଲିଏ ଖଣ୍ଡେ ଆଗେଇଛୁ ବାଟ ନେଇ ଟିକିଏ ସନ୍ଦେହ ହେଲା । ବୃଦ୍ଧ ସନ୍ୟାସୀ ବାଟ ଠଉରେଇ ନେଇ କହିଲେ—

'ପୈଦଲ୍ ଚଲ୍‌ନା ହରନା ଆସାନ ନହିଁ ହୈ'

ସେ ଟିକିଏ ଥକି ଯାଇଥିଲେ, ଦମ ଗୁହୁଁଥିଲେ ।

ପଛରେ ଦେଖିଲୁ ଘୋଡାଗୁଡ଼ିକ ଅସ୍ଥାନ ଛାଡ଼ି ଚଳନ୍ତି । ସେ ସମୟରେ ଗୋଟେ ପାଟି ଶୁଭିଲା—'ରୁକ୍ ଯାଇଏ—ଏ ।'

ନିମ୍ନଷଣ ଭର ଦେଖିଲି ଘୋଡ଼ା ଓ ଅମ ଯଷ୍ଟିରେ ଜଣେ ଲୋକ ଅମ ଆଡ଼କୁ ମାଡ଼ି ଆସୁଛି । ଯଥ ଓ ଭୌଗଳିକ କାରଣ ହେତୁ ଦୂରକୁ ଦେଖିହୁଏ, ଦୂରତା ଯୋଗୁଁ ବସ୍ତୁଗୁଡ଼ିକ ଅସ୍ପଷ୍ଟ ଦେଖାଯାଏ । ଅମେ ଭାବିଲି ଯେ ଅମ ଭିତରୁ କେହି ଜଣେ ଡାକୁଛି ଯେହେତୁ ଅମେ ଅବାଟ ଧରିଛୁ । ଅଟକି ଗଲି । ମୂର୍ତ୍ତିଟି ଆଗେଇ ଆସିଲା । କିନ୍ତୁ ଏ କ'ଣ !!! ........ ...

ଓଃ ! ସେହି ବଙ୍ଗାଳି ସାଧୀଟି । ଯେଉଁ ଦିନ ଆମେ ଡାକବଙ୍ଗଳାଟରେ ପହଞ୍ଚି, ସେହି ଦିନ ରାତରେ ଦତ୍ତବାବୁ ଜଣାଇଥିଲେ—'ଜଣେ ବଙ୍ଗାଳୀ ସାଧୀ ଏଠାରେ ଏହିକ୍ଷଣି ରହିଅଛନ୍ତି ।' ଅବସ୍ଥା ଖୁବ୍ ସାଂଘାତିକ, ଜଣେଇକ ଦୋକାନୀ ପାଖରେ ଅଛି । ଅବସ୍ଥା ସାଂଘାତିକ କ'ଣ ? ବୋଲି ପଚାରିବାରୁ କହିଲେ— 'ଜ୍ୱର ହୋଇଛି ଓ ଆଖି ଫୁଲି ଲାଲ୍ ଲାଲ୍ ହୋଇଯାଇଛି ।' ମୁଁ ଦେଖିବାକୁ ଯିବାକୁ ବାହାରିବାରୁ, ମୋର ଅବସ୍ଥା ମଧ୍ୟ ସେତେ ଭଲ ନୁହେଁ ବୋଲି ଦର୍ଶାଇ, ପୁଣି ବିଶ୍ରାମ ନେବାକୁ କହି ମନା କରିଥିଲେ । ଆଗନ୍ତୁକ ଅମକୁ ଭେଟିବା କ୍ଷଣି କହିଲେ—'ଦୋ ମରିଚି ମିଲେଗା ?' ମୋ ହାତବ୍ୟାଗ ବାଟରେ ଖାଇବା ପାଇଁ ରଖିଥିବା ବିସ୍କୁଟ ପେକେଟ ଦୁଇଟି ଭିତରୁ ଗୋଟିଏ କାଢ଼ି ତାକୁ ଦେଲି, ଯେହେତୁ ମୋର ଅବସ୍ଥା ଅପେକ୍ଷା ତାର ଅବସ୍ଥା ଖରାପ । ଗୁଣିଆ କପର କୁକୁଡ଼ା ଚୋରିବାଏ ଦେଖିନାହିଁ । କିନ୍ତୁ ଶୁଣିଛି । ଏହି ଭଦ୍ର-ଲୋକଟି ଅତୁରତା ସହକାରେ ଦଣ୍ଟିଯାକ ବିସ୍କୁଟ ସେହିପରି ଚାକୁଲେଇ ନେଲା । ଜରଶୁଣ୍ଡା ଲୋକ ବିସ୍କୁଟ ଓ ଚା ଟିକି ଭୋଗରେ ଲାଗିଥାଏ । ଆଖି ଦୁଇଟି ଲାଲ୍ ଲାଲ୍ ଫୁଲି ଯାଇଥାଏ । ହୋଲା ଲୁଇଟା ଭେଣ୍ଡିପଟକୁ ଦେଖୁଛି, ଜଣା ଯାଉ ନଥାଏ । କିନ୍ତୁ ଲୋକଟା ଅମକୁ ଦେଖି କର୍ଥାବାର୍ତ୍ତା କରୁଥାଏ । କଳା, ଦାଢ଼ଲା, ସାଢ଼େ ପାଞ୍ଚ

ଫୁଟ ଲମ୍ବ, ପିନ୍ଧିଛନ୍ତି ଧୋତି, ଶାର୍ଟ ଓ ସ୍ୱେଟର । ଗୋଡ଼ରେ ଅଛି
କେନ୍‌ଭାସ୍‌ ଶୁ ଓ କନାର ମୋଜା । ତାଙ୍କ ଦାଗୁଆ ପାଚିଲା ଦାଢ଼ି
ଭଲ ଫାଟି ଯାଇଛି । ଦୋଡ଼ାଇ ହୋଇଥାଏ କମ୍ବଳ ତଳର
ଗୋଟିଏ ତୁଳାର ଗୁଦର । ଏ ଟିକେ ସେ ପଟ ହୋଇ ବାନ୍ଧିଛି
ଝୁଲୁଥାଏ ଟିକେଟା ଥଳି । ଛଡ଼ାକୁ ଧରିଥାଏ ସଙ୍ଗୀନ ଯୋଖା
ବନ୍ଧୁକକୁ ଧରିଲା ଭଳି—'କାନ୍ଧେ ଶସ୍ତ୍ର' କରି । ଚାଲୁଥାଏ, ଅଣ୍ଟୁ
ଟେକି ଟେକି ସତେକି ପୃଥିବୀ ଉପରେ ପାଦ ଦୁଇଟା ଗୋଟାଏ
ପରେ ଗୋଟେ ଛୁଆଁଉ ଦେଉଛି । ମନ ଜୋରରେ, ଦାନ୍ତ ଚିପି,
କଷ୍ଟ ସମ୍ଭାଳି, ମାର୍ଚ୍ଚ ଟାଇମ' ଢଙ୍ଗରେ 'ମାର୍ଚ୍ଚ' କରୁଛି । ସେ ଝାଲ
ଛାଡୁଥାଏ—'ଉଃ କି କଷ୍ଟ ! କି କଷ୍ଟ !' ମୁଁ ଯଦି ବଙ୍ଗଳାରେ କହେ
ସେ ହୃଦରେ କଚାଚ ପଏ । ଲୋକଟାର ପୁଣ୍ୟ ହୋଇ ନଥିଲା ।
ବୋଧହୁଏ ହୋଇ ଥିଲା । ଯେହେତୁ ମୋର କଥାରୁ ଅଣ [illegible]
ଜାଣି ହୃଦନ୍ତର କହୁଥିଲା ! 'ପାଣି ମିଲେଗା ?' ବୋଲି ସେ
ପଚାରିବାରୁ ସ୍ୱାମୀଜୀ ତା' ଉପରେ ଚିଡ଼ି ଉଠିଲେ । କହିଲେ—
'ନିଜର ପୁଣ୍ୟ ବନ୍ଦୋବସ୍ତ ନ କରି ତୁମେ ଯାତ୍ରାରେ ବାହାରିବା
ଉଚିତ ନଥିଲା !' ଅବାଲ ସନ୍ୟାସି ହେଲେ କଣ ହେବ ? ମୁଣ୍ଡର
ଜଟା ପାଦକୁ ଆସି ଭୂଇଁରେ ଛୁଇଁଲେ କ'ଣ ହେବ ? ସେ ଜଣେ
ପଞ୍ଜାବି ଓ ବର୍ଣ୍ଣରେ କଳା । ଦୟା ବା ଅଶ୍ୱାସନା ତାଙ୍କଠି ନଥିଲା ।
ଯାନ୍ତ୍ରୀକିର ନାଁ ଥିଲା ହାସ୍ୟନ ଚମତ୍କାର । ଭଗବାନଙ୍କ ଉପରେ
ପ୍ରବଳ ଆସ୍ଥା ଓ 'ମନ୍ତ୍ରଂ ବା ସାଧୟେତ୍ ଶରୀରଂ ବା ପାତୟେତ୍'
ଭାବରେ ଜିଦ୍ ଧରି ସେ କୈଳାସ ଦର୍ଶନ ଲକ୍ଷ ନେଇ ଆସୁଥାଏ ।
ଭାବିଲି ଯେ ଭଗବାନ୍ ତାକୁ ନିଶ୍ଚୟ ରକ୍ଷା କରିବେ । ତାକୁ
ପଛରେ ଆସିବାକୁ କହି ଆମେ ଆଗେଇଲୁ ।

ସେହି ବନ୍ଧୁର ଗଡ଼ାଣିଆ ଚଗଲୁହିଁ ଉପରେ କିଛି ଦୂର ଉଠିବା ପରେ ଆମେ ପୂର୍ବ ଦିନ ଛାଡ଼ି ଆସିଥିବା କହିସା ସଡ଼କଟିକୁ ଭେଟିଲୁ । ପାଖରେ ଗୋଟିଏ ଝରଣା ତାକୁ କାଟି ଯାଇଥାଏ । ଝରଣାଟିର ଓପାର ଉତ୍ତର ଗୃହାଶ ଫୁଟ ହେବ । ଠାଏଁ ଠାଏଁ ପଥର ଥାଏ । ଏପଞ୍ଚ ଦର୍ଟି ଧାରରେ ଗୋଟିଏ ପଥର ଉପରେ ଉପବିଷ୍ଟ ହୋଇ ଆମର ତତ୍ତ୍ୱବସ୍ୱାମୀଜୀ ସ୍ନାନ ସାରି ଧ୍ୟାନ ତଥା ପୂଜାପୂଜ କରୁଥିଲେ ।

ମୁଁ ଟିକିଏ ବିଶ୍ରାମ କରି ଗୋଟିଏ ମେଓଳେଟ ବିସ୍କୁଟ ଖାଇ ପାଣି ପିଇଲି ।

ସେଠାରୁ ଆମେ ଗୃଲିଲୁ । ସଡ଼କ ଦେଇ କିଛି ଦୂର ଯାଇଛୁ ଦେଖିଲୁ, ଆମର ଅଳ୍ପ ପଛରେ ଥିବା ଘୋଡ଼ାସବାର ଲୋକେ ସଡ଼କ ଛାଡ଼ି ଆଗେଇଛନ୍ତି । ଆମେ ମଧ ସଡ଼କ ଛାଡ଼ି ଗୃଲିଲୁ ।

ମାଇଲିଏ ଖଣ୍ଡେ ପରେ, ଏକ ଫୁଟ ଓସାରର ଓ ଏକ ଫୁଟ ଗଭୀର ଥିବା ଅନେକଗୁଡ଼ିଏ ନାଳ ଟାଇ, ପ୍ରଚୁର ଘାସ ଥାଇ, ଠାଏଁ ଠାଏଁ କାଦୁଅ ହୋଇଥିବା ସମତଳ ଚଗଲୁହିଁରେ ଗୃଲିଲୁ । ଏଠାରେ ଘୋଡ଼ା ଉପରେ ବସିଥିବା ଯାତ୍ରୀମାନେ ଆସି ମିଶିଲେ । ହାସ୍ୟଧନ ବାବୁ ମଧ ଆସି ପହଞ୍ଚିଲେ । କଚଖମା ସେହିଁଠାରୁ ଆମମାନଙ୍କୁ କୈଳାସ ପର୍ବତ ଦେଖାଇ ଦେଇଥିଲେ । ଦଳଟିଯାକ 'ହା ହା କି ସୁନ୍ଦର ! କି ସୁନ୍ଦର ! କହି ଲମ୍ବ ହୋଇ ପଡ଼ିବାରୁ ଧାଙ୍କୁ ଦେଖି ମୁଁ ମଧ ପ୍ରଣାମ କଲି । ସେମାନେ ଧୂପବାଠି ଜାଳି ଭୋଗ ସହିତ ପୂଜା କରିଥିଲେ ।

ସେଠାରେ ମୋ ପାଖକୁ ଆସି କହିଲେ—

'ମୁଁ ଗୋଟିଏ ବହି ଲେଖୁଛି । କୈଳାସର ଏବଂ [illegible] ପ୍ରଥମ ଦର୍ଶନ ହେବ, ଯେଉଁଥିରେ ତୁମର କି କି ଭାବ ଉପୁଜିଲା, [illegible] ମୁଁ ବହିରେ ଲେଖିବି ।' ମୁଣ୍ଡ ବହୁତ [illegible], କିନ୍ତୁ କିଛି ଭାବ ଆସିଲା ନାହିଁ । ପଥଶ୍ରମ ଓ ଦେହ ଯନ୍ତ୍ରଣା ହେତୁ ମୋର ମନରେ କୌଣସି ଭାବ ଉପୁଜି ହୋଇ ନଥିଲା । ଖାଲି ଦେଖିବା କଥା ଦେଖିଛି । ଠିକ ସ୍ଫଟିକ ସମ ଲିଙ୍ଗରେ କେତୋଟି ଅଦ୍ଭୁତ ଗାର ଦେଖି ଟିକିଏ ଆଶ୍ଚର୍ଯ୍ୟ ହୋଇଥିଲି । ଯାତ୍ରାଟା ସେତେ ଦୂର ସଫଳ ହୋଇଛି ବୋଲି ଟିକିଏ ଆନନ୍ଦ ହୋଇଥିଲି । କିନ୍ତୁ କେଦାର-ନାଥର ପ୍ରଥମ ଦର୍ଶନ କରି ମୁଗ୍ଧ ହୋଇ ନଥିଲି । ସେଥି ପାଇଁ ମୁଁ କିଛି ପ୍ରକାଶ କରିପାରି ନଥିଲି ।

ସେଠାରୁ ଘଣ୍ଟାଏ ଖଣ୍ଡେ ପରେ ପଡ଼ିଲା ଗୋଟିଏ ସୁଗଭୀର ପଥୁରିଆ ନଦୀ । କୌଣସିଠାରେ ବଡ଼ ପଥର ନଥିଲା କି ବାଲି ମଧ୍ୟ ନଥିଲା । ନଦୀ ଗର୍ଭକୁ ଦୁଇ ଚାରି ଇଞ୍ଚ ବିଶିଷ୍ଟ ପଥର ଥାଇ ଢେନାଲ ଭଳି ବାଟଟେ ଯାଇଥାଏ । କର୍ମଚାରୀ ବାବୁ, ଯିଏ କି ମୋଠାରୁ ଟିକିଏ ପଛରେ ଥିଲେ, ଆସି ସେଠାରେ ଭେଟିଲେ । ତାଙ୍କର ଅବସ୍ଥା ଦେଖି ଯିଏ ବିଚଳ ନ ହୋଇ ରହିପାରେ ସେ ମଣିଷ କଥା ଛାଡ଼, ପଶୁ ମଧ୍ୟ ନୁହେଁ, କେବଳ ଜଡ଼ ପଦାର୍ଥ । ତିନିଟି ଝୁଲିରୁ ଗୋଟିଏ ସବୁଠାରୁ ବଡ଼ ଝୁଲିଟି ଉଠାଇ ନେଲି । ପ୍ରଥମରେ ମଙ୍ଗୁ ନଥିଲେ । ଧୀରେ ଧୀରେ ଜଗି ଜଗି ଓହ୍ଲାଇଲି । ନଦୀ ଗର୍ଭ ଉପରେ ତମ୍ବୁ ଟଣା ସରିଲା । ବିଛଣା ସଜାଡ଼ି ଭାବଶୂନ୍ୟ ହୋଇ ଗଡ଼ିଲି । କିନ୍ତୁ ଭାବିଲି—କାହିଁକି ଆସିଥିଲି ?

## ସୁବା ଟେକ୍‌ଟକ୍‌ ଚାଲିଛି
## ୧୦୭+୮=୧୧୫ ମାଇଲ

ଚକ୍ଷୁ, ବାକ୍ୟ ଓ ଚିତ୍ତ—ଏ ସମସ୍ତ ହିଁ ଉଗ୍ର, ନୀରସ ଓ ଶୁଷ୍କ । ଏ ବିଷାଦ, ବିସ୍ତୀର୍ଣ୍ଣ ଓ ଶୂନ୍ୟ ପରିବେଶ ଭିତରେ ଦେହ ଉପର ଅସ୍ତିତ୍ୱ ପାର୍ଥିବ୍ୟ ଓ ବ୍ୟକ୍ତିତ୍ୱ ହଜିଯାଇଛି ।

କଚଖଣ୍ଡା ଖବର ଦେଲା—'ଏଠାରେ କ୍ଷୀର ମିଳିବ, ଲୁହର ଭେଟ ଦରକାର' ? ବନ୍ଦନ ଦେଲ । କ୍ଷୀର ଆସିଲା । ନାକ ଟିପି ଦେଣ୍ଡି ଦେଲ । ଭଲ ଲାଗିଲା । ଚିତ୍ତ ଟିକିଏ ସରସ ହେଲା ।

ଏହିଭଳି ସମୟରେ କର୍ମଚାରୀ ବାବୁ ଆଜି ସକାଳେ ବନ୍ଧୁଙ୍କ ପାଇଁ ଅନୁମତି ନେଇ ଆମ ଟେଣ୍ଟ ଭିତରକୁ ଆସିଲେ ଓ ଦୁଇ ଚେୟାର ମଝିରେ ବସିଲେ । ଖାଲି ପାଣିରେ ଛତୁଆ ଗୋଳେଇ ଖାଇବାକୁ ଲାଗିଲେ । ପାଣିରେ ସାଲ ନଥାଏ । ସବୁ ସବୁ କରି ଭଦ୍ରତା । ଏପରି ସମୟରେ ଆମର ଗରମ ଟେଣ୍ଡୁ ଆସିଲା । କଣେଇ ଭଣେଇ ଖାଦକୁ ଗୁଣ୍ଡିଲେ । ଖାଇବାକୁ ରୋଲି ଅନୁଭୂତି ହେଲ । ମୁଣ୍ଡକଡ଼ ଭଙ୍ଗୁଥିବା ଜଣାଇଲେ । ସେଖରେଡ଼ର ଗନ୍ଧ ମୁଁ ସମ୍ଭାଳି ପାରୁ ନଥାଏ । ଗୃହର ଘିଅ ଗୃହର ଖାଇଥିଲି, ଜଗନ୍ନାଥଙ୍କୁ ସ୍ମରଣ କରି ମୋର ଆଜିକା ଯାତ୍ରା ହେଲ । ବେଶ ତୃପ୍ତି ହେବାରେ 'ସେ ଖାଲି ଉଦରରୁ ଭଲେ । କ୍ଷୀରର ଦୁର୍ଗନ୍ଧ ସମ୍ଭାଳି ନପାରି ସେ ମୋତେ ତାଙ୍କ ଖାଇବା ଯାଚିଲେ । ମୁଁ ତ କ୍ଷୀର ପିଇ ସାରିଥିଲି, ମନା କଲି । ଓମାର ମଧ୍ୟ ସାମାନ୍ୟ ଧର୍ମ କରିବାର ପ୍ରବୃତ୍ତି ହୋଇଥିଲା ।

ଖାଇସାରିବା ପରେ ସେ ସେଠାରେ ଗଡ଼ିବାକୁ ଉଦ୍ୟତ ହେଲ ସତ୍ୟକ, ସଦାନନ୍ଦସ୍ୱାମୀ ତା ଉପରେ ଝିଙ୍କାରି ହେଲେ । ତାଙ୍କର ଉଗ୍ରତା ଓ ସ୍ୱଭାବ ଅନର୍ଗଳ ଧକ୍କାରେ ମୁଁ ହତଭମ୍ବ ହୋଇଗଲି । ତାଙ୍କର ଯୁକ୍ତି ହେଲା ଯେ ତମ୍ବୁରେ ଥିବା ଯାଗାର ସ୍ୱତ୍ୱ ଅଧାଟା ଉପରେ ତାଙ୍କର ଅଧିକାର ଅଛି ଓ ସେ ତାଙ୍କଠାରୁ ଅନୁମତି ନେଇ ନାହିଁ । ବିଚରା ହାବୁଡ଼ିବର ମୁହଁ ଶୁଖି ଗଲା ଓ ସେ ଗୋଡ଼ାଟେକି କହିବାରେ ଲାଗିଲେ ।

ସେ ମୋଠାରୁ ଅନୁମତି ନେଇ ନଥିଲେ । ମୋର ସହାନୁଭୂତି ଦେଖି ମେ ସନ୍ତୁଷ୍ଟ ଧରିନେଇଥିଲେ । ସେ ସବୁ ଯାଗାରେ ଅନୁମତି ନବାଟା ଅପ୍ରଯୋଜନ । ହମ୍‌ବେଦନା ଅନୁଭବ କରି ମୁଣ୍ଡ ଗୁଞ୍ଜି ରହିବା କଥା । ତାଙ୍କ ପ୍ରତି ମୋର ସହାନୁଭୂତିଟା ସ୍ୱଭାବ ସାମଞ୍ଜସ୍ୟତା ହେଲୁ ବା ଅଜ୍ଞଳତା ହେତୁ ବୋଲି ଧରିନବାଟା ଭୁଲ । ଅନ୍ୟମାନେ ସେଇଆ ଭାବିଥିଲେ । ଭାବିଥିଲେ—ସ୍ୱଗ ଯଦି ଅଧିକୃତ ନ କରିପାରିବ; ସଦାନନ୍ଦଙ୍କୁ ମୁଣ୍ଡ ଗୁଞ୍ଜିବା ପାଇଁ ଟିକଏ ଯାଗା ନ ଦେବ, ସେ କି ସାଧୁ ? ସାଧନାଟା ହେବ ଟେର ଚଟାଣ ଉପରେ ଚୋବାଲା ଖାଗର ମଞ୍ଜି ବୁଣିବା ପରି ।

ବଡ଼ ଦୁଃଖ ଲାଗିଲା । ଓଡ଼ିଶା ଭିତର ଦେଇ ଯାଇଥିବା ଏକମାତ୍ର ରେଲ ସଂସ୍ଥାର ମୁଖ୍ୟ କାର୍ଯ୍ୟାଳୟରେ ନକ୍ସା ଅଙ୍କନ କରେ ସେ ତାର ଅନ୍ତର ବା କ'ଣ ? ଅବିବାହିତ । ମାଁ'ର ଏକ ମାତ୍ର ପୁଅ । କେଡ଼େ ଆଶାର ହସାଇବା ଧନକୁ ଫେରି ପାଇ ଫେର ହରାଇ କ'ଣ ସମ୍ଭାଳି ପାରିବ ?

ବୁଦ୍ଧି ଦଶିଲା । ନିସ୍ୱମାନୁସାରେ କଚଖମା ଘୋଡ଼ା ସର୍ଦ୍ଦାର ଓ ... ହବା ... ଯାତ୍ରୀମାନଙ୍କ ତମ୍ବୁରେ ଶୋଇବା କଥା ।

କିନ୍ତୁ ତାଙ୍କ ପୂଜାନୁଷ୍ଠାନରେ ବ୍ୟାଘାତ ଘଟିବ ବୋଲି, ଗୁଜରାଟି ସତ୍ୟାଗ୍ରହୀମାନେ ଆରମ୍ଭରୁ ସର୍ତ୍ତ ବାନ୍ଧିଥିଲେ ଯେ ସେମାନେ କେବଳ ଗୋଟିଏ ତମ୍ବୁ ତଳେ ରହିବେ । ଆମ ତମ୍ବୁଟା ଦୁଇ-ଜଣିକିଆ । ସେଥିପାଇଁ କଚ୍ଛମା ଗୃହପତିମାନଙ୍କ ତମ୍ବୁରେ ରହିବା ପାଇଁ ନିଜର ବନ୍ଦୋବସ୍ତ କରିଥିଲି । ହାରାଧନ ବାବୁଙ୍କୁ ବଙ୍ଗଳାରେ ବୁଝାଇ କହିଲି ଯେ ସେ କଚ୍ଛମାକୁ ଅନୁରୋଧ କରନ୍ତୁ, ଯାହା ପାଇଁ । କଚ୍ଛମା ଆମ ତମ୍ବୁକୁ ଆସିବ । ମୋର ତ ଅନୁମତି ରହିଲା । ସେ ଆସି ପ୍ରଥମରେ ସଦାନନ୍ଦସ୍ୱାମୀଙ୍କୁ ଅନୁରୋଧ କଲେ ହୋଇଯିବ । ଏବଂ, ହାରାଧନ କଚ୍ଛମାର ଜାଗାରେ ରହିବେ ।

ଆମର ତଣ୍ଡ ଆମେ ପୂରା ଖାଇପାରୁ ନଥାଉ । କଚ୍ଛମାକୁ ଆମର ତଣ୍ଡରୁ ସ୍ୱାଙ୍କ ପାଇଁ ଖାଇବାର ବନ୍ଦୋବସ୍ତ କରିବାକୁ ଅନୁରୋଧ କରିବାକୁ କହିଥିଲି । ପଇସା ଯାଚି ଗୋଡ଼ ହାତ ଧରି, ସେ ଯେପରି ଦୟାର୍ଦ୍ର ହୁଏ ସେପରି କହିବାକୁ କହିଥିଲି ।

ସାନ୍ଧୀମାନଙ୍କର ଦସ୍ତଖତ ସୁପାରିଶରେ ପରିଣତ ହେବାରୁ ତାର ଜାଗାରେ ହାରାଧନ ବାବୁଙ୍କୁ ମୁଣ୍ଡ ଗୁଞ୍ଜିବାକୁ ଜାଗା ମିଳିଲା । କଚ୍ଛମାକୁ ଆମ ତମ୍ବୁରେ ଯାଗା ମିଳିଲା । ସେ ଯେତେବେଳେ ଏ ପ୍ରସ୍ତାବ ନେଇ ଆମ ତମ୍ବୁ ଭିତରକୁ ଆସେ, ଆମେ ଦୁଇ ଜଣଯାକ ଆଦର ସହକାରେ ସ୍ୱାଗତ କରିବାକୁ ପ୍ରତିଦ୍ୱନ୍ଦିତା ପୂର୍ବରୁ ଅଗ-ଭର ହେଲୁ ।

ଖାଇବାଟା କଚ୍ଛମା ତା ତରଫରୁ ଯେତିକି କହୁ ଯୋଗାଡ଼ କରିଥିଲା । ହାରାଧନ ସେ ଖେଚୁଡ଼ି ଦ୍ରବ୍ୟ ଭୋଜନ କରନ୍ତୁ ।

## ସୁବାଟକଟକ୍ ଛାଡ଼ିଲୁ—୨୮ ଜୁନ୍, ବୁଧବାର

ତା ପରଦିନ ସକାଳେ ପ୍ରାୟ ଏକ ଲକ୍ଷର ମିଶ୍ରିତ ପାଣିଯୁ ଉତରଯୁକ୍ତ କରି ବାହାରି ପଡ଼ିଲୁ । ପ୍ରଥମରେ ସାମାନ୍ୟ କଷ୍ଟ ହେଉଥିବାକୁ ହେଲା । କିନ୍ତୁ ଦେହ ବିଶେଷ ଦୁର୍ବଳ ଥିବା ହେତୁ କେହିବି ଦୂର ତିନ ମାଇଲ ଉଠାଣି ବଡ଼ କଷ୍ଟଦାୟକ ହୋଇ ଥିଲା । ହିମାଳୟ ପାଟରୁ ଉତ୍ତରକୁ ଚାଲି ଅସିଥିବା ଶୃଙ୍ଗ ପାହାଡ଼ର ମାଦ ପାହାଡ଼ ଉପରେ ଉଠି, ମାନସସରୋବରକୁ ଘେରି ରହିଥିବା ମୁଣ୍ଡିଆ ପାଲର ହାନୁ ଦେଶରେ ଧିରେ ଧିରେ ଉଚ୍ଚ ଚଡ଼ନ ଅଧିକାର କରି ଚାଲିଲୁ । ଦେହ୍ଲି ମାଲଖଣ୍ଡର ଭଳି ଦେଶରେ ଏବଞ୍ଚ ଦେଖିବାକୁ ପାଇଲୁ ଦୂର ବଗନ୍ତ ବ୍ୟାପି ଏକ ସ୍ୱର୍ଗିୟ ଝଅଲ । ତାର ମଝି ଭାଗର ଅପର ସାମନାକୁ ଥିଲା ମାନସରୋବର !!

ଆଁ କରି ଗଭୀର ନିଶ୍ୱାସ ନେଇ ପ୍ରଶ୍ୱାସ ଛାଡ଼ିଲି—'ହାଃ !' ଦୃଶ୍ୟର ପରାନ୍ତର ନାହିଁ ।

ଏକ ନିଷ୍ଟଳ ଜଳରାଶି ଗୋଟିଏ ଦିଗ୍‌ବୃତ୍ତ ଯେମିତି ଧରିଛି । ବର୍ଣ୍ଣ ତାର ଠାଏଁ ଠାଏଁ ନୀଳ, ବାଇଗଣି, ଜାମକୋଳି ବା ଏ ତିନିଙ୍କର ନାନାବିଧ ମିଶ୍ରଣ । ଗୁରୁପଟେ ନାତି ଉଚ୍ଚ ପାହାଡ଼ । ଉତ୍ତର ପଟର ପାହାଡ଼ମାଳ ପଶ୍ଚିମ ପଟକୁ ଲମ୍ବ ହୋଇ ଯାଇଛି । ତାର ସେହି ବଙ୍କିତ ଖଣ୍ଡ ଉପରେ ଅମଠାରୁ ସାନ ବଣ୍ଟା ଦଶ ଘଣ୍ଟା ବାଟରେ ଭୂଲେଖ ନଭଃ ଚୁମ୍ବି ବିରାଜମାନ ଶୁଭ୍ର ସ୍ଫଟିକ ଲିଙ୍ଗ ସମ୍ରାଟ କୈଳାସ—ସେହି ଖଣ୍ଡ ମଣ୍ଡଳର ଏକ ମାତ୍ର ଚିରଫାଲ୍ଗୁନ ଶୃଙ୍ଗ । ବାଁ ପଟର ଶୃଙ୍ଗ ଉତ୍ତର-ଦକ୍ଷିଣ ପର୍ବତମାଳର ବାମକୁ ରାବଣ ହ୍ରଦ ଅବସ୍ଥିତ ବୋଲି ଶୁଣିଲି । ଭାବିଲି—ସୃଷ୍ଟିର ପ୍ରକଳନ ଏହିଠାରେ । ଗୁରୁଅଡ଼ର ଅନ୍ୟ ପାହାଡ଼ ସବୁ ମାଟିଆ

ବର୍ଣ୍ଣ । ସରୋବରର ପୂର୍ବକୁ ଥିବା ପାହାଡ଼ମାଳ ପଛି ଯାଗାରେ ଟିକିଏ ଖଣ୍ଡିଆ ! ତାହା ବ୍ରହ୍ମପୁତ୍ର ନଦୀର ଉତ୍ପତ୍ତି ସ୍ଥଳ ବୋଲି ଶୁଣିଲି । ମୋର ଅନୁମାନ ହେଲା ଯେ ଜଳରାଶି କି ଉତ୍ତର-ପଶ୍ଚିମକୁ ଟେକା ହୋଇଯାଇଛି ଓ ଦକ୍ଷିଣ-ପୂର୍ବ ପଟକୁ ସାମାନ୍ୟ ନଇଁ ଯାଇଛି । ଯେହେତୁ ଭୂ-ମଧ୍ୟସ୍ଥ ମାଧ୍ୟାକର୍ଷଣ ହେତୁ ସମତଳ ରହିବା କଥା, ମୁଁ ପ୍ରଥମରେ ଧରିନେଲି ଯେ ମୋର କିଛି ଦୃଷ୍ଟି ଦୋଷ ରହିଛି । ଦର୍ଶନ ମାନେ ବୁଝିପାରିଲି ତାହାକୁ କାହିଁକି ମାନ-ସରୋବର କହନ୍ତି । 'ମାନସ୍ ସରୋବର'ରୁ 'ମାନସରୋବର' ହୋଇଯାଇଛି । ଋଷି-ମୁନିମାନେ ଯୋଗ ବୁଝାଇବାକୁ ଯାଇ କହିଛନ୍ତି "ଯେ ମନ ଗୋଟିଏ ଅନନ୍ତ ଜଳରାଶି ସଦୃଶ୍ୟ ଓ ତା ଭିତରେ ଭାବ ସମୂହ ଗୋଟିଏ ଗୋଟିଏ ଲହରୀ ପରି । ଲହରୀ ଗୁଡ଼ିକୁ ବାହାରିବାକୁ ନ ଦେଇ ସେହି ମନ ସମୁଦ୍ରକୁ ନିଶ୍ଚଳ କରିବା ହେଉଛି ଯୋଗ ସାଧନା । ସେହି ନିଶ୍ଚଳ ଜଳ ପୃଷ୍ଠ ଭଳି ନିର୍ମଳ ଦର୍ପଣ ଭଳି ସେହି ଆତ୍ମା-ସୂର୍ଯ୍ୟକୁ ନିଜ ଭିତରେ ପ୍ରତିଫଳିତ କରି ଅନୁଭବ-ଦର୍ଶନ କରିଥାଏ । ସେତେବେଳେ ଆତ୍ମ-ଦର୍ଶନ ଘଟେ ବୋଲି କୁହାଯାଏ । ସେହେତୁ ପାତଞ୍ଜଳି କହିଛନ୍ତି —

ଯୋଗଃ ଚିତ୍ତବୃତ୍ତି ନିରୋଧଃ ।

ସେଠାରେ କିଛି ସମୟ ବିଶ୍ରାମ କରି ଉତ୍ତର ପଟକୁ ମୁହଁ କରି ଓହ୍ଲାଇବାକୁ ଲାଗିଲୁ । କୁଲିଟା ହେ'ଟି ସର ଲଗୁଥେ, କିନ୍ତୁ ତାହ ଥିଲା ଅସରନ୍ତି । ପାହାଡରୁ ଓହ୍ଲାଇବା ପରେ ତାର ପାଦ-ଦାଗର ଦେଇ ଓହ୍ଲାଇଲୁ । ପାଦଟା ଥିଲା ଗୋଟିଏ ମାଟି କୁଢ଼ ଆଖାରର ଢାଲୁ । ଉପରୁ ଅବଶାନ୍ତ ଧାରରେ ମାଟି ଖସି ଢାଲୁଟି ଗଢ଼ି ଉଠିଛି । ଯେ ହେତୁ ମାଟି ଭିତରେ ଭଡ଼ା-ଭଡ଼ଟା ଟାଣ ଥିଲା,

ଧରି ନେଲୁ ଯେ ଏ ମାନ୍ଧାତାମାଳଟି ହିମାଳୟ ଅପେକ୍ଷା ଅନେକ ପୁରୁଣା ।

ରାକ୍ଷସ୍ଥଳ ମାନ୍ଧାତାପର୍ବତର ପାଦ ହୋଇ ସେହିପରି ଗୋଟିଏ ଚାଲ୍ ଅଛି ।

ଏହାପରେ ଏକ ବୁଦୁବୁଦୁକରା ଗାଢ଼ ସବୁଜ କମ ନିମ୍ନ ପ୍ରାନ୍ତର ଦେଇ ଆମେ ଗଡ଼ି ଆସିଲୁ । ବୁଦା ଗୁଡ଼ାକ ଆଣ୍ଠୁ ଉଚ୍ଚ ଠାରୁ ପାଞ୍ଚ ଫୁଟ ବ୍ୟାସର ଓ ଅଣ୍ଟାଏ ଖଣ୍ଡେ ଉଚ୍ଚର, ଝାଙ୍କର ଗଛ । ସେଥିରୁ କାଳିରା ପାଇଁ ଡାଳ ଭଙ୍ଗାଗଲା । ତେଲ ଅଂଶ ବେଶି ଥିବାରୁ କଞ୍ଚା ଡାଳଗୁଡ଼ିକ ମଧ୍ୟ ସୁନ୍ଦର ଜଳିଲା । ଆମେ ଆନନ୍ଦ ବିଭୋର ହୋଇ ଦୀର୍ଘକାଳ ଇପ୍ସିତ ମାନସରୋବର କୂଳରେ ପହଞ୍ଚିଗଲୁ ।

**ମାନସରୋବର—୧୪, ୯୫୦ ଫୁଟ—ପରିସର ୫୪ ମାଇଲ, କ୍ଷେତ୍ର ୨୦୦ ବର୍ଗ ମାଇଲ ଚାଲିଛି ୧୧୫+୧୧=୧୨୬ ମାଇଲ**

କୂଳରେ ପହଞ୍ଚି ତମ୍ବୁ ଠିଆ ଗଲା । ବସା ବାନ୍ଧିବା ପାଖର କୂଳକୁ ଅତି ଶ୍ରଦ୍ଧାରେ ଗଲି । ଖାଲି ବାଲୁଅ ଓ କୁଣ୍ଠା । ଗୋଡ଼ ପକ୍ଷୀରାଜ ଥାଏ । ଗୁଡ଼ାଏ ହଂସ ଯୋଡ଼ି ଯୋଡ଼ି ହୋଇ ପହଁରୁଥାନ୍ତି । କିନ୍ତୁ ବିଶେଷ କିଛି ନୂଆଁ ପରି ଜଣାଗଲା ନାହିଁ । ମନେହେଲା ଠିକ୍ ଯେପରି ଚିଲିକାର ହଂସ । ଅନ୍ୟ ଜାତିର ହଂସ ଥିଲେ ଥିବେ, କିନ୍ତୁ ମୁଁ ଦେଖିପାରି ନାହିଁ ।

କରଙ୍ଗୋ ଅଗରୁ ସାବଧାନ କରାଇଦେଇଥିଲା । ସେଠାରେ ବାଲୁଅ ଥିବା କଥା କହୁଥିଲା । ବାଲୁଅ ପଡ଼ିଲେ ଗୋଟିଏ ଗୋଡ଼



ମାନସରୋବର ।

ତାହାର ତଳ ଆଉ ଗୋଟିଏ ତୋଇଲେ ଅଧିକ ଭିତରକୁ ପଶିଯିବାର ସମ୍ଭାବନା ଥାଏ ଓ ଏପରି ଧିରେ ଧିରେ ଭିତରକୁ ପଶିଯାଇ ଜୀବନ୍ତ ସମାଧି ହୋଇ ଯାଇପାରେ ।

ତାର ତନ୍ତ୍ରର ପ୍ରମାଣ ପାଇ, କୌଣସି ପ୍ରକାରେ ଶପଦ ନ ପଡ଼୍ବା ପାଇଁ ଖସି ବୁଲିଆସିଲି । ଦଶ୍ରୀହସ୍ତାନନ୍ଦଜୀ ଢାଡୁଅ ତଳଲକୁ ରକ୍ଷା ପାଇବା ଢାଇଦା କହିଲେ—

ହଠାତ୍ ନଦ ଢାଡୁଅ ପଡ଼େ ଓ ଗୋଡ଼ ଭିତରକୁ ଟଣିଯାଏ, ସେଥିରୁ ବାହାରିବାକୁ ଚେଷ୍ଟା ନ କର ବା ସେପରି ଠିଆ ନ ହୋଇ ଚିତ୍ ହୋଇ ଗୋଡ ହାତ ମେଲି ଶୋଇପଡ଼ିବ । ସେପରି ପଡ଼ିଥିବ ନେନ୍ତେରେଲ ଯାଏ ଜଙ୍ଘାକୁ କାଢ଼ିବାକୁ ଲୋକ ନ ଆସିଛି । ବାହାରିବାକୁ ବେଶି ଚେଷ୍ଟା କଲେ ପ୍ରମାଦ ।

କଟଖମାର କଥାରେ, ଛିଦଏ ପୂର୍ବ ଦଗକୁ, ଗୁଳଗ୍ରହି ସନ୍ନ୍ୟାସୀମାନେ ଗାଧୋଇ ପୂଜାପୂଜି କରୁଥିଲେ । ସ୍ୱାମଦାସଜୀ ମୋତେ ଡାକି କହିଲେ—

ଏବେ ତୂର ଆସିଲ, ଏଠି ବସି ତ'ଣ କରୁଚ, ଯାଅ ପିତୃ-ପୁରୁଷଙ୍କୁ ପାଣି ଦେଇ ଆସ ।

ମୁଁ କହିଲି—ବାପା ଥିଲା ସମୟରେ ମୋର ସେ ଅଧିକାର ନାହିଁ । ବରଂଚ ମୁଁ ବୁଲି ଆସିଛି ।

ସେ—ଗୁରୁ, ପରମଗୁରୁ, ପରାପରଗୁରୁଙ୍କୁ ପାଣି ଦେଇ ଆସ ।

ମୁଁ—ମୁଁ ଦୀକ୍ଷା ନେଇ ନାହିଁ ।

ବୁଢ଼ା କ'ଣ ଭୁଟ୍‌ଭାଟ ହୋଇ ବିରକ୍ତି ପ୍ରକାଶ କଲା । ମୁଁ ସେଠୁ ଉଠିଲି । ଅନ୍ୟ ତୀର୍ଥଯାତ୍ରୀମାନେ ପୂଜା କରି ଫେରିଥିବେ । ଜାଗାରେ ଚାଲିଥିବା ଟଳ୍‌ଟଳ ଉପଳ ଝରଣାଦ୍ୱାରା ଗୁମ୍ଫିତ ଥିଲା । ଜଳ ଥିଲା ସ୍ୱଚ୍ଛ ନିର୍ମଳ ଓ ସୁସ୍ୱାଦୁ । ପାଣି ଏତେବେଶି ଥଣ୍ଡା ନଥିଲା ଯେହେତୁ ସେ ପ୍ରକାର ଥଣ୍ଡା ଦେହ ସୁହା ହୋଇ ଯାଇଥିଲା । ଅତି ଶ୍ରଦ୍ଧାରେ ଅଣ୍ଟୁ, ଡେଇଁକି ଏତେ ପାଣି ଭିତରେ ପଶିଲି । ହଠାତ୍ ଡର ମାଡ଼ିଲା, ଯେବେ ଖସି ଭିତରୁ ଟାଣି ନିଏ । ଭିତରେ ଥିବା ଦୁଷ୍ଟ ଭୂତ ପ୍ରେତଙ୍କର ଶକ୍ତି ବେଶି ହୋଇପାରେ । ଆଉ ତଳକୁ ଯିବାକୁ ସାହସ କଲି ନାହିଁ ।

ଗୋଟିଏ କଥା ମନେ ପଡ଼ୁଥିଲା । ଜଣେ ଇଂରେଜ ଅନୁସନ୍ଧିତ୍ସୁ ଷୋହଳ ସତର ଜଣ ହିନ୍ଦୁ ଓ ମୁସଲମାନଙ୍କୁ ନେଇ ତିବ୍ବତ ପରିଭ୍ରମଣରେ ବାହାରିଲେ । ସେ ସମୟରେ ତିବ୍ବତୀୟ ସରକାର ଗୋରା ବିଦେଶୀଙ୍କୁ ତିବ୍ବତ ଭିତରକୁ ଯିବା ପାଇଁ ଅନୁମତି ଦେଉ ନଥିଲେ । ଏହି ବ୍ୟକ୍ତି ମୁସଲମାନ ସାଜି ତା ଭିତରେ ପଶିଲେ । କୌଣସି ଏକ ଜାଗାରେ ତମ୍ବୁ ଟାଣି ଅବସ୍ଥାନ କରୁଛନ୍ତି, ଏପରି ସମୟରେ ଜଣେ ତିବ୍ବତୀୟ ସରକାରୀ କର୍ମଚାରୀ ଆସି ତମ୍ବୁ ଭିତରକୁ ମୁହଁ ମାରି ନିରୀକ୍ଷଣ କରିବାକୁ ଲାଗିଲେ । ଉଦ୍ଦେଶ୍ୟ ପଚାରିବାରୁ ଉତ୍ତର ମିଳିଲା ଯେ ଜଣେ ଗୋରା ବିଦେଶୀ ତିବ୍ବତ ଭିତରେ ଭ୍ରମଣ କରୁଛନ୍ତି ବୋଲି ଖବର ପାଇ ସରକାର ତାଙ୍କୁ ଯାଞ୍ଚ କରିବାକୁ ପଠାଇଛନ୍ତି । ତାଙ୍କୁ ସେଠୁ ପଚାରିଲେ ଯେ ନିର୍ଦ୍ଦୋଷ ଭ୍ରମଣ କଲେ ଅପରାଧ କ'ଣ ? ଉତ୍ତର ମିଳିଥିଲା— 'ଆମେ କ'ଣ ତୁମ ଦେଶକୁ ବୁଲିବାକୁ ଯାଉଛୁ ? ତୁମେ କାହିଁକି ଆମ ଦେଶକୁ ଆସିବ ?' କିନ୍ତୁ କାହାକୁ ଧରି ନ ପାରି [illegible] ଭଙ୍ଗି କରି ଚାଲି ଯାଇଥିଲେ ।

ନା'ଟେର ସେହି ବ୍ୟକ୍ତି ମାନସରୋବରର ମଧ୍ୟ ଭାଗକୁ ଯିବାକୁ ଠିକ୍ କଲେ । ତାଙ୍କ ପୂର୍ବରୁ କେହିହେଲେ ସେଠାକୁ ଯାଇ ନଥିଲେ । ମାନସରୋବରର ଗଭୀରତା ମାପିବା ଥିଲା ତାଙ୍କର ଉଦ୍ଦେଶ୍ୟ । ଡଙ୍ଗା କରି ବାହାରିଲେ । ତରଙ୍ଗମାନେ ମନା କରୁଥିଲେ । ମଝି ଜାଗାଟା କୁଆଡ଼େ ଭୟପୂର୍ଣ୍ଣ । ସେ ହେତୁ ଡଙ୍ଗା ଯାଇ ନ ପାରି ଖସି ଆସିବ । ଯଦି ବା ଯାଇପାରିବ, ମଧ୍ୟ ଭାଗଟାରେ ଭୂତ-ପ୍ରେତଙ୍କର ପ୍ରାଦୁର୍ଭାବ ବେଶି ଥିବାହେତୁ ଓ ସେମାନେ ସେହି ପୁଣ୍ୟ-ଜାଗାଟିର ରକ୍ଷା କର୍ତ୍ତା ଥିବାହେତୁ ଝଡ଼ ବର୍ଷା ହୋଇ ଡଙ୍ଗା ଓଲଟି ଯିବ । ଇତ୍ୟାଦି । ଉପଦେଶକୁ ଅନ୍ଧ ବିଶ୍ୱାସ ଭାବି, ଭ୍ରୂକ୍ଷେପ ନ କରି, ସମସ୍ତ ପ୍ରକାର ସତର୍କତା ଅବଲମ୍ବନ କରି ସାହେବ ଜଣକ ସାହସ ସହକାରେ ବାହାରି ପଡ଼ିଲେ । ପ୍ରାୟ ମଝି ଜାଗାଟା ହେଉଛି ଅଚାନକ ନଗାଳିଏ ମେଘ ଓ ପରେ ପରେ ଝଡ଼ ଆସି ସେମାନଙ୍କୁ ଅସ୍ତବ୍ୟସ୍ତ କରିଦେଲା । ଡଙ୍ଗା ଅତି ଜୋରରେ ଦୋହଲି ଯାଏ । ପ୍ରାୟ ଲେଉଟି ଯିବା ଉପରେ । ସେଥିରେ ହଠାତ୍ ଛାଡ଼ିଗଲା ଓ ଝଡ଼ ଥମିଲା । କିନ୍ତୁ ଲକ୍ଷ କରାଗଲା ଯେ କୌଣସି ମୂଳସ୍ଥାନର ଦେଖା ନାହିଁ । ସେ ଡଙ୍ଗା ଭିତରେ ମଝିଟାରେ ବସିଥିଲେ । ଧାରରେ ବସିଥିବା ଲୋକେ ସବୁ ଠିକ୍ ଥିଲେ । ସେ ନିଖୋଜ ରହିଗଲେ । ଡଙ୍ଗାଟା ସରୋବରର ମଝି ଜାଗାଟା ଛାଡ଼ି ଅଧ ଘଣ୍ଟେକୁ ଅନେକ ଦୂର ଚାଲି ଯାଇଥିଲା । ସାହେବ ମନରେ ଗୋଟାଏ ବଡ଼ ପ୍ରଶ୍ନ ରହିଗଲା । ତାର ସମାଧାନ ହୋଇପାରି ନଥିଲା ।

ସେହେତୁ ମୁଁ ଅଣ୍ଟାଏ ପାଣିରେ ଚାରି ପାଞ୍ଚଟା ଦଣ୍ଡ ଟାଣି ଝରବରରେ କୂଳକୁ ଚାଲି ଆସିଲି । ପୋଛୁ ପୋଛୁ ହୋଇ

ସହଯାତ୍ରୀଙ୍କ ମେଳରେ ପୂଜାପାଠ କଲି । ସମୟ ଥିଲା ପ୍ରାୟ ତିନିଟା । ସେ ଦିନ ବୁଧବାର, ପୌର୍ଣ୍ଣମି ଥିଲା ବୋଲି ଶୁଣିଲି । ମାନ-ସରୋବରରେ ଗାଧୋଇବାର ସୁ-ପୁଣ୍ୟ ମିଳିଲା । ବିଶେଷ ଆନନ୍ଦ ଉପଭୋଗ କଲି ।

ମାନସରୋବରକୁ ତିବ୍ବତୀୟ ଭାଷାରେ ମୋ-ପାଙ୍ଗେନ୍ ବା ମୋ-ମଫାଙ୍ଗ କହନ୍ତି । ଆକାରଟା ପ୍ରାୟ ଅଣ୍ଡାକୃତି । ପରିସର ଚଉବନ ମାଇଲ । କ୍ଷେତ୍ରଫଳ ଦୁଇଶହ ବର୍ଗମାଇଲ । ତିନିଶହ ଫୁଟ ଗଭୀର । ଜଳ ପୃଷ୍ଠ ସମୁଦ୍ର ପତ୍ତନଠାରୁ ଚଉଦ ହଜାର ନ ଶହ ପଚିଶ ଫୁଟ ଉପରେ ଅବସ୍ଥିତ । ତାର ପରିକ୍ରମା ଚଉଷଠି ମାଇଲ । ତାର ଚତୁଃପଟେ ଅଶିଏଟି ଗୋମ୍ପା ଅଛି । ଶୁଣିବାକୁ ପାଇଲି ଯେ ଶୀତକାଳେ ଜଳଗୁଡ଼ିକ ଶକ୍ତ ବରଫରେ ପରିଣତ ହୁଏ ଓ ତା ଉପରେ ତିବ୍ବତୀୟ ପିଲେ ବରଫ ପିଣ୍ଡୁଳା କରି, ଧାଁ-ଦୌଡ଼ କରନ୍ତି, ଖେଳନ୍ତି । ଏହା ମଧ୍ୟ ଶୁଣିବାକୁ ପାଇଲି ଯେ ଶୀତକାଳେ ଏତେ ଥଣ୍ଡା ସତ୍ତ୍ୱେ ମଝି ଜାଗାଟାରେ ପାଣି ଥାଏ, କେବଳ ଉପର ପଟଟା ବରଫ ପାଲଟି ଥାଏ । ଏହାର ଗୋଟିଏ କାରଣ ହେଉଥିବ ଯେ ହ୍ରଦ ତଳେ କୌଣସି ଜାଗାରେ ଉଷ୍ମ ପ୍ରସ୍ରବଣ ଥାଇପାରେ । ଅନ୍ୟ ଗୋଟିଏ କାରଣ ମଧ୍ୟ ଥାଇପାରେ । ସେ ହେଉଛି ଯେ ହ୍ରଦର ମଝିଟା ଅତି ଗଭୀର ଥିବା ହେତୁ ଶୀତକାଳ ଭିତରେ ପାଣି ଦେହରେ ଥିବା ଗୁପ୍ତ ଉତ୍ତାପ ଟିକକ ଶେଷ ହୋଇ ନଥାଏ ।

ମାନସରୋବର ହିନ୍ଦୁ ଓ ବୌଦ୍ଧଙ୍କର ପବିତ୍ର ତୀର୍ଥ । ଏହା ପୃଥିବୀର ସବୁ ହ୍ରଦଠାରୁ ସୁନ୍ଦର । ଦୁର୍ଯ୍ୟୋଧନ କୁଆଡ଼େ ଏ ହ୍ରଦରେ ଲୁଚିଥିଲେ ।

ସେଠାରୁ ଫେରୁଛୁ, ବାଟରେ ଦେଖିଲି ଗୋଟିଏ କୂଅ । ଦେଖି ମନକୁ ଭାବିଗଲି । ଆଗର କୂଅଠାରୁ ପ୍ରସ୍ଥ ତିନି ଗୁଣ ବଡ଼ । ଅବଶ୍ୟ ସେଥିରେ କିଛି ପାଣି ଆସେ ନାହିଁ । କିନ୍ତୁ ଭାରି ଆଶ୍ଚର୍ଯ୍ୟ ଦେଖିବା କଥା । ଦଶ ବାର ଆଖିରେ ଭସ୍ମ ଦେଖାଇଲା ଉର୍ଦ୍ଧ୍ୱ ତାର ଦୃଷ୍ଟି । ଅବସ୍ଥାକୁ ପର୍ଯ୍ୟାଲୋଚନ କରି ଜଦ୍ୟାର ଠିଆ ହେଲି । ଉଡ଼ନ୍ତା ପିମ୍ପି ଭିଡ଼ ବୁଲାଇଲା । ଭାବିଲି—ଏହା ବୋଧହୁଏ ଥିଲା ମଠ ବା ଯଉର ବାହନ ।

ତମ୍ବୁ ପାଖକୁ ଆସି ଦେଖେଁ ମୋ ସହିତ ଦୁଇ ଜଣ ତିବ୍ବତୀୟ ବସିଛନ୍ତି । ଦୂରରୁ ଆମର ତମ୍ବୁ ଦେଖି ସେମାନେ ଆସିଥିଲେ । ଯାଙ୍କରେ ବିକିବା ପାଇଁ ନ ଇଞ୍ଚରୁ ଫୁଟେ ପର୍ଯ୍ୟନ୍ତ ଲମ୍ବ ଥିବା କେତୋଟି ମାଛ ଆଣିଥିଲେ । ମୁଁ ଦୁଇଟି ମାଛ ଠଙ୍କାଟିଏ ଦେଇ କିଣିଲି । ମାଛକୁ ଗୁମ୍ଫାର ଲୋକଙ୍କୁ ନ ଦେଖାଇବାକୁ ଷମା ଉପଦେଶ ଦେଲି । 'ଦେଖାଇଲେ ପାପରୁ ରଉଦେବେ' ବୋଲି କହିଲି । ତାକୁ ଲେଉଟର ସେବକ ଭିତରେ ପୁରାଇଦେଲି ଓ ସେ ସେପରି ଥାଏ । ତିବ୍ବତରେ ଥଣ୍ଡା ହେତୁ ସେ ଆଜ ଗନ୍ଧେଇ ନାହିଁ, କିନ୍ତୁ ଧିରେ ଧିରେ ଶୁଖି ଯାଉଥିଲା ।

ଆମ ତମ୍ବୁ ପାଖରୁ କିଛି ଦୂରରେ ଦୁଇଟି କଳା ତମ୍ବୁ ପୋତା ହୋଇଥିଲା । ସେଥିରେ ଗୋଟିଏ ତିବ୍ବତୀୟ ପରିବାର ରହୁଥିଲେ । ସେମାନେ ଦୂରରୁ ପିଲା କୁଟୁମ୍ବ, ଗାଈ ଗୋରୁ, ଛେଳି ମେଣ୍ଢା, କୁକୁର ଇତ୍ୟାଦି ଧରି କୈଳାସ ପରିକ୍ରମା କରିବା ପାଇଁ ଆସିଥାନ୍ତି । ଦୁଇ ଭାଇଙ୍କର ଗୋଟିଏ ସ୍ତ୍ରୀ ଓ ଗୋଟିଏ ଝିଅ ।

ଗର୍ତ୍ତରେ ଖେଚୁଡ଼ି ହୋଇଥିଲା । ଗାଧୋଇଥିବା ହେତୁ ଓ ଗନ୍ଧ ବଦଳିଥିବା ହେତୁ ଗିନାଏ 'ଖଣ୍ଡେ' ଖେଚୁଡ଼ି ଖାଉଛି ।

ତତ୍ସମ୍ପାଦକଙ୍କ ଅବ ଦଳ ସହିତ ଗୁମ୍ଫା ଗୁଡ଼ିକ ଦେଖି ଆମର ତମ୍ବୁକୁ
ଆସିଲେ ଓ ରାତ୍ରି ଯାଏ ଆମର ଟେଣ୍ଟ ତଳକୁ ଆସନ ପକାଇ ବସି



[ ତମ୍ବୁର ଚିତ୍ର ]

ଟେଣ୍ଟା ଧରିଥିବା ଦେଖୁ 'ମୁଁ ସାଁ' ଭଳିଆଜ୍ଞ । ବେନସ୍ କଲେଜଟି

ଫଳାହାର ବ୍ରତ କରୁଥାଏ । ସେତେବେଳୁ ସାଙ୍ଗରେ କିଛି ପାଣି ଫଳର ଅଣ୍ଟା ଆଣିଥାଏ । ତାଙ୍କର ଖାଇବା ଯୋଗାଡରେ ବେଶି ଡେରି ଲଗିବାରୁ ଧଉଳ ଶୁଣି ଶୁଙ୍କ ଅସିଚଣ୍ଡ । ପରଦିନଠାରୁ କିନ୍ତୁ ପୂର୍ବ ଯୋଗାଡ ଅନୁଯାୟୀ ବଢ଼ିଲେ । କିନ୍ତୁ ମନ ଥରେ ପୋଡ଼ିଲେ ଯୋଡ଼ା ଲାଗିଣ ପରି ସବୁ ଦିନ ପାଇଁ ଯୋଡ଼ ଯାଏ । ତାକୁ ଅଉ ଗନ୍ଧ ହୁଏ ନା । ତାର ସ୍ୱାଦ ଆଉ ଫେରି ଆସେନା ।

ବାଃ କି ସୁନ୍ଦର ! ଚନ୍ଦ୍ର ଦେଖି ମନେ ହେଲା ପୂର୍ଣ୍ଣିମାର ରାତି ଏକ । ଝରି ପଡ଼ୁଛି ସୁନାର ସ୍ୱର୍ଗୀୟ କିରଣ । ଝଲସି ଦେଉଛି ସୁନାର କାନ୍ତି । ନିରୋଳା, ନିଃଶବ୍ଦ, ନିସ୍ତଳ ଜଳରାଶି । ନାମ ଫେଟରେ ତାର ମାନସରୋବର । ମାନସରୋବର ବୋଲିଲେ ଯାହା ସବୁ ବୁଝାଏ । ଯାହା ସବୁ ଭାବ ଆଣିଦିଏ । ଶୁଭ୍ର ଶୀତଳ ସ୍ନିଗ୍ଧ ପବନ । ଶୃଙ୍ଗଆଡ଼ରୁ ଏକ କନକର କାନ୍ତିର ମନୋମୟ ଛଟା ପରିବ୍ୟାପ୍ତ, ପରିସ୍ଫୁଟ ଓ ପରିଶୋଭିତ ହୋଇ ଏକ ଅଭିନବ ସ୍ୱର୍ଗୀୟ ଶାନ୍ତିର ପ୍ରଭାବ ଓ ଭାବ ସୃଷ୍ଟି କରୁଛି । ଏ ନୁହେଁ, ପୁରୀ ସମୁଦ୍ରକୂଳର ବାଲି ଉପରେ ଗଡ଼ି, ଫୁଟାଣିଆ ଲୋକରେ ପୂର୍ଣ୍ଣ ଜୋଗ୍ରତ ଦେବୀକୁ ଧରରେ ରଖି, ସଦାତ ଗର୍ଜନଶୀଳ ଓ ଗୋଟେ ପରେ ଗୋଟେ ଫେଣ । ଠେକ ମାଡ଼ି ଅସୁଥିବା ଲହଡ଼ିକୁ ଧାରଣ କରିଥିବା ଅନନ୍ତ ଜଳରାଶିକୁ ଆଗରେ ରଖି ମନକୁ ଠକେଇ ଉପଭୋଗ କରିବା ଚନ୍ଦ୍ର କିରଣ । ଏ ନୁହେଁ, ଗାଁ ଗଣ୍ଡାର ଗଛର ଛାୟା ଓ ଛାୟାଦ୍ୱାରା ଖଣ୍ଡ ବିଖଣ୍ଡ ହୋଇ ଦେଖିଥିବା ଚନ୍ଦ୍ର କିରଣ । ଏ ନୁହେଁ, ବେତାଳ ଓ ବେସୁର ଧ୍ୱନି ସହିତ ତାର ବେଗରେ ଧାଇଁମାନ ମାନ୍ଦ୍ରାଜ ମେଲରେ ବସି, ଚଳିବାର ହେଉରେ ଖଣ୍ଡ ବିଖଣ୍ଡିତ ହୋଇ ଲମ୍ବ ଭାବରେ ନାଚୁଥିବା ଚନ୍ଦ୍ରକୁ ଏକ ସୁନାର

ଖାଉଁଟି ପରି ଦେଖି ଉପଭୋଗ କରୁଥିବା ଚନ୍ଦ୍ର କିରଣ । ଏ ନୁହେଁ, ଏକରୁ ଅପର ଅଭିନ୍ନ ସ୍ଥାପତ୍ୟର ସରକାରୀ ବାସ ଭବନକୁ ପ୍ରଚ୍ଛଦ-ପଟରେ ରଖି, ପାଖ ଅଞ୍ଚଳରୁ ଆସୁଥିବା ରେଡ଼ିଓରୁ ଧ୍ୱନି ସିନେମାର ଧୂନ ଯାହାର ସାମଗ୍ରିକ ସ୍ୱରରେ ଟ୍ରକ୍, କାର୍, ଜୀପ୍, ମଟର୍-ସାଇକଲ୍ ଓ ଉଡ଼ଜଲ ଶକଟର ଶବ୍ଦଦ୍ୱାରା କ୍ଷଣିକ ପାଇଁ ଅନ୍ତରାଳରେ ରହିଯାଏ, ତାକୁ ଶୁଣି ଶୁଣି ଓ ଦର୍ବଲପୁରକୁ ଯୋଡ଼ୁଥିବା ଅସଂଖ୍ୟ ବିଜୁଳି ବତିକୁ ଦେଖି ଦେଖି, ସବୁଜ ଅନାବନା ଲଟାକୁ ଛକ କାଟୁଥିବା ନାଲି ରାସ୍ତା ଓ ପିଚୁ ରାସ୍ତା ଧାରରେ ଠିଆ ହୋଇ ଭୁବନେଶ୍ୱରରେ ଉପଭୋଗ କରୁଥିବା ଚନ୍ଦ୍ର କିରଣ । ଏ ନୁହେଁ, ଯେ କୌଣସି ସମୟ ବା ସ୍ଥଳରେ ଉପଭୋଗ କରୁଥିବା ଚନ୍ଦ୍ର କିରଣ । ଏ ହେଉଛି, ତେଇଶ ହଜାର ଫୁଟ ଉଚ୍ଚ, ହିନ୍ଦୁ ଗୁର୍ଲା ମାନ୍ଧାତା ଓ ବାଇଶ ହଜାର ଫୁଟ ଉଚ୍ଚ ସ୍ୱାମୀଙ୍କ ଶିବ ଲିଙ୍ଗ ସ୍ୱ-କୈଳାସ ମଧ୍ୟସ୍ଥିତ ନବେଲା ନାଳେ, ନିର୍ମଳ କୂଟସ୍ଥ, ପୂର୍ଣ୍ଣ ପଞ୍ଚ ସ୍ତରର ଶିଳା ଭୂମିରେ ଥିବା ଦୁଇ ଶହ ବର୍ଗ ମାଇଲ ବକ୍ଷିପ୍ତ, ପୁରାଣରେ ବର୍ଣ୍ଣିତ, ମାନବର ଉଚ୍ଚତମ ଅଭିଳାଷର ପ୍ରତୀକ ମାନସରୋବରର ସ୍ୱଚ୍ଛ ନିର୍ମଳ ଜଳରାଶି ଉପରେ ନିର୍ମଳ ଘନ ନୀଳ ଆକାଶରୁ ବିଚ୍ଛୁରିତ ଥିବା ସ୍ୱର୍ଣ୍ଣୋଜ୍ଜ୍ୱଳ ରଙ୍ଗର ପୂର୍ଣ୍ଣେନ୍ଦୁ ଚନ୍ଦ୍ରର ସୁଖକର ମନୋହର ସ୍ୱର୍ଗୀୟ ଜ୍ୟୋତ୍ସ୍ନା ଆଲୋକ, ଯାହାକୁ ଦେଖି ମନେ ପଡ଼ିଲା—

•

'ଜ୍ୟୋତ୍ସ୍ନା ପ୍ଳେ ଚେନ୍ଦୁ ରୁପିଣୀ ସୁଖାପ୍ରେ ସରଚ୍ଛଂ ନମଃ' ଓ ସେହି ଦୃଶ୍ୟକୁ ଦେଖି ଜ୍ଞାନ କରି ନମସ୍କାର କଲି । ତାକୁ ବର୍ଣ୍ଣନା କରିବା ପାଇଁ ମୋତି ଭାଷା ନାହିଁ କି ଉପମା ନାହିଁ । ଧୋଗ ସୁବିଧା ନ ଥିବା ହେତୁ କଲଟରେ ପ୍ରତିବିମ୍ବ ଦେଖିପାରି ନାହିଁ ।

## ମାନସରୋବରର ଛାଡ଼ିଲୁ—୨୯ ଜୁନ ଗୁରୁବାର

ତା ପରଦିନ ସକାଳେ ହ୍ରଦର ଉତ୍ତରର ଉଡ଼ରେ ପାଇଲୁ ଏ ଖଣ୍ଡେ ପଶ୍ଚିମାଭିମୁଖେ ଯାଇ, ଉତ୍ତରାଭିମୁଖେ ଚାଲିଲୁ । କୁହାଯାଇ ଥାଏ ଯେ ଏହି ଖଣ୍ଡରେ ଶିବଙ୍କର ଏକ ପ୍ରକାର ଶାଳଗ୍ରାମ ମିଳେ । ଅଙ୍ଗୁଳି ଲମ୍ବର ଚକ୍‌କଣ ଶାଳଗ୍ରାମ, ଗୋଟିଏ ବା ଦୁଇଟି ଗାର ଥିବ, ଯାହାକି ଶିବଙ୍କର ପଇତା ସଙ୍ଗେ ସମାନ । ଦୁଇଟି ଗାର ଥିଲେ ସାକ୍ଷାତ୍ ଜୀବନ୍ତ ଶିବ, ଆବାହନ ଇତ୍ୟାଦିର ଦରକାର ନାହିଁ । ଭାଗ୍ୟଥିଲେ, ପୁଣ୍ୟ ଥିଲେ ମିଳିବ । ଗୋଟିଏ ଗୋଟିକିଆ ଗାର ଥିବା ଶାଳଗ୍ରାମଟେ ପାଇଲି । କଲିକତାର ଦଈବାବୁଙ୍କୁ ପ୍ରତିଶ୍ରୁତି ଦେଇଥିବା ହେତୁ କିଛି ପଥର ଗୋଟାଇଥିଲି । ବାଟରେ ପାଣିଧାରକୁ ଲାଗି ମଲା ମାଛ ପଡ଼ିଥିଲା । ତାକୁ ଆମର ତିବ୍ବତୀୟ ଲୋକେ ଉଠାଇ ନେଲେ । କାରଣ ପଚାରିବାରୁ କହିଲେ 'ତୁମେ ଯେଉଁଥିପାଇଁ ନେଉଛ ଆମେ ମଧ୍ୟ ସେଇଥିପାଇଁ ନେଉଛୁ' । 'ଓ୍ୟରଦ୍ଧାର ଜାଣେ ନାହିଁ' ବୋଲି କହିବାରୁ ଗାଈ-ଗୋରୁ ଓ ପିଲା-ପିଲିଙ୍କି ରୋଗ ହେଲେ ଖାଆଁରେ ମାଛ ଧୂପ ଦିଆଯାଏ ବୋଲି କହୁଥିଲେ । ମୁଁ ଉଥାର ସତ୍ୟତାର ପ୍ରମାଣ ଚାହିଁଥିଲି ।

### ଗୁସୁଲ ଗୋମ୍ପା

ବାଟରେ ପଡ଼ିଲା ଗୋଟିଏ ଗୋମ୍ପା । ନାମ ତାର ଗୁସୁଲ ଗୋମ୍ପା । ଗୋମ୍ପା ଭିତରକୁ ଦେଖିବାକୁ ଗଲୁ । ଦୁଆର ମୁହଁ ଆଉପଟରେ ଝୁଲୁଥିଲା ଖୁରା ଓ କଳା ଚମ ସହିତ ଚେଳି ଗୋଡ଼ଟିଏ । ମନର ଜ୍ଞାନ କରି ଭିତରକୁ ପଶିଲାବେଳେ ଏ ଦୃଶ୍ୟ ଦେଖିଲେ କ'ଣ ଲାଗେ ? ମନରେ ନେହିଁ ବିଚାର ଆସିଲା । ବ୍ୟକ୍ତ କରିବାରୁ ଦୟାସପ୍ରାନନ୍ଦଜୀ କହିଲେ—'ଏମାନଙ୍କର ଆଉଛି କିଛି ଖାଦ୍ୟ

ନଥାଏ, ଖାଲି ମାଂସ ଓ ଛତୁଆ । ସେ ମାଂସ ଓ ଛତୁକୁ ଭଗବାନଙ୍କଠି ଭେଟି ଦଅନ୍ତି, ପରେ ଓ ସେମାନେ ଖାନ୍ତି । ମୂଳମନ୍ତ୍ର ହେଲା—ଯାହା ଖାଇବ ତାହା ଭଗବାନଙ୍କୁ ଅର୍ପଣ କରି ଖାଇବ' ଭିତରକୁ ପଶି ଦେଖିଲୁ ତା ଭିତରେ କାନଫଟା ମନ୍ତ୍ର ଝୁଲନ୍ ଛବି ହୋଇ ପଡ଼ିଛି । ବଡ ବୌଦ୍ଧ ମୂର୍ତ୍ତିଠା ଆସ୍ଥାନ ଉପରେ ଓଲଟି ପଡ଼ିଛି ଓ ତଳେ ଅନେକଗୁଡ଼ିଏ ଦୁଇ ଇଞ୍ଚିଆ ଟିଂସାର ବୌଦ୍ଧ ମୂର୍ତ୍ତି ଫିଙ୍ଗା ଫଟାଚଡ଼ା ହୋଇ ପଡ଼ିଛି । ଶୁଣିଲି ଏ ସବୁ ଚୀନାମାନଙ୍କର କାଣ୍ଡ !

ତତ୍ତ୍ୱସ୍ୱାନନ୍ଦଜୀ କହିଲେ—'ଏଥିରୁ ଗୋଟିଏ ନେଲେ କମିତ ହୁଅନ୍ତା ? ଦେଶରେ ଦେଖାନ୍ତେ ।' ହେବାନନ୍ଦଜୀ ପାଖରେ ଥିଲେ, ଏତକ ଶୁଣୁ ଶୁଣୁ କହି ଉଠିଲେ—'ମୁଁ ଭାବିପାରୁ ନାହିଁ ଭୁଟମାନେ କେବେ ତୀର୍ଥ ଘର ଅପବିତ୍ର କରି ଆସି ଏ ସବୁ ହୀନ କାମ ମନ୍ଦିରରେ କରିଛନ୍ତି !' ଏହିକି ଟିକିଏ କଥାରେ ଦୋଷ ଦେଖି ତାଙ୍କୁ ଦେବାରେ ଏ ସାଧୁ ଖୁବ୍ ଧୁରନ୍ଧର । ତାଙ୍କ କଥାକୁ ଆମେ କାହାରୁ ପିମ୍ପୁଡ଼ି ଖାଉଡ଼ିଲା ଭଳିଆ ଖଣ୍ଡି ଦେଇଥିଲୁ । ମୁଁ କହିଲି—'ତୁମକୁ ଡର ଲାଗୁଛି ଯେ କୌଣସି ପ୍ରତିଶୋଧ ଶକ୍ତି ପଛରେ ଲାଗିଯିବ ।' ଭଗବାନ୍ ପାପି କଥାର ଦୃଷ୍ଟାନ୍ତ ଦେଇଥିଲି । ସେ ଆଖି ପତାକୁ ପକାଇ, ଓଠକୁ ଓଦାର ଇଙ୍ଗିତ ଦେଲେ ଯେ ସେପରି କିଛି ଭୟ ନାହିଁ ।

ଗୋମ୍ପାରୁ ବାହାରି ଫେର ମାନସରୋବର କଡ଼େ କଡ଼େ ଚାଲିଲୁ । ସମସ୍ତେ ଘୋଡ଼ା ପିଠିରେ ବସି ଆଗେଇଗଲେ । ତତ୍ତ୍ୱବିଦ୍ୟାନନ୍ଦଜୀ ସମସ୍ତଙ୍କୁ ଟପିଗଲେ । ପଛରେ ରହିଲୁ ମୁଁ ଓ ମୋ ପଛରେ ଧର୍ମଭାଇ ବାବୁ ।

କିଛି ଦୂର ଆଗେଇଲୁ ଆଗକୁ ଦେଖାଗଲା ଖଣ୍ଡେ ଶୁଭ୍ର ସ୍ଫଟିକ ଯାଗା । ସତେକି ମାନସରୋବରର ପାଣିକୁ କିଏ ଜମେଇ ଦେଇ ଗୋଟିଏ ଚଟାଣ କରିଛି । ତାକୁ ଟେକିଦେଲେ ଦେଖାଗଲା ଏହା ଗୁଣ୍ଡ ଭିତରେ ଦେଖିଲା ଯେ ସେ ଯାଗାଟା ସନ୍ନ୍ୟାସିଆ ଗୁଣ୍ଡରେ ପୂର୍ଣ୍ଣ । ପରେ କଟକମାନଙ୍କ ପଚୁରିବାରୁ ଜଣାଗଲା ଯେ ସେ ହେଉଛି ଧୋବାଖାର । ମାନସରୋବର ପାଣିରେ ଅନେକଟା ଧୋବାଖାର ମିଶିକରି ଅଛି । ଝିଅମାନେ ଯେ ଅଙ୍ଗକୁ ଏତି ଶୁଙ୍ଘିବାରୁ କେବଳ ଖାଉଟା ବହୁଯାଇଛି । ଭୂ ଗର୍ଭରେ ଅଛିଥିବାର ଏ ହେଉଛି ଗୋଟିଏ ପ୍ରମାଣ । ଶୁଣିଲି, ତାକୁ ନେଇ ତିବ୍ବତୀୟମାନେ ମୁଣ୍ଡ ଧୁଅନ୍ତି, ନଦୀ ଓ ଛ ପାପକୁ ବା ପେଖିକୁ ଥରେ ।

ତିବ୍ବତୀୟ ପୁରୁଷମାନଙ୍କର ଗୋଟିଏ ଲେଖା ବେଣୀ ଓ ସ୍ତ୍ରୀମାନଙ୍କର ଦୁଇଟି ଲେଖାଏ ବେଣୀ ଥାଏ । ସ୍ତ୍ରୀ ଲୋକମାନେ ବେଣୀର ଉପରୁ ତଳକୁ କ୍ରମାନୁସାରରେ ଗୋଟି ରୂପାର ମୁଦ୍ରା ଲଗାଇ ଥାନ୍ତି, ଅଳଂକାର ହିସାବରେ । ସେଗୁଡ଼ିକରେ ଚିନା, ତିବ୍ବତୀୟ, ବ୍ରିଟିଶ ଓ ନେପାଳ ପୁରୁଣା ମୁଦ୍ରା ଦେଖିବାକୁ ମିଳେ ।

ଏହାପରେ ଚଢ଼ିଲା ଗୋଟି ଢିମିରି ଖଣ୍ଡେ—ନମୁନା ମାଳ ଦେଖିବାକୁ ଦୃଷ୍ଟାନ୍ତ ଧାଡ଼ି । ଆମର ଗୁଡ଼ ଆସିଥିବା ଲହଡ଼ା ସଡ଼କ ଆମର ବାଁ ପଟରୁ ଆସି ଢିମିରି ଉପରକୁ ଉଠିଥାଏ । ବାଟ ନେଇ କିଛିଏ ସନ୍ଦେହ ହୋଇଥିଲା । ଘୋଡ଼ା ଖୁରା ଓ ଜଣେ ତିବ୍ବତୀୟର ଯୋଜନା ଚିହ୍ନ ଦେଖି ବାଟ ଚାଲିଲୁ । ସେହି ସଡ଼କ ଦେଇ ଦୁଇ ମାଇଲ ଖଣ୍ଡେ ଲହଡ଼ିଆ ଉପତ୍ୟକା ସମ ମାଳ ଅଞ୍ଚଳଟି ପାର ହେଲା ପରେ ଗୋଟିଏ ଖାଲୁଆ ନାଳ ପାର ହୋଇ ଏକ ଢେପର ପାଦ ଦେଶରେ ପହଞ୍ଚିଲୁ । ସେହି ନାଳର ଗର୍ଭରେ ମଧ୍ୟ ଠାଏଁ

ଠାଏଁ ଧଳା ମଚ୍ଛମଟିଆ ଗୁଣ୍ଡର ଚଟ୍ଟଡ଼ା ଦେଖିବାକୁ ପାଇଲି । କ୍ଷୀଣ ଧାରରେ ମାଗାଠାକୁ ଲର୍ଦପାତ୍ର କଦ୍ଧ କଲ୍ଲ ପାଣି ଗ୍ନଲ୍ୟାଏ । ପରେ ବୁଝିଲି ମେ ମାନସରୋବରରୁ ଏହି ନାଳ ଦେଇ ରାକ୍ଷସତାଲ୍କୁ ପାଣି ବୋହୁଯାଏ । ଉପରର ଢେଉଥିଆ ଯାଗାରେ ଗୁଡ଼ାଏ ଘୋଡ଼ା ଦେଖିବାକୁ ପାଇଲି ଓ ଘଣ୍ଟି ଶୁଣିବାକୁ ପାଇଲି । ବୁଝିଲି ସେଇଠି ଆମର ଠିକଣା ମୁଣ୍ଡ ।

## ଜିଉ ଗୋମ୍ପା ଗ୍ନଲଛି—୧୨୭+୯=୧୩୬ ମାଇଲ

ବେଳ ଅନେକ ଥିଲା । ପାଖରେ ଶିଉ ଗୋମ୍ପା ଥିବା କଥା ଶୁଣିଲି । ସଚ୍ଚିଦାନନ୍ଦସ୍ୱାମୀଙ୍କ ଅନୁରୋଧ ହେମେ ଦୁଇ ଜଣ ଗୋମ୍ପା ଦେଖିବାକୁ ବାହାରିଲୁ । ଅନ୍ୟମାନେ ଆଗରୁ ଦେଖି ସାରିଥିଲେ । ସେମୁ ମୋ ପାଇଁ ଅପେକ୍ଷା କରିଥିଲେ ।

ସନ୍ଧ୍ୟା ସମୟ । ଗୋମ୍ପା ଭିତରକୁ ଡେଇଁକୁ ଗୋଟିଏ କଳା ତିବ୍ବତୀୟ କୁକୁର ଉପରକୁ ଲମ୍ଫ ଆସିଲା । ଟିକିଏ ପଛକୁ ଘୁଞ୍ଚି-ଯିବାକୁ ଗ୍ନଲଗଲି । ଫେର ଆଗେଇବାକୁ ଚେଷ୍ଟା କରିବା ସଙ୍ଗେ ସଙ୍ଗେ ଝିଙ୍କିକି ମାଡ଼ ଆସିଲା ଓ ଆକ୍ରମଣ କଲା, ପ୍ରାୟ ଉପରକୁ ଡେଇଁଲା । ମନ ଭିତରେ ଖୁବ୍ ଡର ଯାଇଥିଲି ଓ ପଛକୁ ହଟି ଗଲି । ସଚ୍ଚିଦାନନ୍ଦସ୍ୱାମୀଙ୍କର ଢଙ୍ଗ ଟିକିଏ ବଦଳିଗଲା, କ'ଣ କଲେ କେଜାଣି, ସାଙ୍ଗେ ସାଙ୍ଗେ ଦୂରକୁ ଗ୍ନଲି ଯାଇଥିଲା ଓ ଆଗେଇବାରେ ବାଧା ଦେଇ ନଥିଲା । ଜଠି ପହଞ୍ଚିଲୁ ଗୋଟିଏ ପଥରର ଚଟାଣ ଉପରେ । ଆମେ ଅଛୁଁ ମାନସରୋବରର ଠିକ୍ କଡ଼ର ପାହାଡ଼ ଉପରେ । ବେଳଟା ଅଛି ସାଢ଼େ ସାତ ଘଣ୍ଟା ବଗରେ । ଆମେ ସ୍ୱବାଲୁ ଚେଯ ସନ୍ଧ୍ୟାଟା କେଉଁଠି ଭୁଲିଗଲୁ ।

ଏପରି ସମୟରେ ଦୂରରୁ ମୃଦଙ୍ଗ ଧ୍ୱନିର ଲହରୀ ପରି ଶବ୍ଦ ଶୁଣିଲୁ । ସଦାନନ୍ଦସ୍ୱାମୀ କହିଲେ—ଏଇ ଦେଖ, ଆମେ ଚାଲେ ଗୋମ୍ପାଟା ଅଛି, କିଏ ମନ୍ତ୍ର ପାଠ କରୁଛି । ତାର ଅର୍ଥ ନ ବୁଝିଲେ ମଧ୍ୟ ଶେଷର ପ୍ରଭାବ କପରି ଅଛି । ଏପରି ସମୟରେ ଗୋଟିଏ ଲୋକ ଆସି ତା ପଛରେ ଯିବାକୁ ଠାଳେ ' ଦେଖାଇ ଚାଲିଲା । ଗୋଟିଏ ସୁଡ଼ଙ୍ଗ ଭିତର ଦେଇ ଗୋମ୍ପା ଭିତରେ ପଶିଲୁ । ଅନ୍ଧାର କୋଠରୀ ଭିତରେ ଗୋଟିଏ ଦୁଇଟି ଦୀପ ମିଞ୍ଜି ମିଞ୍ଜି ଜଳୁ ଥାଏ । ଆମେ ଯେଉଁଠାରେ ଠିଆ ହୋଇଥାଉ ତାର ପାଖରେ ଜଣେ ବୁଢ଼ି ବସି ମାଳା ଗଡ଼ାଉ ଥାଏ । ତାଠୁ ପାଞ୍ଚ ହାତ ଦୂରରେ, ଗୋଟାଏ ପିଣ୍ଡା ଉପରେ ବଳସୃକାପ୍ତ ମୂର୍ତ୍ତି ବସି ମନ୍ତ୍ର ପାଠ କରୁଥାଏ । ଠବାଠ୍ୟ ନେଇ ବୁଝି ଉଠିବାକୁ ଚେଷ୍ଟା କରୁଛୁ, ଗୋଟିଏ ଗୁରୁ ଗମ୍ଭୀର ଶବ୍ଦ ଶୁଭିଲା—'ନେବିଠ୍ ପାଇଏ ।'

ତାଙ୍କର କଥାଟାରେ ମନ୍ତ୍ରର ଗୁଣ ଥିଲା । ଦୁଇ ଜଣ ବସି ପଡ଼ିଲୁ । କିଛି ସମୟ ପରେ ତାଙ୍କର ମନ୍ତ୍ର ପାଠ ସରିଲା । ସେଠୁ ସେ ହିନ୍ଦିରେ ଆରମ୍ଭ କଲେ—ଆପଣମାନେ କ'ଣ କୈଳାସ ଯାତ୍ରୀ ? ଆମେ 'ହଁ' କହିଲୁ । ତାଙ୍କ ତରଫରୁ ସେ କହିଚାଲିଲେ ଯେ ସେ ସେଠାର ଲାମା ନୁହନ୍ତି । ଚୀନ ଲୋକମାନଙ୍କ ଉପଦ୍ରବରେ ଅସଲ ଲାମା ଚାଲିଯାଇଛନ୍ତି । ସେ ନିଜେ କୌଣସି ଗୋଟିଏ ଭାରତୀୟ ସୀମାନ୍ତ ଗୋମ୍ପାରେ ଅନ୍ୟ କାମ କରୁଥିଲେ । କିଛିଟା ଜାଣିଥିବା ହେତୁ ଏଠାରେ ସେ କାମ ଚଳାଉଛନ୍ତି । ଚୀନା ଲୋକେ ଆସିବା ପରେ ଲୋକଙ୍କ ଅବସ୍ଥା ଅଭାବ ଖରାପ । ସେହେତୁ ଗୋମ୍ପା ଚଳାଇବା ପାଇଁ ଚାନ୍ଦାର ଅଭାବ । ତହିଁରୁ ସେ ଇଙ୍ଗିତ ଦେଇଥିଲେ ଯେ ଆମେ ତାଙ୍କୁ କିଛି ଚାନ୍ଦା ଦେଉଁ । ତାପରେ

ସେ ଆଡ଼ର ଭକ୍ତଙ୍କୁ ଥିବା କୋଠରୀକୁ ନେଇଥିଲେ ଓ ଗୋଟିଏ ଛଳା ମୂର୍ତ୍ତି ଦେଖାଇଥିଲେ । ସଚ୍ଚିଦାନନ୍ଦସ୍ୱାମୀ ନାମ ପଚାରିବାରୁ ଆମକୁ ବୁଝାଇ ଦିଆଗଲା ଯେ ସେଟା ବୁଦ୍ଧଙ୍କ ଉପରର ଦେବତା । ସେ ବୁଝି ପାରୁ ନ ଥିଲେ । ମୁଁ କୌଣସି ବହିରେ ମହାବୁଦ୍ଧ କଥା ପଢ଼ିଥିଲି, ସେ କଥା କହିଲି । ଲୋକଟି ଅନୁମୋଦନ କଲା । ସଚ୍ଚିଦାନନ୍ଦସ୍ୱାମୀ ସ୍ପଷ୍ଟୀକରଣ ଗୃହିଁଲେ ।

ଆମର ଦେଶର ବିଷ୍ଣୁଙ୍କ ଉପରେ ମହାବିଷ୍ଣୁ । ସେ ମଧ୍ୟ ସେହିପରି । ମାନେ ବୁଦ୍ଧଙ୍କ ଉପର ସ୍ତରର ଓ ସେହି ସ୍ତରର ବୁଦ୍ଧ, ତାହାର ଅଂଶ ସ୍ୱରୂପରେ ବୁଦ୍ଧଙ୍କର ଅବତରଣ ।

କୃଷ୍ଣଙ୍କ ବିଷୟରେ ଗୋଟିଏ କଥା ଅଛି । ସେ ମହାବିଷ୍ଣୁଙ୍କର ଗୋଟିଏ ଲୋମ ସ୍ୱରୂପ । ସେ ଥରେ କୌଣସି ବ୍ରାହ୍ମଣର ବାଳକକୁ ଉଦ୍ଧାର କରିବାକୁ ଯାଇ ମହାବିଷ୍ଣୁଙ୍କୁ ଭେଟିଥିଲେ ଓ ତାକୁ ଉଦ୍ଧାର କରିଥିଲେ । କୃଷ୍ଣ ପଦ ଓ ପୂର୍ଣ୍ଣ ବା ଅନନ୍ତ, ମହାବିଷ୍ଣୁ ଅଧିକତର ପୂର୍ଣ୍ଣ ବା ଅନନ୍ତ । ଗୋଟିଏ ଅନନ୍ତ ରାଶିରୁ ଅନନ୍ତରାଶି କାଢ଼ି ନେଲେ ମଧ୍ୟ ଅନନ୍ତରାଶି ରହିଯାଇଥାଏ । ଅନ୍ୟ ପ୍ରକାରେ—

ପୂର୍ଣ୍ଣମଦଃ ପୂର୍ଣ୍ଣମିଦଂ ପୂର୍ଣ୍ଣାତ୍ ପୂର୍ଣ୍ଣମିଦୋଚ୍ୟତେ,
ପୂର୍ଣ୍ଣସ୍ୟ ପୂର୍ଣ୍ଣମାଦାୟ ପୂର୍ଣ୍ଣମେବାବଶିଷ୍ୟତେ ।

ଅର୍ଥାତ୍

ଏ ପୂର୍ଣ୍ଣ, ସେ ପୂର୍ଣ୍ଣ, ପୂର୍ଣ୍ଣରୁ ପୂର୍ଣ୍ଣ ବାହାର କଲେ ବଳକା ରହିଲା ପୂର୍ଣ୍ଣ ।

ଓ, ମହାବସ୍ତୁ ଯେତେବେଳେ ଦେଖିଲେ ଯେ, ମହାଭାରତ ଯୁଦ୍ଧକୁ ମିଶାଇ ଅନେକଗୁଡ଼ିଏ କାର୍ଯ୍ୟକଳାପ ସୁଗୃହ୍ଥ ରୂପେ ସମ୍ପାଦନ କରି, ବନ୍ଧୁ ସଖାଙ୍କ ସହିତ ନିଷ୍କଣ୍ଟକ ରାଜ୍ୟଭୋଗ କରି, କୃଷ୍ଣଙ୍କ ଉପରେ ମାୟାର ପ୍ରଭାବ କିଛିଏ ପଡ଼ି, କିଛିଏ ଅହଂଭାବ ବଢ଼ିଯାଉଛି, ଅର୍ଥାତ୍ ମହାବସ୍ତୁଙ୍କର ନାଉଠ ଶୂନ ଅବସ୍ଥାଠାରୁ କୃଷ୍ଣଙ୍କର (ଶୂନ) ସ୍ଥିତାବସ୍ଥା କିଛିଏ ଦୂରେଇ ଯାଉଛି । କୃଷ୍ଣଙ୍କୁ ଚେତେଇ ଦେବାପାଇଁ ସେ ସେପରି କରିଥିଲେ । ଅର୍ଥାତ୍ ମହାବସ୍ତୁ ବା ମହାବୁଦ୍ଧ ହେଲେ ଚୈତନ୍ୟର ଶେଷାବସ୍ଥା—The Absolute, ନିର୍ବାଣ ଯେତେବେଳେ ପ୍ରାପ୍ତ ହୁଏ ।

ମନୁଷ୍ୟ ଓ ବୁଦ୍ଧଙ୍କ ଅବସ୍ଥା ଭିତରେ ସାଧକର ଦୁଇଟି ସ୍ତର ମୋର ମନେ ପଡ଼ୁଛି । ସେ ହେଲା ଅର୍‌ହତ ଓ ବୋଧିସତ୍ତ୍ୱ ।

ବାହୁଡ଼ି ଅସିଲୁ । ଗ୍ଲେଟା କେଉଁଠି ଆମ ପଛରୁ ହାତ ପତାଇ ମାଗି ଆସିଲା । ସଦ୍‌ଗଜାନନସ୍ୱାମୀ କିଛି ଚୀନା ନୋଟ ଧରାଇ ଦେଲେ । ମୁହଁ ଶୁଖାଇ ଦେଲା । ତାଠାରୁ ତାକୁ ନେଇ କିଛି ଭାରତୀୟ ମୁଦ୍ରା ଧରାଇ ଦେଲେ । ଆନନ୍ଦ ସହକାରେ ନେଲା । ସଦ୍‌ଗଜାନନସ୍ୱାମୀ କହିଲେ—'ଚୀନା ଦେଶରେ ଚୀନା ମୁଦ୍ରା ନେବାକୁ କୁଣ୍ଠିତ ଯେହେତୁ ତାର କିଛି ମୂଲ୍ୟ ନାହିଁ ।'

ମୋର ପ୍ରଥମରେ ଧାରଣା ହେଲା ଯେ ମୁଦ୍ରାସ୍ଫୀତି ହେତୁ ଏହା ଘଟିଛି । କିନ୍ତୁ ପରେ ଜାଣିଲି ଯେ ଏଗୁଡ଼ିକ ଖୁଚୁରା ନୋଟ, ତାଙ୍କ ଟଙ୍କାର ଶତାଂଶର ଗୁଣିତକ । ଧାତୁରେ ନ ହୋଇ କାଗଜରେ ହୋଇଛି । ଡାକଘରଠାରେ ଗୋଟିଏ ଚୀନା ମୁଦ୍ରା ସଙ୍ଗରେ ଦୁଇଟି ଭାରତୀୟ ମୁଦ୍ରା ଅଦଳବଦଳ କରାଯାଏ । ଆମର

ଯେପରି ଟଙ୍କାଟା ଶତାଂଶରେ ବିଭକ୍ତ ତାଙ୍କର ମଧ୍ୟ ସେହିପରି; କିନ୍ତୁ କାଗଜରେ । ସେହି କାଗଜରେ ଉଡ଼ାଜାହାଜ, ଜାହାଜ, ଟେଲି-ଶବଟ, ଜଲଲଙ୍ଗଲ ଇତ୍ୟାଦିର ଛବି ଥାଏ । ମୋର ମନେ ହେଲା ଯେ ବର୍ତ୍ତମାନର ଚୀନା ସରକାର ଲୋକଙ୍କ ମନକୁ ଶିଳ୍ପ ଆଡ଼କୁ ଟାଣିନେବା ପାଇଁ ଏପରି କରୁଛନ୍ତି । ଏହା ପୂର୍ବରେ ଉବ୍‌ଷପ୍ତମାନେ ସସ୍ତା ପାଟରେ, ଯୋର୍ଦ୍ଦିପାରୁ ସେଠି, ମନ୍ତ୍ର ଲେଖି ଲୋକଙ୍କ ମନକୁ ଧର୍ମ ଆଡ଼କୁ ଟାଣି ରଖିବାର ଯତ୍ନ କରୁଥିଲେ । ପ୍ରତ୍ୟେକ ନୋଟରେ ତିନୋଟି ଭାଷା ଲେଖାଅଛି । ପ୍ରଥମେ, ମଝିରେ, ଠିକଏ ଉପରକୁ ଚୀନା ଲିପିରେ, ଦ୍ୱିତୀୟଟି ନୋଟର ବାଁ ପଟକୁ ଆରବୀୟ ଲିପିରେ ଡାହାଣରୁ ବାମକୁ ଓ ତୃତୀୟଟି ଡାହାଣ ପଟେ, ଉବ୍‌ଷପ୍ତ ଲିପିରେ ବାମରୁ ଡାହାଣକୁ । ଆମର ଯେପରି ଲେଖାଯାଏ ।

ଘୃଣା—ଏ ବିଷୟ ଲିପିର ଲୋକଙ୍କୁ ଭଉଥର ରଖିବାକୁ ଚେଷ୍ଟା କରୁଛନ୍ତି ମାର୍କସବାଦ—ପୁଞ୍ଜିବାଦ, ଶୋଷଣଶୀଳ, ପ୍ରତିକ୍ରିୟା-ଶୀଳ ଇତ୍ୟାଦିଙ୍କ ପ୍ରତି ଘୃଣାର ସାହାଯ୍ୟରେ । ଘୃଣା ଯେପରି ଐକ୍ୟକରଣରେ ସାହାଯ୍ୟ କରେ ପ୍ରେମ ବା ବନ୍ଧୁତ୍ୱ ସେପରି କରିପାରେ ନାହିଁ । ପ୍ରେମ ଜୀବନରେ ଛନ୍ଦ ଓ ଶାନ୍ତି ଆଣିଦିଏ । ଘୃଣା ବେଛନ୍ଦ ଓ ଅଶାନ୍ତି ଆଣିଦିଏ, ମଣିଷ ଓ ସମାଜଟାକୁ ଭୋକସ କରିଦିଏ । ଅଶାନ୍ତିରୁ ଶାନ୍ତି (ରକ୍ଷା) ପାଇବା ପାଇଁ ସେହି ମଣିଷ ବା ସମାଜ ଗୋଟିଏ ପରେ ଗୋଟିଏ ଅଶାନ୍ତିଭର ଉତ୍ତେଜନା ଭିତରେ ବ୍ୟାପୃତ ଥାଏ ଓ ଅଶାନ୍ତିକୁ ବଢ଼ାଇ ଥାଏ । ଏହାର ମଧ୍ୟ ଶେଷ ନାହିଁ । ଏମାନେ ଗୋଟିଏ ପୁଞ୍ଜିବାଦରୁ ଯାଇ ଆଉ ଗୋଟିଏ ପୁଞ୍ଜିବାଦରେ ପଦାର୍ପଣ କରିବେ ଯେଉଁଟିକି

ଶୋଷଣ ଓ ଦୁର୍ନୀତି ରୂପବନ୍ୟାଲାଇ ଅଧିକତର ବ୍ୟାପିଥିବ । ତା'ପରେ ଚାଲିବ ଦୋଷାରୋପ ଓ ନିର୍ମଳର ଦୁହାଇ ଦେଇ ଗର୍ଜ୍ଜନ । ସ୍ଥଳଶତଶେଷରେ ହାଣ ଭାଙ୍ଗ । ଏହାର ମଧ୍ୟ ଅନ୍ତ ନାହିଁ । ହିଂସା ବଢ଼ିଲେ ମଣିଷ ପଶୁ ହୋଇ ବାଛ ବୈରୂର ହସାଇ ବାଜୁଙ୍ଗା ଭବ ଓ କଷ୍ଟ ଧାନ ଗଛ ମଧ୍ୟ ଉପାଡ଼ି ଦେବ । ମାଟିଆ ଭଙ୍ଗିବାର ଏ ନେଗେଟିଏ ଉପାୟ । ସେହେତୁ ଧର୍ମ ହେଲା ପ୍ରେମ । କ୍ରୁଷ୍ଟ, ବୁଦ୍ଧ, ଯିଶୁ ସମସ୍ତେ ସେହି କଥା କହିଥିଲେ—ନିଜର ପାଖପାର୍ଶ୍ୱକୁ ଭଲପାଅ । ହେ ମାନବ, ତୁମେ ନିଜ ବଞ୍ଚିବାକୁ ଚାହିଁ ତୁମର ଚାରିପାର୍ଶ୍ୱକୁ ଭଲ ପାଅ । ଭଲ ପାଅ ।

## ଶିଉ ଗୋମ୍ପା ଛାଡ଼ିଲୁ—୩୦, ଜୁନ ଶୁକ୍ରବାର

ତା'ପର ଦିନ ସକାଳୁ ସେହି ସାଢ଼େ ସାତ ଓ ଆଠଟା ସମୟ ଭିତରେ ବାହାରିଲୁ । ପ୍ରଥମରେ ଗୁଡ଼ାଏ ବୁଦା ବୁଦା କଣ୍ଟା ପୂଲା ପୂଲା ଜଙ୍ଗଲ ଦେଇ ଚାଲିଲୁ । କିନ୍ତୁ ସମୟ ପରେ ସେହିପରି ନେଡ଼ିଆ ପାଗଟେ ପଡ଼ିଲା । ତାକୁ ମଧ୍ୟ ଅତିକ୍ରମ କଲୁ । ଆମେ ଆସି ପହଞ୍ଚିଲୁ ସୁବିସ୍ତୀର୍ଣ୍ଣ ବର୍ଷା ମଇଦାନରେ । ଏହା ଶ୍ରବଣ ହ୍ରଦର ଈଶାନ୍ୟ କୋଣରେ ଅବସ୍ଥିତ । ଶ୍ରବଣ ହ୍ରଦର ପଛ ଟେଠା ହୋଇଥିବାରୁ ବାଟଟାସାରା ଓଦାଳିଆ ଓ ସନ୍ତସନ୍ତିଆ ଥିଲା ।

ଏହି ସମୟରେ ହାତ ଗୋଡ଼ ଝିଙ୍କି ପଡ଼ୁଥାଏ ।

ପ୍ରଥମ କାରଣ ହେଲା ଜ୍ୱରଟା ଉଠିଥାଏ । ଦ୍ୱିତୀୟରେ ଦୁଇବେଳା ଦୁଇ ହେଲିକପ୍ଟର ଓଭାମାଲଟ୍ ଛାଡ଼ିଦେଲେ, ଅଜ କିଛି ଖଣ୍ଟିରେ ଯାଉ ନଥାଏ । ତୃତୀୟରେ ପନ୍ଦର ହଜାର ଫୁଟ ଉପରର

ପଢ଼ଲା ପବନ । ମଝିରେ ମଝିରେ ଥରେ ଅଧେ ସାମାନ୍ୟ ଜ୍ୱର ଓ ଝାଡ଼ା ମଧ୍ୟ ହୋଇଥିଲ ।

ମାତ୍ର ନେଳଜ୍ଞୁ, ଏହି କେତୋଟି କାରଣ ହେତୁ—ମିଶ୍ରିତ ପାନୀୟସ୍ପୃହା ବର୍ଦ୍ଧିବା ପାଇଁ ଯଥେଷ୍ଟ ଥିଲ । ଯଥେଷ୍ଟ ଭାବରେ ଖାଦ୍ୟପ୍ରାଣ ବିଶେଷ କରି 'ଗ' ଖାଦ୍ୟପ୍ରାଣ ବ୍ୟବହାର କରିଛି, ଯୋଗୁଁକି ଦେହ ଭିତରେ କୌଣସି ରୋଗ ପଶି ନ ପାରେ ଓ ଅଣ୍ଡା ଧରି ନ ପାରେ । କୈଳାସରୁ ପ୍ରାଣ ନେଇ ଫେରି ଦେହଟାକୁ ସଜାଡ଼ିବା ମୋର ଉଦ୍ଦେଶ୍ୟ ଥିଲ । ଦିନେ ଅଧେ ନେତେବେଳେ କ୍ଷୀର ମିଳିଲ ତାହା ସେ ଦିନର ପ୍ରଧାନ ଖୋରାକ୍ ହୋଇଥାଏ । ଦିନେ ଦୁଇଦିନେ ଖଣ୍ଡେ ଘିଅ ଖାଇଥାଏ ଓ ଦିନଯାକ ଗୁଡ଼ୁଆ ହେଉଥାଏ ।

ସେ ଦିନ ଅବସ୍ଥା ଟିକିଏ ଖରାପ ଥିଲ । ତାମ୍ବଲ ଡାଡ଼ିଆ ଡେଉଁବାରୁ ସମସ୍ତେ ଗୁଲବାକୁ ଆରମ୍ଭ କଲେ । ଆଉ ଗୋଟିଏ କାରଣ ହେଲ, ଶେଠ୍‌ଜୀଙ୍କୁ ତାଙ୍କର ଘୋଡ଼ାଟା ଅଣ୍ଡାବାଡ଼ିରେ ନେଇ ଗୁଲିଗଲ । ଅପ୍ରତ୍ୟାଶିତ ହୋଇ ପାରିଲ ନାହିଁ । ତାଙ୍କର ଗୁଭର ଘୋଡ଼ା ଅଙ୍ଗସେନ୍ ପାଖରେ ନଥିଲ । କଚଖମା ଆଉ ଗୋଟିଏ ଘୋଡ଼ାରେ ଚଢ଼ି ତାଙ୍କୁ ବାନ୍ଧିଡ଼ାଇ ଆଣିବାକୁ ଗଲ । ସେ ସମୟରେ ସେ ଦେଖୁଥିଲ ଆମେରିକାନ୍ ଚଳଚ୍ଚିତ୍ରର 'କାଉବୟ୍' ଭଳିଆ—ବେଶଭୂଷା ଓ ଟୋପି ସହିତ । କଚଖମା ଶେଠ୍‌ଜୀଙ୍କୁ ଫେରାଇ ଆଣିଲ । ସଦାନନ୍ଦସ୍ୱାମୀ ଏ ଭିତରେ ମୋର ଅଭିପ୍ରାୟ ପରି ସେମାନଙ୍କୁ ଆଦେଶ ଦେଲେ ଯେ ତାଙ୍କ ବଦଳରେ ମୁଁ ଘୋଡ଼ାରେ ବସିବି । ତାଙ୍କର ମୋ ପ୍ରତି ଟିକିଏ ସମତାଳ ଭାବ ଓ ସହାନୁଭୂତି ଆସି ଯାଇଥିଲ । ଟିକସ୍ରାବ ଥିବା ହେତୁ ସେ ମୋର

ଅବସ୍ଥା ଲକ୍ଷ କରି ପାରୁଥିଲେ । ମାଇଲେ ଚାଟ ବା ଘଣ୍ଟାଏ ଖଣ୍ଡେ ବସିଛୁ କ୍ଳାନ୍ତ ଅନେକଟା ଦୂର ହେଲ । ନେଓଳୀ ଆସିବା ପରେ ସେମାନେ ସମସ୍ତେ, ସହକାରୀମାନେ ସହିତ, ବସିବାକୁ ଗୃହିଁବାରୁ ମୁଁ ବୁଝାଇ ପଡ଼ିଲି । ପର୍ବତର ଅଗ୍ରସ ପାଇଥିବା ହେତୁ ମୁଣ୍ଡ ସ୍ଥାନରେ ପହଞ୍ଚିଲେ କେବଳକୁ ଶ୍ରମ ବାଧୁ ନଥିଲା ।

ହଠାତ୍ ଆଶାତୀତ ସ୍ଥଳରେ ସାହାଯ୍ୟ ପାଇଲେ ତାହା ଭଗବାନଙ୍କ ଦୟାହେତୁ ବୋଲି ଧରି ନିଆ ଯାଇଥାଏ । ଧନ୍ୟବାଦ ଜ୍ଞାପନ କରାଯାଇ ଥାଏ ତାଙ୍କର ସେହି ଅଦୃଶ୍ୟ ହାତକୁ ।

ଭୂଟିଆ ପିଠିଆ ଦେବତା ଜଣେ କୈଳାସକି ସବୁ ସମୟରେ ଆଖି ଆଗରେ ଥାଏ । ଟେଇଆ ମଝିରେ ଦୁଇ ଜଣେ କଳା ଟୋପା ଦେଖାଇ କହିଲା—'ଆଜି ଗାଈ ସେଠାରେ ରହିବା ।' ସେଇ ମଇଦାନରେ ପ୍ରାୟ ସାତ ମାଇଲ ଖଣ୍ଡେ ଉଦାନିଆ ସନ୍ତ-ସନ୍ତିଆ, ଧାମଧୂମ ନାକ ସଲାଖ ଚାହି ଦେଇ ଗଳାରେ ସେଠାରେ ପହଞ୍ଚିଲୁ । ଆଖି ଦେଖିଲି—ଦୁଇ ତିନିଟି କଳା ତମ୍ବୁ ଓ ଏଠିସେଠି ଚରୁଥିବା ତିନି ଚାରିଟା ଚମରୀ ଗାଈ । ତମ୍ବୁଗୁଡ଼ିକ ଆଗରେ ଥାକେଇ ସଜାଡ଼ି ରଖାଯାଇ ଥିଲା ଶୁଖିଲା ଗୋବର । ସମଅଧିକାରର ନଥିବା ହେତୁ ଘସି ଭଳି ନାହିଁ । ଜାଳିବା ପାଇଁ ତାର ବ୍ୟବହାର । ବାକିସବୁ ଇନ୍ଦ୍ରଧନୁର ମଝିଳ ରଙ୍ଗ । ଆଜ୍ କଛି ନାହିଁ ।

ତର୍ଖା ମଇଦାନ—ଭୂଉଚ୍ଚ ୧୫୦୫୦ ଫୁଟ
ଚାଲିଛୁ—୧୩୫+୧୧=୧୪୭ ମାଇଲ

ଏ ପୁଣି ଗୋଟାଏ ଯାଗା । ଯାଗା କହିଲେ ରହିବାଟ ପାଇଁ କିଛି ସ୍ଥାୟୀ ବସ୍ତୁ ଥିବା କଥା । କିନ୍ତୁ ଏଠାରେ ସେପରି କିଛି

ନାହିଁ । ଉଇଁଚ ପିଠିଆ ହୁଡ଼ୁଞ୍ଚା ପରେ ସାତ ଆଠ ମାଇଲ୍ ଗୃହ ଅସିଛୁ । କୈଳାସର ପାଦଦେଶରେ ପହଞ୍ଚିବାକୁ ଆହୁରି ଚାରି ମାଇଲ ବାଟ ଅଛି ବୋଲି ଶୁଣିଲି । ମାଇଲ ମାଇଲ ବ୍ୟାପି ଏକ ଦିଗନ୍ତ ବିସ୍ତୃତ ତୃଣମୟ ପ୍ରାନ୍ତର । ଏତେ ଯାଗାରେ ଅପର ରହିବା ସ୍ଥାନ ନିରୂପଣ କରିବା ଯାହା, ନଈ ସମୁଦ୍ରରେ ସ୍ଥାନ ନିରୂପଣ କରିବା ତାହା—ନାବିକର ଯନ୍ତ୍ରପାତି ଦରକାର । ଗାଇଡ଼ମାନେ ତାହା ମଧ୍ୟ ସଠିକ୍ ନୁହେଁ ।

ଟିକିଏ ମଜା କଥା ହେଉ । ମନଟା ଟିକିଏ ବିଶ୍ରାମ ନେବ । ଚଳଚ୍ଚିତ୍ରରେ ଦେଖିଥିଲି, ଜଣେ ବୋକା ଆଉ ଜଣେ ବୁଦ୍ଧୁ ଗୃହର ଖୋଜ ବାହାରିବା କଥା । ଅନେକ ଯାଗା ବୁଲି ବୁଲି ହୟରାଣ ହେଲେ । ଯେଉଁଠି ଯାଗାରେ ନିର୍ଜନ ହୋଇଯାନ୍ତି, ମୁଣ୍ଡ ଥରେ ଏପଟକୁ ଓ ଥରେ ଆରପଟକୁ ବଙ୍କେଇ, ମୁହଁ ଶୁଖାଇ ଚହିଁ ବହିଁ ହୋଇ ଆଗେଇ ଥାନ୍ତି । ଶେଷରେ ଗୋଟିଏ ସିନେମା ଅନୁଷ୍ଠାନ ତରଫରୁ ପ୍ରଚାର ପତ୍ର ମାରିବା ପାଇଁ କାମ ପାଇଲେ । ପୋଷ୍ଟର, ବାଲ୍ଟି, ବ୍ରସ୍, ଅଠା ସହିତ ବାହାରି ପଡ଼ିଲେ । ବୋକାର ଟିକିଏ ମୁରବି ପଣିଆ ଥାଏ । ବୁଦ୍ଧୁକୁ ସରଞ୍ଜାମ ଏକାକ ଧରାଇ ଦେଲା । ସେ ବାଁ ହାତ କାଖତଳେ ପୋଷ୍ଟରଗୁଡ଼ିକ ଓ ଡାହାଣ ହାତରେ ଅଠା ସହିତ ବାଲ୍ଟି ଓ ବ୍ରସ୍ ଧରି ବୋକାର ଅନୁଗମନ କଲା । 'କାମ ଖଣ୍ଡ ପାଇଛନ୍ତି ଓ କିଛି ଦେଖାଇବେ' ଭାବରେ ବାହାରିଲେ । ପହଞ୍ଚିଲେ ଗୋଟେ ସହର ଗଳି ଅଞ୍ଚଳରେ । ପାଖରେ ଗୋଟେ ବଡ଼ କାନ୍ଥ ଥିଲା ଓ ତାର ଗୋଟେ କଡ଼କୁ ମଇଳା ଗଦାଟାଏ । ସେ ମଇଳା ଗଦାର ଏଠି ସେଠି କିଛି ଅମ୍ଳ ରେଖା ପଡ଼ିଥାଏ । ଗୋଟିଏ ମସ୍ତବଡ଼ ବାରବୁଲା ଷଣ୍ଢ ସେଠି

ଅମ୍ବ ଚୋପା ଖାଉଥିଲା । ବୋକା ଭଣ୍ଡାଟକୁ ଦେଖି ନିର୍ଦ୍ଦେଶ
ଦେଲା, କଳାପଟାର ଉପରେ ରଖିବା ପାଇଁ । ବହିପତ୍ର କାମ ପାଇଁ
ପାଇଁ ଅଣ୍ଡା ସଜାଇଲେ । ଦମ୍ ଦେଲେ । ତା'ପରେ ଚାଳକ ବୋକା
ଆଖି ବୁଜିଲା, ନୂତନ ଦେବ୍ୟାନ୍ତିର ପୂର୍ବ ଜନଯୋଗ ଭଳିବ
ବୋଲି । ହଣ୍ଡିଟା ତାଙ୍କୁ ପଡ଼ିଥିବ ଠିଆ ହୋଇଥିଲା । ତାକୁ
ଦେଖିଲ ଓ ପାଖରେ ଗୋଟିଏ ଛୋଟା ଚଢ଼ିଥିଲା । ସଂଗତରେ
ପଟାଟାକୁ ଆଣି ହଣ୍ଡିର ଚାଳକୁ ଲଗାଇ ଠିଆ କରିଦେଲା । ବୁଢ଼ା
ଅଢ଼େ ଚାହିଁଲେ—ଦେଖ, ମୁଁ ଭ'ଣ କରୁଛି—ସବୁରେ । ବୁଢ଼ାର
ଖାଇଗଲା ଗୋଟେ ପୋଷ୍ଟର ଟାଣିନେଲା । ଘାଲ୍ କିଛି ବସ୍‌ରେ
ଅଠା ଲଗାଇ ଧରିଲା । ପଟାକି ଦେହରେ ପ୍ରତ୍ୟେକପଟକୁ ଓଲଟାଇ
ରଖି ଦେଇପାରିଲା । ଭାଗ୍ୟ କାରଣ । ଅଠା କିଛିଏ ନଅଣ୍ଟ ପଡ଼ିଲା,
କାମଟି ସାଙ୍ଗ କରିବା ପାଇଁ । ବ୍ରସ୍‌ଟି ଧରିଆଣି, ଅଠାରେ
ବୁଡ଼ାଇ, ବୁଲାଇ ସେହି ତଳଭାଗ ପାଖରେ ଯାଇ ଦେଖେଇ
ପୋଷ୍ଟରଟି ନାହିଁ । ଠିଆ ହୋଇ ଚାକର ଅଢ଼େ ଆଖି ବୁଜିଲା ।
ଏଣିକି ପଟାଟା ଆଜ ଚାରି ପାଖ ହାତ ଆଗେଇ ଯାଇଛି । ନଗ୍ନପଣ
କରି ଦେଖେଇ କଳଙ୍କା ହଣ୍ଡିଟା, ଅମ୍ବ ଚୋପା ଖାଇ ଖାଇ
ଆଗେଇଛି । ତାରତ ସ୍ଥାପ୍ତିସ୍ଥିତି ଥାଇ ନପାରେ । ଗୋଡ଼ ତଳକୁ
ଦେଖେଇ ପୋଷ୍ଟର ସହିତ ପଟାଟା ପଡ଼ିଛି ।

•

ବୁଢ଼ା ଏ ସବୁ ଚରିତ୍ର ଦେଖୁଥିଲା । 'ହଁ' କହି ଓଠ ଚାପି,
ମୁହଁରେ କୌଣସି ଭାବ ନ ଦେଖାଇ ଆଗେଇଲା । ଅଠା ହେଉଛି
ପୋଷ୍ଟର ଉଠାଇ ବୋକା ମୁହଁରେ ଚାପିଦେଲା । ବୋକା ବଲ
ବଲ ଚାହିଁଥାଏ । ପୋଷ୍ଟାର ଆପେ ଖସିଗଲା । ବୋକା ପ୍ରତିଶୋଧ

ନେବାକୁ ଯାଇ ବାଲ୍‌ଟିପାଡ ଅଟା ବୁଦ୍ଧ ମୂର୍ତ୍ତିରେ ଢ଼ାଳଦେଲ । ପାଇଛି ସବୁକ । ଅଖି ମିଚି ମିଚି ଭଲ ଚୂର୍ଦ୍ଧୀଶ୍ୱର୍ଦ୍ଧ ଦେଖିଲେ ।

ତମ୍ବୁ ବା ଚମଘ୍ର ଗାଢ଼ି ଦେଖି ଯାଗାକୁ ଠାଉ କଲାବା ବୋଲା ପଡ଼ିଅ । କନ୍ତୁ ଗୃହପଟେ ଢାଦୁଅ, ସନ୍ତମନ୍ତୁଅ ଯାଗା ଭିତରେ ଏ ଟିକିଏ ଅପେକ୍ଷାକୃତ ଶୃଙ୍ଖଳ ଯାଗା ଥିଲ, ଯଦ ଓ ସାମାନ୍ୟ ଓଦାଳିଅ । ଯାଗାଟା ଟିକିଏ ଢେଉଁଅ ଥିଲ । ଗୃହପଟେ ଖାଲି ଘାସ । ଦୂର ଦିଗନ୍ତରେ ପାହାଡ଼ର ବେଷ୍ଟନୀ ।

ଏଇ ଚର୍ଯ୍ୟ ଭୂଇଁକୁ ସମ୍ବଳ କରି କେତେଟି ପରିବାର ଭରଣ ପୋଷଣ କରୁଥାନ୍ତି ।

ଘରଭିତ୍ତରୁ ଜଣେ 'ଜମା ଗୁରୁ' ଅଛିନ୍ତି ଓ ଔଷଧ ଦେଇ ବିତରଣ କରୁଛନ୍ତି ଶୁଣି କେତେଜଣ ରୋଗୀ ଆସି ପହଞ୍ଚିଲେ । କଟଣ୍ଣା ତବ୍ଗାୟୁ ଓ ହାନ୍‌ ଭାଷା ମଧ୍ୟରେ ଏବଂ ମୁଁ ହାନ୍‌ ଓ ଇଂରେଜ ଭାଷା ମଧ୍ୟରେ ଦ୍ୱିଭାଷି ସମ୍ପର୍କ ସ୍ଥାପନ କରୁ ରହିଲୁ ।

ରୋଗୀଙ୍କ ଭିତରେ ଜଣକର କଥା ଉଲ୍ଲେଖଯୋଗ୍ୟ । ଚ' ଫୁଟ ଲମ୍ବାର ବିଶାଳକାୟ ଜଣେ ଆସି ବସିଲ । ସେ କହିଲ ସେ ତାର ବୁଢ଼ା ବାପା, ମା, ଦୁଇ ଭାଇ ଓ ଗୋଟେ ଭଉଣି । ଚୀନାମାନେ ପଶିଆସିଲ ସମୟରେ ତାଙ୍କର ବନ୍ଧୁତ୍ୱ କରିଥିବା ହେତୁ, ସେମାନେ ତାର ଦୁଇ ଭାଇଙ୍କୁ ବଳାତ୍କାରରେ ନେଇ ଯାଇଛନ୍ତି । ସେମାନଙ୍କର ଖବର ନାହିଁ । କନ୍ତୁ ଅନୁମାନ କରାଯାଏ ଯେ ସେମାନଙ୍କୁ ସଡ଼କ ତିଆରି କାମରେ ଲଗାଯାଇଛି । ସେମାନେ ଏକ ପ୍ରକାର ଜମିଦାର ଶ୍ରେଣୀର ଲୋକ । ବସ୍ତୁସ ତାର ବାଇଶି । ବାହା ହୋଇ ନାହିଁ । ରାତିରେ ଅନେକ ଦୁଃସ୍ୱପ୍ନ ଦେଖୁଛନ୍ତି ।

ସହଜାନନ୍ଦସ୍ୱାମୀ ସେଠୁ ତାଙ୍କ କ ପ୍ରଭାବ ଦୁଃସ୍ୱପ୍ନ ହେଉଥିବା କଥା ପଚାରିଲେ । ସେ ଭୂତ ପ୍ରେତ ଇତ୍ୟାଦ ଡ଼ରାଇବା କଥା କହିଲ । ସହଜାନନ୍ଦସ୍ୱାମୀ ସେଠୁ ଘର ପରୀକ୍ଷା କରିବାକୁ ଗୃହିଁଲେ । ସେ ଦେଖିଲେ ସାଧାରଣ ଭାବରେ କୋଠଟି ଭାଡ଼ିବାକୁ ଅତ୍ୟନ୍ତ ହୁଏ, ଜଣା ଗଲ ଯେ ସେ ବ୍ୟକ୍ତି ଜଣେ ସ୍ତ୍ରୀ ଲୋକ । ସେଠୁ ତାଙ୍କୁ କୋଠ ନ ଖୋଲିବାକୁ ଓ ଘରକୁ ଯାଇ ବ୍ୟବସ୍ଥା କରିବାକୁ ପଢ଼ିବ ବୋଲି କୁହାଗଲ ।

ତାର ଘରଟା ସେଠାରୁ କିଛି ଦୂରରେ ଥାଏ । ଦୁଇ ଗୃହ ମାଇଲ ହେବ ବୋଧହୁଏ । ସହଜାନନ୍ଦସ୍ୱାମୀ ଘୋଡ଼ାରେ ବସି ଗଲେ ।

ସେଠାରୁ ଫେରି ମୋତେ କହିଲେ ଯେ ସେ ସ୍ତ୍ରୀ ଲୋକଟିକୁ ହସ୍ପିଟାଲ ନେଇଥିଲ । ସେ କୁଟୁମ୍ବଟା ଏକ ଯୋଦ୍ଧା ଶ୍ରେଣୀର ଲୋକ । ଯା'ର ଜଇ ତ ଏତେ, ତା'ର ବୁଢ଼ା ବାପା ତାଠାରୁ ହାତେ ଛି । ବର୍ତ୍ତମାନ ଖରେଷ ଗରିବ । ଦୁଇ ଭାଇକୁ ଚୀନାମାନେ ଧରି ନେଇଯିବାରୁ ଭରଣପୋଷଣରେ ବିଶେଷ ଅସୁବିଧା । ଘରଟାରେ ହନୁମନ୍ତ ମନ୍ଦ ପଢ଼ କରି ତାଙ୍କୁ କବଚ ଓ ଔଷଧ ଦେଇ ଆସିଛନ୍ତି । ଗୋଟିଏ ତମ୍ବୁ, ମାନେ ବଟବୃକ୍ଷ । ବାପା, ମା ଭିତରେ ଶୁଅନ୍ତି । ସାନ ଭଉଣିକୁ ଜ୍ୱର । ସେ ବାହାରେ ଶୋଇଥିଲ । ତାଙ୍କୁ ମଧ୍ୟ ଔଷଧ ପଦ ଦେଇ ଆସିଛନ୍ତି । ଜ୍ୱର ହୋଇଥିବାରୁ ଭିତରେ ଶୋଇବାକୁ କହିବାରୁ ଖିଲ ଖିଲ ହସିଲ । କହିଲ ଯେ ଖରାଦିନ ତ । ଅଥଚ ଆମେ ଶୀତରେ ଥରହର । ଖରାଦିନ ହୋଇଥିଲେ ମଧ୍ୟ, ଜ୍ୱର ହେତୁ ଭିତରେ ଶୋଇବାକୁ ହେବ କହି ଚାଲି ଆସିଲେ ।

ମେଜର ସନ୍ତୁସିଂ—ପଛରେ ଆସୁଥିବା ମୋଟରଟା କ'ଣ ତୁମ ତଲାସ କି ?

ଜଣାଇଲି—ହଁ ।

ଲେଉଟି ଚାଲିଗଲ ।

ଅନେକ ଦିନ ତଳେ, ଚୀନାମାନେ ତିବ୍ବତରେ ପଶି ନଥିଲେ, ପଢ଼ିବାକୁ ପାଇଥିଲି ଶ୍ରେଷ୍ଠ ଗୋଟିଏ ଲେଖା । ଲେଖକ ସୈନିକ ସ୍କ୍ବାଡ୍ରନର ଜଣେ ଥିଲେ ଓ କୈଳାସ ଯାତ୍ରା କରି ଫେରିଥିଲେ । ସେ ଖବର କାଗଜ ଜରିଆରେ ଜଣାଇଥିଲେ ଯେ ବାହାରର ତିବ୍ବତୀୟମାନେ ବନ୍ଧୁକ ବୋହି ଆସି ନିଃସହାୟ ଯାତ୍ରୀମାନଙ୍କଠାରୁ ଖାଇବା ଜିନିଷ ଛଡ଼ାଇ ନେଉଛନ୍ତି । ପ୍ରତିରୋଧ ବା ସାମାନ୍ୟ ଭୟ ଦେଖାଇଲେ ଗୁଳି ଚଳାଉଛନ୍ତି । ଜେଗୁଆ ଧନୀମାନେ ଏଥିରୁ ବାଦ୍ ପଡ଼ୁନାହାନ୍ତି । ସେତେବେଳେ ଯାତ୍ରୀମାନଙ୍କୁ କେବଳ ଅସ୍ତ୍ର ଶସ୍ତ୍ର ନେବା ମନା ଥିଲା । ଯେହେତୁ ଲେଖକ କିଛି ନେଇ ନଥିଲେ ଓ ତାଙ୍କ ଲେଖା ଜରିଆରେ ଭାରତ ସରକାରଙ୍କୁ ଅନୁରୋଧ ଜଣାଇଥିଲେ ଯେ ଯାତ୍ରୀଙ୍କୁ ଅସ୍ତ୍ରଶସ୍ତ୍ର ନେବାପାଇଁ ଯେପରି ଅନୁମତି ମିଳେ ବା ତାଙ୍କର ନିରାପତ୍ତାର ସୁରକ୍ଷା ହୁଏ ସେପରି ବନ୍ଦୋବସ୍ତର ବ୍ୟବସ୍ଥା କରାଯାଉ । ସେହି ଲେଖାଟା ମନେ ପଡ଼ୁଥିଲା । ସେ ଆସିଥିଲା ଯେପରି କ୍ଷିପ୍ର ଗତିରେ ଉଭେଇଗଲା ସେହିପରି ।

ଶୁଣିଲି ସେଥର ଦଳଗୁଡ଼ିକୁ ଚୀନାମାନେ ସାବାଡ଼ କରି ଦେଇଛନ୍ତି । ଧୀରେ ଧୀରେ ଦେଖିବାକୁ ପାଇଲି, ଅସ୍ପଷ୍ଟ ଗୋଟିଏ ଜନବସତି । କ୍ରମେ ପାଖେଇ ଆସିଲା ତାରଚେନ, ଯେଉଁଠାରୁ କୈଳାସର ସାତଦିନିଆ, ବତିଶି ମାଇଲିଆ ପରିକ୍ରମା ଆରମ୍ଭ ହୁଏ ।

## ଡାରଚେନ୍—୧୫୪୦୦ ଫୁଟ

ଧୂଳ ଆଖିରେ ଦେଖି ଦଅଁଙ୍କୁ ମୁଣ୍ଡିଆ ମାରିଲେ ହେବ ଦର୍ଶନ । ବେଢ଼ା ବୁଲି ପରିକ୍ରମା କରି ଆସିଲେ ସେ ଦେବ ଭୂମି । ଦଅଁଙ୍କୁ ଛୁଇଁ ବା କୁଣ୍ଡରେ ପଖାଳି ଆଲିଙ୍ଗନ କଲେ ସେ ଆଣିଦେବ ଏକ ରକମ ସନ୍ତୋଷ । ଏଗୁଡ଼ିକ ମଧ୍ୟ ଦର୍ଶନର ଅନ୍ତର୍ଭୁକ୍ତ । ମନ-ଇନ୍ଦ୍ରିୟ ଚକ୍ଷୁ କଣ୍ଠ ଆଦିଦ୍ୱାରା ଅନୁଭବ କଲେ ତାକୁ କହନ୍ତି ପ୍ରକୃତ ଦର୍ଶନ । କୈଳାସ ଦର୍ଶନର ଦ୍ୱିତୀୟ ପର୍ଯ୍ୟାୟର ପରିକ୍ରମା-ଦର୍ଶନ ଏଥି ଯାଗାଠାରୁ ଆରମ୍ଭ ହୋଇ ହୋଇଥିବ ଏଥିପାଇଁ ନାମ ରହିଛି ଡାରଚେନ୍—ଫସ୍ତୁର 'ଦର୍ଶନ'ର ଅପଭ୍ରଂଶ ଭଳି ମନେ ହେଲା ।

ଚୀନାମାନେ ଆସିବା ପୂର୍ବରୁ ଡାରଚେନ ଥିଲା ଭୁଟାନ ରାଜ୍ୟର ତତ୍ତ୍ୱାବଧାନରେ । ଗୋଟିଏ ଗାଁ । ଅନେକଗୁଡ଼ିଏ ଘର ଥାଏ । ନିକଟ ଗୋଟିଏ ଗାଁ କଲୋନି । ଗାଈ-ଗୋରୁ ଛେଳି-ମେଣ୍ଢା ଘର ବ୍ୟବହାର କରନ୍ତି । ସେଠାରେ ଗୋଟିଏ ଗୋମ୍ପା ଅଛି । ଚୀନା ଲୋକେ ଆସିବା ପରେ ଗୋମ୍ପାରେ ଥିବା ଲାମାମାନେ କାଏ କୁଆଡ଼େ ଛିଟିପିଟି ଚାଲି ଯାଇଛନ୍ତି । ସେ ସମୟକୁ ଜଣେ ମାତ୍ର ଚୌକିଦାର ଭୁଟାନରୁ ଆସି ଦେଖାଶୁଣା କରୁଥାଏ । ଅନ୍ୟ ସନ୍ନ୍ୟାସୀମାନେ ଗୋମ୍ପା ଦର୍ଶନ କରିସାରି ଥିଲେ ବି ପରିକ୍ରମା ପାଇଁ ଉଦ୍ୟମ କରୁଥିଲେ । ପାହାଡ଼ କାନ୍ଥର ପ୍ରତ୍ୟେକ ଭାଗରେ 'ଓଁ ମଣି ପଦ୍ମେ ହୁଂ ହ୍ରୁଂ' ଲେଖା ହୋଇଥାଏ । ତଳ ଗୁହାକୁ ଖୋଳି ପୋତା ହୋଇଥିବା ଗାଁ ମନ୍ଦିରର ମୁଣ୍ଡିଆ ମାରି ପରିକ୍ରମା ଆରମ୍ଭ କଲୁ । ସେ ସମୟରେ ଫକୀରଙ୍କ ଭଳି ଉଦ୍ଦେଶ୍ୟ ଜଣାଗଲା ଯେ ଜୀବନର ଘାତ ପ୍ରତିଘାତର ଅଟଳ୍ପା ଚକରେ ପଡ଼ି ଯାହାସବୁ

ଚାହିଁବାକୁ ହେଲେ ପଛ, ଅଗ୍ରକାଳରେ ବୃନ୍ଦାବନରେ ଯେପରି ଜ୍ଞାନ ହୁଏ, ସେହି ମୋର ଲକ୍ଷ, ସେହି ମୋର ପ୍ରାର୍ଥନା । ଅନ୍ୟ ଯାହାଙ୍କର ଆଶା ଉଦ୍ଦେଶ୍ୟ ଥିଲା ତାହାହିଁ ଥିଲା ତାଙ୍କୁ ସେଠାରେ ଭଲ ଦେଖାଦେଲା ।

## ପରିକ୍ରମା ଆରମ୍ଭ—୯, ଜୁଲାଇ, ଶନିବାର

ବାଁ ପଟକୁ ଦେବାନ ଓ ଗୋବର୍ଦ୍ଧନ ହ୍ରଦ, ଡାହାଣ ପଟକୁ ଖେଳାଇ ଓ ଚାରି ପାଞ୍ଚ ପାହାଡ଼ର ମାଳ । ଏହାରି ଭିତରେ ଉଚ୍ଚ ନୀଚ, ଖାଲ ଢିପ ହୋଇ ମାଇଲଏ ଖଣ୍ଡେ ଚାଲି ଚାଲି କଟୁଥିବା ଉଚ୍ଚ ଧଉଳ ହାମଳ କଳା ପରେ, ଗୃହସ୍ଥମାନଙ୍କୁ ହେଁଟରେ ପକାଇ ଶାଳ୍ପ ଡାହାଣ ପଟକୁ ବଙ୍କେଇ ଚାଲିଲୁ । ରାସ୍ତା ଥିଲା ଯେପରି ସାଧାରଣଙ୍କର ତିମିରି ଚଳାର । ଦୁଇ ତିନି ମାଇଲ ଗଲା ପରେ ପଡ଼ିଲା ଗୋଟିଏ ପସ୍ତ ଖେଷ୍ଟ—ଚନ୍ଦ୍ରାଖମ୍ବ, ଯାହାର ଉଚ୍ଚତା କଳନା କରିହେବ ନାହିଁ । ଚୂଳଣ ପରିଣ ଫୁଟରୁ ଅଧିକ ହୋଇଥିବ । ତଳଉ ଝଣା ଯାଇ ଠିଆ କରାଯାଇଛି ଓ କନାର ପତାକା ଗୁଡ଼ାଏ ଓହଳା ଯାଇଛି । ତାକୁ ଡାହାଣ ପଟେ ରଖି ଚୂଲିବଢେ ବୁଲିବାକୁ ହେଲା । ତା ପାଖରେ ଥିବା ନନ୍ଦ ବଷରେ ଘାସ ଉପରେ ସପଟଳ ଯାଗାରେ ତମ୍ବୁ ପାରି ସେଥି ପଡ଼ିଲ ସୁଦାଇ ଶନିବାର ଦିନ ବିଶ୍ରାମ ନେଲୁ ।

## ସରଦୋଙ୍ଗ ଗ୍ରାମଛି—୯୪୭+୧୦=୧୫୭ ମାଇଲ
## ପରିକ୍ରମା—୩ ମାଇଲ

ଖୁବ୍ ସୁନ୍ଦର ଜାଗାଟା ସେଠା । ଦୁଇ ପାଖି ପାହାଡ଼ର ଫାନ୍ଦ ଥିବା ଗୋଟେ ଗଡ଼ାଣିଆ ଫାଙ୍କ ଦେଇ, ଏକ ବୃକ୍ଷର

ଦୂରବୀକ୍ଷଣ ଯନ୍ତ୍ର ଦେଇ ଦେଖିଲି ଭଳିଆ, ଦେଖିବାକୁ ପାଇଲି, ଅଭିଭୂତ ଓ ସ୍ତମ୍ଭୀଭୂତ ହୋଇ, ଅବଶ୍ୟ ଆଶ୍ୱାସନା ପାଇ, ଏକ ଆକାଶ ଭେଦୀ ତୁଷାରାଚ୍ଛାଦିତ ଶିଖର ପଥର ଖଣ୍ଡର ଜ୍ୟୋତିର୍ମୟ ଲିଙ୍ଗ—ତାହା ଝଟକୁ ଥାଏ । ଦେଖାଯାଉ ଥିଲା ସଡ଼କ ନିକଟରେ । କିନ୍ତୁ ଦୂରରୁ ଦେଖିଲେ ମାଇଲିଏ ଖଣ୍ଡିରୁ କମ୍ ହେବ ନାହିଁ ।

ଚକେବେଶ ଥିଲା ମଠନାରମ । ନଦୀର ନାମଟି ଥିଲା ଲ-ଚୁ । ତାର ଅର୍ଥ ଭଗବାନଙ୍କ ନଦୀ । ତାହା ବା କି ପାଠାନ୍ତର ? ଗମ୍ଭୀର ଦୁଇପଟେ ଥିଲା ଦୁଇଟି ଧାର । ସ୍ୱଚ୍ଛ ନିର୍ମଳ ଜଳ ଭଲ ଭଲ ରବରେ ପ୍ରବାହିତ ହେଉଥିଲା, କୈଳାସ ଶିଖରର ବରଫ ଗଳିତ ହୋଇ—ସ୍ୱର୍ଗର ଗଙ୍ଗା । ପରିକ୍ରମା ପଥରେ ଟିକିଏ ଆଗକୁ ଗଲେ, କୈଳାସରେ ବେଷ୍ଟନ ସାଜିଥିବା ପାହାଡ଼ । ସେଠାରେ ଦିଆ ହୋଇଥାନ୍ତି ଠିକ୍ ଦେଉଳ ଜଗାଇଲି ଭଳିଆ । ମନେ ପଡ଼ିଲା ଭୁବନେଶ୍ୱର ଓ ତାର ମନ୍ଦିର । କହିପାରିବେ କିଏ କାହାର ଅନୁକରଣରେ ହୋଇଛି ? ଯଦି ନ କହିପାରନ୍ତି ତାହାହେଲେ, ମୋ ମତରେ ଠିକ୍ ବୁଝିଛନ୍ତି । ମଣିଷ ସାଧନା ପଥରେ ଯାଇ ଯାହା ଆବିଷ୍କାର କରେ ତାହା ତା ପାଇଁ ନୂତନ, ଯଦି ଓ ସେ'ଟା ସବୁଠାରୁ ପୁରାତନ, ଯେହେତୁ ଭଗବାନ ଓ ଧର୍ମ ହେଉଛନ୍ତି ସନାତନ ।

•

ପଥରେ ଅଙ୍କା ଥିଲା ଏକ କଳା ମିଶ୍ରିତ ଫିକା ନାଲିର ରେଖା । ଗୋଟେ ଦୁଇଟି ତାରା ଏଠି ସେଠି ଦେଖା ଯାଉଥିଲେ । ଧ୍ରୁବ ତାରାକୁ ଚିହ୍ନି ପାରିନି । ଯଥେଷ୍ଟ ଉପରକୁ ଉଠି ଯାଇଥିଲା । ସେତେ ଦୂର ଉତ୍ତରକୁ ମୁଁ ଆଗେଇ ଆସିଛି । ଏହି ଜୀବନରେ

ଏ ନଦ୍ଧର ଏହି ଯୋଗ୍ୟତା ହାସଲର ସବୋଚ୍ଚ ସୀମା । ଚତୁର୍ଦ୍ଦିଗରେ ଏକ ଶୂନ୍ୟ ନିସ୍ତବ୍ଧତା—ମହାଶୂନ୍ୟ । ଗୋଟିଏ ନିଷ୍କ୍ରିୟତାର ଝଙ୍କାର ଅନୁଭବ କଲି । ପ୍ରଣବର ଧ୍ୱନି ଅସ୍ପଷ୍ଟ । ମାୟାର ଅବଲତା ମନ ବର୍ଣ୍ଣକୁ ବଦ୍ଧର କରୁଛି । ହଜ, ଅନେକଟା ଓ ହାସଲ ହୋଇଛି । ଲକ୍ଷ ପୂର୍ଣ୍ଣ ହୋଇଛି । ମନ ସ୍ଥିର ହେଲା ।

ମନେ ପଡ଼ିଲା ଦେଶ କଥା । ସଚ୍ଚିଦାନନ୍ଦଙ୍କୁ ପଚାରିଲି—ତୁମେ ତ ମୋ ପରେ ଆସିଥିଲ, କହିପାରିବ ଓଡ଼ିଶାରେ କେବେ କଥା କ'ଣ ହେଲା ?

ସେ କହିଲେ—କଂଗ୍ରେସର ଜାତୀୟ ନେତାଗଣ । ପଣ୍ଡିତ ନେହରୁଙ୍କ ନେତୃତ୍ୱ ନେଇଛନ୍ତି । ରାଜଧାନୀ ସହ ଗୃହ ଯାଗାରେ ଉପ୍ୟାନ୍ତ ହାଉଛି ଓ ନୂତନ ଗୃହ ଯାଗାରେ ଉପ୍ୟାନ୍ତ ପାଉଛି । ଅନ୍ୟ କଥା କହିପାରିବି ନାହିଁ ।

ଟେଟକ ଜାଣିବାକୁ ଗୃହଁଥିଲି ପାଇଲି । କଚ୍ଛପ କ୍ଷେତ୍ରରେ ଖାଇ ରାତି ଯାପନ କଲି । ସକାଳ ପାଇଁ କଚ୍ଛ ସୋଳ ବଢ଼ୁଗଲା । କେଜାଣି ଗୋଟିଏ ଗୋଟିଏ ଗୃହବାଜ ଗୃହବାଜ କଚ୍ଛପ ପେଟରେ ପାଇପାରେ ।

## ସରଯୋଙ୍ଗ ଛାଉଣି—୨ ଜୁଲାଇ, ରବିବାର

ସକାଳ ହେଲା । ଦୁଇ ତାରିଖ, ଜୁଲାଇ, ରବିବାର । କଚ୍ଛ ବଢ଼ୁଗ ସୋଳ ସହିତ ହେଲିକପ୍ଟର ଓଭରପାସ୍ ଦିଇ ବାହାରି ପଡ଼ିଲି । ଏମାନେ ମଧ୍ୟ ଚାଲିଥାନ୍ତି, ନିଜେ ନିଜର ବେଗ ଅନୁଯାୟୀ ।

ଘୋଡ଼ା ଚଢ଼ି ଏକ୍ସ୍‌କର୍‌ସନ୍ କରିବା ଜରୁରୀ ହେବ ନାହିଁ । ନିୟମ ହେଉଛି, ଯେଉଁମାନେ ଜୀବ-ଜନ୍ତୁ ସାଙ୍ଗରେ ଥିବେ ସେମାନେ ମଧ୍ୟ ଚେକିଙ୍ଗ କରି ପୁଣ୍ୟ ଅର୍ଜନ କରିବାର ସୁଯୋଗ ପାଇବେ ।

ଆମ ସାଙ୍ଗରେ ଗୋଟିଏ କୁକୁର ମଧ୍ୟ ଥାଏ । ସେଟା ଥିଲା କଚେରୀର । ନାମ ତାର ଥିଲା ଭେଟ୍ଟେ । ସେ ଚର୍ବିସ୍ତୁଙ୍ଗରୁ ଆସି ଥାଏ । ଆଗରେ ଚାଲି ବାଟ ଦେଖାଉ ଥାଏ ।

ସେଦିନଟା ଚମତ୍କାର ଦେଖା ଯାଏ । କିନ୍ତୁ ଦୃଶ୍ୟର ଚମତ୍କାରିତା ଓ ବିଭିନ୍ନ ପର୍ବତ ପାହାଡ଼ର ଅନ୍ତରାଳରେ ଦେଖିଲ ସବୁଠ ସୌନ୍ଦର୍ଯ୍ୟ ଥିବା ଦେହକୁ କାନ୍ତ ହୋଇଥିବା ମନର ପ୍ରଫୁଲ୍ଲତା ଆଣିଇ ଦେଇଥାଏ । ବେଗ ପେଡ଼ଲ ଥାଏ ଯେପରିଟା ଅନାୟାସରେ ହେଉଥିବ । ଆଗେଇବା କେବଳ ଲକ୍ଷ୍ୟ ଥାଏ, ସମୟର କ୍ରୋ ନ ଥାଏ ।

ବାହାରିବାର ଅଳ୍ପ ସମୟ ପରେ ମୁଁ ଏକଲା ପଡ଼ିଗଲି । ନଦୀ କଡ଼ରେ ଚାଲି ଥାଏ । କିନ୍ତୁ ରାସ୍ତାଟା ଜଣାପଡ଼ୁ ଯାଉଥିଲା । ମୋର ମନେ ହେଲା ମୁଁ ଏକ ଉଦ୍ଭଟ ବଡ଼ ଦଣ୍ଡରେ ଚାଲିଛି । ଡାହାଣ ପଟରେ ଏକ ଅସରନ୍ତି ଦେଉଳର ବେଢ଼ା ଓ ବାଁ ପଟେ ଭଲା ପଥରର ଅଟ୍ଟାଳିକା । ଦୁଇଟି ଅଟ୍ଟାଳିକା ମଝିରେ ଗୋଟିଏ ଗୋଟିଏ ଉପତ୍ୟକା ମୂଳ ସଡ଼କ କ-କ୍ରୁରେ ମିଶିଥାନ୍ତି । ତାସ୍ ପେଡ଼ଲ । ଅସଂଖ୍ୟ ମୋଟରଗାଡ଼ି ବା କେଉଁବାଟର ଚଳାଚଳ ନାହିଁ । ଦୃଶ୍ୟର ଚୂଡ଼ାନ୍ତ ନାହିଁ ।

ଏହାପରେ ଗୋଟିଏ ବିଶାଳ ପ୍ରସ୍ତର-ସୌଧ ମଝିରେ ଗୋଟିଏ କୋଠର ଦେଖିବାକୁ ପାଇଲି । ମନେ ହେଲା ଯେପରି

ସେଠାରେ ଜଣେ ଭେଡ଼ୁ ରଖିଛି ଓ ସେ ଉପରେ ତାର ନଜର
ପଡ଼ୁଛି । ମୋଟରଟି ଥାଏ ଲଟୁ ଗୃଲାଣ ମଗୃଣ ଫୁଟ ଉପରେ ।
ଶୁଣିଲି—ନାଷ୍ଟପ୍ କଣେ କଏ ଉଇଭୋଟୀର ମୂଳ ଚଣି ସେଠାରେ
ଥିବେ । କିନ୍ତୁ ଉପରକୁ ଯାଏ କିପରି ? ନବଷଣ ଭଳ ପରେ
ଦେଖିବାକୁ ପାଇଲି ଯେ ଯୋଡ଼ି ଯୋଡ଼ି ଚକା ଚକା ଚନ୍ଧା ଡନ୍ତୁ
ମୋଟର ପର୍ଯ୍ୟନ୍ତ ଯାଇଛି । ଚନ୍ଧାଗୁଡ଼ିକ ପଥର ଦେହରୁ ସାମାନ୍ୟ
ବୋଉ କର କରାଯାଇଛି । ଶୁଣିଲି—ସେ ସେମିତି ଉପରକୁ
ଯାଉଥିଲା କାହିଁକି ଚୀନାଙ୍କ ଭରଲରୁ ନାଷ୍ଟପ୍ ଚଣା ମାଇଆଛନ୍ତି ।
ସମାଜ ନେଷ୍ଟ୍ୟେକୋଣ୍ଟ୍ ନ ରଖ ଫଲ୍ଗୁତ ସଢ଼କ ଉପ୍ଟାର ଭାସନର
ଲଗାଇଆନ୍ତି । ଦିନ ଭାଲ ବଦଳିଲେ କଣ୍ଟା ଶଦ୍ୟାର ଜଙ୍କାର
ଭଣ୍ଡାରେ ସହାୟକ ହେବ ।

ଆନେଗଭ ଚୁଲିଲି । ଧିର ଦକୁର ପଦକ୍ଷେପ । ଦେହ ଯେପର ଓ
ଦୁର୍ବଳ ଓ ଅବଶ, ମନରେ ଯଥେଷ୍ଟ ଉତ୍ସାହ ଆସିଯାଇଥିଲା ।
କାରଣ, କୈଲାସର ଦକ୍ଷିଣରେ ମୁଁ ବୁଲିଲି, କୈଳାସ ମୋର
ଦକ୍ଷିଣରେ । ଡ଼ାହାଣ ପଟେ ପାହାଡ଼ ଦେହରୁ ପଟଣ ଆକାର
ନେଇ ଗଢ଼ି ଉଠିଛି ମନ୍ଦିର । ସେଠାରେ ଥାଏ ଗୋଟିଏ ଉପରେ
ଗୋଟିଏ ଦୁଆର ମୂର୍ତ୍ତି ଆ ସ୍ତୂପ ଦେଉଳକୁ ଯେପରି ନଦୀ ସବୁ
ଲାଗିଥାଏ । ଏପରି ତିନିଟି ସ୍ତୂପ ଦେଖିଲି । ଭିତରକୁ ଆଉ
ଦେଖାଯାଉ ନଥାଏ । ମାନେ ଅନୁମାନ ହିସାବରେ ଦେଖିଲେ ମୁଁ
ବୋଧ ହୁଏ ଏତେ ପାଖରେଥାଏ ଯେ ଚୂଳ ଦେଖାଯାଉ ନଥାଏ ।
ଦୁଇଟି ସ୍ତୂପର ମଝିରୁ ଥାଏ ପଞ୍ଚ-ଗାର ଟାଣିଲ ଭଳିଆ
ସମାନ ଓସାରର ପଥ । ତିନୋଟି ସ୍ତୂପ ଜଣାଇ ଦୁଇଟି ପଥ
ସମାନ୍ତରାଳ ଭାବରେ ଏ ମୁଣ୍ଡରୁ ସେ ମୁଣ୍ଡ ପର୍ଯ୍ୟନ୍ତ ଲମ୍ବି ଯାଇଥାନ୍ତି ।

ଲାଗୁଥାଏ ଯେପରି ଗୋଟିଏ ଶତ୍ରୁ ଯାଗାରେ ପଡ଼ିଥିଲୁ । ପ୍ରତ୍ୟେକ ପଥର, ଗୋଛ ଓ ଦିଗକୁ ନିରୀକ୍ଷଣ କରି ଚାଲୁଥାଏ । ଏଥି କ୍ରୁଡ୍‌କ ସାଇଣ୍ଟର କି ପାଦୁର ପ୍ରଦର୍ଶନୀ ହେବ କେଜାଣି । ରାତ୍ରର ରାତ୍ରରେ ଗମ୍ଭୀରତା ଥାଇ ପ୍ରଦର୍ଶନ କରିବା ଭଳିକରି ଚାଲୁଥାଏ । କ୍ରୁଡ୍‌କ ସାଇନ୍ସ ଭିତରେ ପଶି ଦୁଃସାହସିକ କାର୍ଯ୍ୟ କରିବା ପାଇଁ ମୋର ସାହସ ନଥାଏ । ସାହସହୀ ଦେହ ଓ ବୁଦ୍ଧି ଉପରେ ନିର୍ଭର କରେ ।

ସେଥି ଦୃଷ୍ଟା ପ୍ରାପ୍ତ ଅଭିଜ୍ଞ ଭଳି ଆସିଛୁ, ହଠାତ୍ କିଛି 'ଠକ୍' କରି ଶବ୍ଦଟା ଭଳି ଲାଗିବାରୁ ସେ ଦିଗକୁ, ମାନେ ଦକ୍ଷିଣ ପଟ ଦେଇ ପଡ଼କୁ, ଚାଲିଲି । ନଜର ପଡ଼ିବା ସାଙ୍ଗେ ସାଙ୍ଗେ ଚମକି ଉଠିଲି । ସ୍ଥିର ହୋଇ ଠିଆ ହେଲି । ନିଶ୍ୱାସ ପ୍ରଶ୍ୱାସ ସ୍ଥିର ।

ଦେଖିଲି ଯେ ପ୍ରଥମ ଓ ଦ୍ୱିତୀୟ ସ୍ତରର ଟେଙ୍ଗିରେ ଥିବା ପଥ ଉପରେ ମୋର ଶତ୍ରୁ ଦିଗକୁ ଚାଲିଆସୁଛନ୍ତି ମାଙ୍କଡ଼, ଆଗପଛ ହୋଇ । ନିଶ୍ଚୟ ଶୃଙ୍ଖଳିତ ହୋଇଥିବେ । ସେମିତି ଯାଙ୍କର ପଦଚାଳନାରେ ତାଳ ଅଛି । ଶିପ୍ରତା ନାହିଁ । ଅଛି ଦମ୍ଭ ସହିତ ଧୀରତା । ଅଛି ଚଳଚ ଦର୍ପ, ହାତୀ ଯେପରି ପାଦ ପକାଏ । ପଛ ପଛ ଟି ଯେ ଆଡ଼କୁ । ମୁହଁଗୁଡ଼ିକ ଆର ପଟେ ।

ଏକ—ଦୁଇ—ତିନି—ଚାରି, ଆଙ୍ଗୁଠିରେ ଗଣି ନେଲି ।

ଜଳାପାଣି ଘୁଡ଼ିବା ପରଠୁ ମାତ୍ର ଗୋଟାଏ ଗଛ ଦେଖିଛୁ । ମଣିଷ ଖାଇବାକୁ ନ ପାଇ ଗୋବୁ, ଚେଳି, ମେଣ୍ଢା ମାନେ ଅଧିକ ଅନୁପାତରେ କାଟି ଖାଉଛନ୍ତି । ସଂଖ୍ୟା କମି ଆସୁଛି । ଅଣ୍ଡା ଓ ଅଣ୍ଡଙ୍କରେ ମୁହଁ ଶୁଖିଯାଉଛି । ମାଙ୍କଡ଼ ବା ଖାଉଛନ୍ତି କ'ଣ ? ଖୁବ୍

ସେପରି କରୁ ନ ଥାନ୍ତେ । ଜାଣି ମଧ୍ୟ କହିପାରନ୍ତି, ନିଜର ଅହଂକାରର ପରିତୃପ୍ତି ସକାଶେ ।

ଯେଉଁଠାରେ ପଞ୍ଚଜ୍ଞାନେନ୍ଦ୍ରିୟର କାଇଦା ଦରକାର ହୁଏ, ଯାହାଙ୍କାରେ ଧରାଯିବାକୁ ପଡ଼େ କରୁଣା କୌଶଳ, ଉଦ୍ଦୀପନା ଓ ସାହସ ନେଉଛନ୍ତି, ଏପରି ଯାହାରେ କେତେକ ଅନୁଷ୍ଠାନ ବା ବ୍ୟକ୍ତି, କୁଡ଼ିଆ ଖଣ୍ଡେ ଘର, ବା ଗୋଟିଏ ଗୁମ୍ଫା ଭିତରେ. ଝଣ୍ଡିଏ ପୁସ୍ତକ ରଖିଥାନ୍ତି । ଯେଉଁମାନେ ଯାଆନ୍ତି ସେଠି ଅଗ୍ରପ କରି, ଦସ୍ତଖତ ଦେଇଆସନ୍ତି ।

ଅସଲ କଥା ହେଉଛି, ଏ ସବୁ ପଛରେ ଅଛି, ନିଜର ଅନୁଭୂତିଙ୍କୁ ଲିପିବଦ୍ଧ କରିବା ବା ସ୍ଥାୟୀ କରିବାର ଇଚ୍ଛା, ମଦ ଓ ଏ ପ୍ରକାର ଅନୁଭୂତି ଖାଇବା ପିଇବା ସଙ୍ଗେ ସମାନ । ସାଧାରଣ ଅନୁଭୂତିକୁ ଲିପିବଦ୍ଧ କରିବା ବଦଳରେ ଅସାଧାରଣ ଦୁଃସାହସିକ କର୍ମରେ ଲିପ୍ତ ହୋଇ, ଅନୁଭୂତିଙ୍କୁ ଲିପିବଦ୍ଧ କଲେ, ପିଠିରେ ହାତମାରି କହିବେ 'ସାବାସ୍' ।

ଆଧ୍ୟାତ୍ମିକ ଅନୁଭୂତି ଅସାଧାରଣ । ଆଧ୍ୟାତ୍ମିକ ସମ୍ପଦ ସବୁଠାରୁ ଶ୍ରେଷ୍ଠ ସମ୍ପଦ ଓ ଆଧ୍ୟାତ୍ମିକ ବୁଦ୍ଧି ପୂତ ହୋଇ କରିବା କାର୍ଯ୍ୟ ସତ୍କର୍ମ । ତାକୁ ଲିପିବଦ୍ଧ କରାଯାଏ, କାନ୍ଥରେ କାଢ଼ରେ ନୁହେଁ, ପଥର ଖୋଦେଇ ନୁହେଁ, ବହିରେ ଲେଖି ବା ଛପାଇ ନୁହେଁ—କାରଣ ଏ ସବୁ ଦିନେ ନା ଦିନେ କାଳଗର୍ଭରେ ଲୀନ ହୋଇଯିବ । ସେହି କର୍ମ ତଥା ଅନୁଭୂତି ଲିପିବଦ୍ଧ ହେବ ଚିତ୍ରଗୁପ୍ତ ପାଞ୍ଜିରେ—ଯାହାର ସ୍ଥିତି ସୃଷ୍ଟିର ଆରମ୍ଭରୁ ଶେଷ ପର୍ଯ୍ୟନ୍ତ ଓ ପ୍ରଳୟ ସମୟରେ ମଧ୍ୟ ଅକ୍ଷର ଭାବରେ ଥାଏ ।

ସେହି କାରଣରୁ ପୂଜା ପାଠ, ଧର୍ମ କର୍ମ ଓ ତୀର୍ଥ ଯାଗ ଇତ୍ୟାଦିରେ ସଂକଳ୍ପ କରିଥାନ୍ତି—ନାମ ଗୋତ୍ର ଇତ୍ୟାଦି ଉଚ୍ଚାରଣ କରି ସେପରିକ ସେ ପାଞ୍ଜିରେ ସେହି ଲଗ୍ନସୂଚି ତଳେ ସ୍ୱର୍ଣ୍ଣର ଗାର ଟଣାଯାଏ, ଅର୍ଥାତ୍ ଅଣ୍ଡରଲାଇନ୍ କରି ଦିଆଯାଏ । ପରକ୍ଷେପରେ ଯେତେବେଳେ ହିସାବ କିତାବ ହୁଏ, ଚିତ୍ରଗୁପ୍ତ ଜୀବନୀର ଟିପଣି ପେଶ କରେ । ଯମ ସେ ନେତ୍ରବ୍ୟ ପଢ଼ି ଚାନ୍ତି ଲେଭ୍ଟାଇନ ନେଲକୁ ଆମର ସପକ୍ଷରେ ଥିବା ଉଦ୍ଧୃତିଗୁଡ଼ିକ ତାର ଆଖି ଆଗରେ ପଡ଼େ ଓ ତାଦ୍ୱାରା ସେ ପ୍ରଭାବିତ ହୋଇଥାଏ ।

ଏତରବିଦ ଦେଖିବାକୁ ଗଲେ, ଆମେ ନିଜେ ଆମର ପାଞ୍ଜି, ଆମେ ନିଜେ ଆମର ଚିତ୍ରଗୁପ୍ତ ଆମେ ନିଜେ ଆମର ଯମ ।

ଏହି ଅଦୃଶ୍ୟ ଅଙ୍ଗୁଳିର ନିର୍ଦ୍ଦେଶରେ, ମୋର ଚିତ୍ରଗୁପ୍ତ ପାଞ୍ଜିରେ କୈଳାସ ଭ୍ରମଣ ଅଧ୍ୟାୟଟି ଥାକ ( flag ) ଦିଆ ହୋଇ ରହିଲା ।

ମୁଁ ଯେତେବେଳେ ଦେଖିଲି ଯେ ମୋର ବୁଦ୍ଧି ବିବେକ ଠିକ୍ ଅଛି, ଅନୁସନ୍ଧିତ୍ସୁ ହୋଇ ଉଠିଲି । ଏ ସବୁ କିପରି କଲି ? ହଠାତ୍ ମନେ ହେଲା ଟେଳା ଫିଙ୍ଗି ଦେଖେ । କିନ୍ତୁ ପର ପଲକରେ ଜ୍ଞାନ ଉଦୟ ହେଲା ଯେ ମୁଁ ଯେତିକି ଦୂର ଟେଳା ଫିଙ୍ଗି ପାରିବି ତାଠାରୁ ସେମାନେ ଅନ୍ୟୂନ ଚତୁର୍ଗୁଣ ଦୂରରେ ଅଛନ୍ତି । ଏହା କଳ୍ପିତ ତ୍ରିକୋଣମିତିର ଧାରଣା ଉପରେ ଭିତ୍ତି କରିଥିଲି । ଏଠାର ସବୁ ଯାଗାରେ ଦୂରତାର ତଳସୀମା ଥାଏ ଉପର ସୀମା ନଥାଏ । ଖୋଦିଲ କି ପରିଚିଲି, କି ସବୁର ମିଳିମିଶିଥିଆ ରଙ୍ଗଚଙ୍ଗର ଛାପାପାତ କେବେ ନ ଦେଖିବା କେବଳ ହଠାତ୍

କନ୍ଧମାରିବ ନାହିଁ । ଅନୁଭୂତ ବା ଯୋଗୀଙ୍କଙ୍କୁ ଧରି ମାତବ୍ବରର ଦରକାର ।

'ଦେଖେ, ମୋ ଟଙ୍କରେ, ମୁହଁ ବୁଲାଇଲେ ଦେଖିବାକୁ ପାଇବ' ଏ କଥା ଭୁବନ୍ତ କ ନାହିଁ ଯାଙ୍କେ ସାଙ୍ଗେ ମନରେ ଡ଼ର ପଶିଲା । ଯୋଗୀରେ ସୃଷ୍ଟ ଶସ୍ତ୍ର ବା ଅଣଶସ୍ତ୍ର କଥା ପଢ଼ିଥିଲା । ସେମାନେ ଯଦି ସେପରି କିଛି କହାଇଥାନ୍ତି ଓ ସେଥିରୁ ଯଦି କିଛି ବିକଟାଳ ରୂପ ଧରନ୍ତି, ଏ ଅବସ୍ଥାରେ ଜୁଟକି ମ୍ଭା ବନ୍ଦ ହୋଇଯିବ । ବିଶେଷ ସାହସିକତା ଦେଖାଇବା ମୂର୍ଖାମିରେ ପରିଣତ ହେବ ।

କଥାରେ ଅଛି—ସାପ ମାରିବ ପଦେ ବୁଦ୍ଧି ଶାପ ଥାଏ । ଲୋକଟା କହୁଇ ଯା ସମ୍ମୁଖରେ, ଶାପଦ୍ୱାରା ହାଣି ହୋଇ ସାପ ଆସେ ଓ ଗୋଡ଼ ପାଖରେ ଫଣା ଟେକ ଜଗିଥାଏ, କିନ୍ତୁ ମାରେନା । ଯେତେବେଳେ ଲୋକଟି କିଦ ଖେଳରେ ଗୋଡ଼କୁ ହଲାଏ, ସେ ହଲାଇବାଟାକୁ ଆକ୍ରମଣ ବୋଲି ଆଳକରି ସାପ ଆଘାତ କରେ । ଖଳ ଲୋକେ ଆଳ ଖୋଜୁଥାନ୍ତି, ଧର୍ମର ଢେଙ୍କି ଢାଲରେ ସେମାନେ ଅନ୍ୟାୟ ବା ଅଧର୍ମ କରିପାରିବେ ।

ସେଥିରୁ ଭାବିଲି—ସେମାନେ ଯାନ୍ତୁ ତାଙ୍କ ବାଟରେ ଓ ମୁଁ ଯାଏ ମୋ ବାଟରେ । କିନ୍ତୁ ସେମାନେ ସେଠାରେ ଥିବାଟା ରହସ୍ୟ ପୂର୍ଣ୍ଣ ଭାବିଲି । ସ୍ୱଭାବରେ ଧରିନେଲି ଯେ ସେମାନେ ଅନ୍ୟାନ ଅପଗାଇଲା ହୂରରେ ଥିବେ ଓ ଗୋରୁଠାରୁ ହାଣ ପର୍ଯ୍ୟନ୍ତ ଆହାରର ହୋଇଥିବେ । ହାଃରେ ଭଗବାନ ! ନିଶ୍ଚୟ ଶିବଙ୍କର ଗଣ ହୋଇଥିବେ । ଭାବି ନମସ୍କାର କରି ମୁଁ ମୋର ବାଟରେ ଚାଲିଲି ।

ସେହି କଥା ଘୁରି ଘୁରି ବାଟରେ, ବାଟରେ ଚାଲିଲି । ଗାଁ ରାସ୍ତାମାନଙ୍କର ଅର୍ଥ କ'ଣ ? ଗାଡ଼ିକ—ସେମାନଙ୍କର ପାଦକ୍ଷେପ କେବଳ ହସ୍ତପୁରର ଗଡ । ମାଙ୍କଡ଼ କେବଳ ବର୍ଣ୍ଣ, ଅର୍ଥାତ୍ ଗାଁର ବର୍ଣ୍ଣ ପରେ । କିନ୍ତୁ ଏହି ବିଲକ୍ଷଣକୁ ପ୍ରମାଣିତ କରିବାକୁ କିଛି ପ୍ରମାଣ ମିଳିଲା ନାହିଁ—ନା ପ୍ରତ୍ୟକ୍ଷ, ନା ଅନୁମାନ, ନା ଆପ୍ତବାକ୍ୟ । ଚେଷ୍ଟାରେ ଥାଏ । ପ୍ରତ୍ୟେକ ଗୋଡ଼, ପଥର, ଦଗ ଡଙ୍କ ଡଙ୍କ କରି ନିରୀକ୍ଷଣ କରୁଥାଏ ଓ ଆଶା କରୁଥାଏ ଯେ ଅକାଡ଼ିକର ପଦ ଭଳିଆ କିଛି ମିଳିଯିବ । ମୋର ଅନ୍ବେଷା ଏ ଭଳି—ଅନ୍ଧାର ଦଳର ଯାତ୍ରୀ । ସେଥିକୁ ସତର ଧାରା କେବଳ ଚାଲିଛି । ଦଶ ବାର ଦିନ କେବଳ ଖାଇବାରେ କଷ୍ଟ, ଏ ଭିତରେ ସୂକ୍ଷ୍ମ ଜ୍ୱର ଓ କାଶ୍ଟା ଆମାଶୟ ହେଉଛି । ଜୀବନସାରା ଭାବନା କରି ଅଳ ଲକ୍ଷ୍ୟସ୍ଥଳରେ ପହଞ୍ଚିଛୁ । ସ୍ଥାନଟି ମଧ୍ୟ ସେହିପରି । ଇଣ୍ଡୁକୋସିଆର ମଧ୍ୟ ଭାଗରେ, ପୃଥିବୀର ସର୍ବୋଚ୍ଚ ଖଣ୍ଡରେ, ଶ୍ରେଷ୍ଠ ତୀର୍ଥରେ, ଡ଼ାହାଣ ପଟକୁ ତୀର୍ଥରାଜ କୈଳାସ, ବାଁ ପଟକୁ କମ୍ବୁଜ କମାରର ଗୁରୁବୋଣିଆ ବଡ଼ ବଡ଼ ଭଳା ପଥର ଦୋଆ ହୋଇଥାନ୍ତି, ଗୋଟିଏ ଗୋଟିଏ ବ ସାତ ମହଲା କୋଠା ଭଳିଆ । ଏହି କୁହୁଡ଼ିର କୁହୁଳିକା ଭିତର ଦେଇ ଗଡ ଉପରକୁ ଲାଗୁଛି । ସାଙ୍ଗରେ ଅଛି କେବଳ ମୋର ଅସ୍ତିତ୍ୱ ବୋଧ—ମୁଁ । ଗୋଟିଏ ଘଟଣା ଘଟିଛି, ପରମାତ୍ମାର ନଜରକୁ ଆସିଛି, ଅନ୍ୟ ଘଟଣା ଅପେକ୍ଷାରେ ଚାଲିଛି ।

ଗୀତାରେ ଅଛି ମନ ଗୋଟିଏ ମାଙ୍କଡ଼ । ଭେଟେଟି ଘର ଏମା ମନ ଭିତରେ ଚଳଚଞ୍ଚଳ ଅଛି, ଅପୂର୍ଣ୍ଣ ରହିଛି । ଓଃ ବୁଝିଲି, ଏ ମାଙ୍କଡ଼ ରୂପକ ସ୍ୱଦଗୁଡ଼ିକୁ ଡାଳରେ ପକାଇ ଧାରରେ ଚଳାଇବାକୁ ହେବ । କିନ୍ତୁ ବର୍ତ୍ତମାନ ମନ ଭିତରେ ସବୁ ଲୀନ

ହୋଇ ଯାଉଛନ୍ତି । ମାତ୍ର ଗୋଟିଏ ଡାଳରୁ ଡାଳ ଡେଇଁବା ବାଦଦେଇ, ଗଛର ସବୋଉଚ୍ଚ ଡାଳରେ ଯାଇଁ ବସିଛି । ଦୂରକୁ ଚାହିଁବା ପାଇଁ ଜଗିଛି ।

ଏ ଅବସ୍ଥାରେ ଦେହର କଷ୍ଟ ଭୁଲି ଯାଉଛି, ଦେହର ଜ୍ଞାନ ତୁଟିଯାଉଛି ।

ଗୋଡ଼ ସବୁ ଦଶୁଥାଏ—ହଳଦୀ, ନାଲି, ଗୋଲାପ ଓ ମାଣିକ୍ୟ । ପଥର ସବୁ ଦିଶୁଥାଏ, ଏ ସବୁର ପେଡ଼ି । ମନେ ହେଲା ପଥର ସବୁ ସଚେତନ—ଅହଲ୍ୟା, ଉର୍ବଶୀ ଇତ୍ୟାଦିଙ୍କ ପରି । ବାଟ ଛାଡ଼ି ଯିବାକୁ ଜଗତ ମନେ ଚାଲି ନାହିଁ ।

ବାଟ ବଢ଼ୁଲେ, ନଦୀ ବଢ଼ିବ ବା ବଢ଼ରେ ଯୁଗ ଯୁଗ ଧରି ଅଟଳ୍ୟ ଯାତ୍ରୀଙ୍କର ପଦଚାଳନାରେ ଯେଉଁ ଯାଗାଟା ଅଖାଡ଼ୁଆ ଗୁଣ ହରାଇଛି । ହେ ମହାଜନେ ତୁମକୁ ମୋର ନମସ୍କାର ।

ଠାଏଁ ଠାଏଁ ଘାସରେ ଫୁଲ ଫୁଟି ଦୃଶ୍ୟର ଶୋଭାକୁ ବଢ଼ାଉଛନ୍ତି । ପାଣି ଧାରକୁ ଲାଗି ଏଠିସେଠି ଟଙ୍କଡ଼ାଏ ଖଣ୍ଡେ ବରଫ । ଗୋଟିଏ ଦୁଇଟି ଯାଗା ଅଛି, ଯେଉଁଠାରେ ପାଣି ଧାରର ଏ ପଟରୁ ସେ ପଟକୁ ବରଫ ପୋଲ ଓ ତଳେ ପାଣି ଚାଲୁଛି ।

ଘଣ୍ଟା ଅପେକ୍ଷାରେ ଚାଲୁଛି । ପାଠ ଚାଲୁଛି ଘଣ୍ଟା ଅପେକ୍ଷାରେ ରହିଲେ କିଛି ଘଟେ ନାହିଁ । ଏହି ସବୁ ଭାଆ ଭାବ ଭାବ ସେହି ଯାଗାକୁ ପୂର୍ବ ଅତିକ୍ରମ କରିସାରିଲା ପରେ ଡାହାଣ ପଟକୁ ଗୋଟିଏ ପାହାଡ଼ ନଜରରେ ପଡ଼ିଲା । ପାଦ ପାହାଡ-ମାଳର ଭେଳରୁ ସାମାନ୍ୟ ଛାଡ଼ୁଛି । କିଛି ଗୋଟାଏ ଗଠନ ଥିଲା ପରି ଜଣାଗଲା । ଦେଖାଗଲା ବୃଷଭର ପିଠି ପରି । କୌତୂହଳ

ହେବନି । ଗୃହ ଥାଏ । କଟପ ତାର ସଲଷରେ ଗୋଟିଏ ଛୋଟ ମୁଣ୍ଡିଆ ଦେଖିଲି, ସବୁଳ ବୃଷଭର କୁନ । ଧୂଇଟି ଦେଖା-ଯାଉଥାନ୍ତି ପଚ୍ଛେରୁ ଅବଶେଷ ବୃଷଭର ପିଠି ପର । କିଶୋରୁତ କୈଳାସର ଗଠନ ଏପରି ଯେ ଏ ପଟରୁ ସେ ପଟକୁ ଭଙ୍ଗୋଟି ସମାନ୍ତରାଳ ଧାରରେ ବରଫ ନ ଲଗି ଲିଙ୍ଗ ଉପରେ ଭଙ୍ଗୋଟି ବଭୂତ ଚାର ଭଳିଆ ଦେଖାଯାଉଛି । ମୁଁ ଗୁଣୁଥିଲି ସେଥିପାଇଁ ବୋଧହୁଏ ଲୋକେ ଟିକିଏ ଅଶ୍ରୁମୀ ହୋଇ ଭଗବାନ ବୋଲି ଧରି ନେଇଛନ୍ତି । ମାନିଲେ ଦେବତା ନ ହେଲେ ପଥର । ଏ ହେଲା ଗୋଟିଏ ଭୌଗଳିକ ଅଶ୍ରୁମୀ । ଏଟା ମଧ୍ୟ ଗୋଟିଏ ଭୌଗଳିକ ସାମଞ୍ଜସ୍ୟ ବୋଲି ଭାବୁଛି, କିନ୍ତୁ ସମସ୍ତ ଧରେ ନିକଟରେ ଦେଖିବାକୁ ପାଇଲି ବୃଷଭର ଲକ୍ଷଣ କୁନ ଓ ଦେହ ସହିତ ମୁଣ୍ଡର ପଛ ପଟ । କୌତୂହଳ ଆଶ୍ଚର୍ଯ୍ୟରେ ପରିଣତ ହେଲା । ଆଶ୍ଚର୍ଯ୍ୟ ବଢ଼ିଲା । ଏ ଗୋଟିଏ ଭୌଗଳିକ ସାମଞ୍ଜସ୍ୟ ନିଶ୍ଚୟ, କିନ୍ତୁ ତାର ନିର୍ଦ୍ଦେଶରେ, ଏ ସାଧାରଣ ଘଟଣା ବା ସାମ୍ୟ ମନ ଭରେ । କାଳର କାମ ନୁହେଁ । ଅନୁଭବ ସମ୍ଭବ ନେଲି । ଭାବିଲି—ଦେଖାଯାଉ ସଦ୍ଧାରଣାର ଦକ୍ଷତା କର୍ପୋରେତ ମୁଣ୍ଡ ଦେଖିଲେ, ମୁହଁ ଦେଖିଲେ । ଅନୁଭବ ବେଗକୁ ବଢ଼ାଇଲି । ମୁଣ୍ଡର ପାର୍ଶ୍ୱ ଓ ଶେଷରେ ମୁହଁ ମଧ୍ୟ ଦେଖିବାକୁ ପାଇଲି । ଠିଆ ହେଲି ।

ସେ ଗୋଟାଏ ଅଦ୍ଭୁତ ମୁହୂର୍ତ୍ତ । ଆନନ୍ଦରେ ବିଭୋର । ଅବିଭୂତ । କିଛି ଜାଣେନା । ଗଲି ଟକ୍ ଟକ୍ କାଉ ତଳକୁ ଗଡ଼ିଆସି ଯାଏ । ସ୍ତମ୍ଭୀଭୂତ ହେଲି ।

ଲିଙ୍ଗରାଜଙ୍କ ବାହନ ବୃଷଭଟିଏ ସେଠି ଖାଇ ନଗାଠେ ଗୋଡ଼ ଟେକି ଯୁଗ ଯୁଗ ଧରି ଶୋଇଲା ଭଳିଆ ନୁହେଁ । ମୁହଁରେ ଉଗ୍ରତା ସ୍ପଷ୍ଟ । ଦେହ ଅନୁପାତରେ ମୁଣ୍ଡ ଓ ମୁହଁ ଟିକିଏ ଛୋଟ ମନେ ହେଉଛି । କିନ୍ତୁ ସବୁଠାରୁ ଆଶ୍ଚର୍ଯ୍ୟର କଥା ହେଲା ତାର ଲାଞ୍ଜ । ଟିକ୍‌କଣ ଭଳିରେ ତଳକୁ ଗଡ଼ି ଲମ୍ବି ଆସିଛି । ଯାହି ଭିତରୁ ତଳ ପର୍ଯ୍ୟନ୍ତ ଯେ ଅଂଶ ଗୋଟିଏ ଧାରରେ ଲାଲ ଟିକ୍ ଟିକ୍। ଅନୁପାତ ଦେଖିଲେ ଲାଞ୍ଜଟା ଟିକିଏ ବେଶି ଲମ୍ବା । ଯାହାହେଉ ମାଟିଆ ଲାଞ୍ଜ ଅଂଶଟା ଲାଲ ହେଲା କିପରି ? ମୋର ଭିତରେ ଥିବା ବିଜ୍ଞାନର ଜ୍ଞାନ ନଥାଇ ବୈଜ୍ଞାନିକର ଗର୍ବ ବା ସଂସ୍କାର ବା ଅବିଶ୍ୱାସ ଯାଉ ନଥାଏ । ପାଖରେ ଟୋକିଏ ଛୋଟ ଗୋଡ଼ି ପଡ଼ିଥିଲା, ଦେଖିବାକୁ ଲାଲ । ଆଖି ବୁଲାଇ ଦେଖିଲି ମନ୍ଦିର ଭିତରେ ଧାନ ଗୋଡ଼ି ଥିଲାପରି କାଁ ଭାଁ ଏଠି ସେଠି ଗୋଟିଏ ଦିଟା ପଡ଼ିଥାଏ । ରଙ୍ଗ ମିଶୁଛି । ମୋ ଭିତରର ନକଲି ବୈଜ୍ଞାନିକଟି, ଭାବିଲା—ଏ ଗୋଟିଏ ରାସାୟନିକ ପ୍ରକ୍ରିୟା । ମୁଁ ଭାବିଲି—ଏଥିରେ ଟିକେ ମାତ୍ର ସନ୍ଦେହ ନାହିଁ । ନ ହେଲେ ନାଲି ଗୁଣ ଆସିଲା କେଉଁଠୁ । ଅନ୍ତର ଭିତରୁ ପ୍ରଶ୍ନ ଉଠିଲା—କିନ୍ତୁ ଏ ରାସାୟନିକ ପ୍ରକ୍ରିୟାଟି କେବଳ ଲାଞ୍ଜ ଉପରେ କାହିଁକି ହେଲା, କାହିଁ ମାଇଲ ମାଇଲ ଧରି କୌଣସି ଜାଗାରେ ତ ଏପରି ରଙ୍ଗ ନାହିଁ । ତୁମ ଲାଞ୍ଜଟା ଯେ ଲାଲ ହୋଇଛି ସେ କ'ଣ ରାସାୟନିକ ପ୍ରକ୍ରିୟା ? —ନା ନୁହେଁ ?' ନତମସ୍ତକ ହୋଇ ସେ ବୃଷଭକୁ ଗୋଟିଏ ନମସ୍କାର କରି ଚାଲିଲି । 'ଏ ଯଥେଷ୍ଟ ହୋଇଛି, ଭଗବାନଙ୍କୁ ଆଉ ପରୀକ୍ଷା କରିବ ନାହିଁ' ଭାବି ଚାଲିଲି ।

ବାଟରେ ଦେଖିଲି, ସମ୍ପ୍ରଦାୟ ବାବାଜୀ, ଜୟନ୍ତି ଭାଇ ଓ ଦାପଙ୍କ ଭାଇ ବିଶ୍ରାମ କରୁଛନ୍ତି । ବାବାଜୀ ପାଖରେ ଦୁକ୍ତା ଥାଏ । ଟିକିଏ ମାଗିନେଲି । ପଥରଟିରେ ଛେଚି ଗୁଆ ଖଣ୍ଡେ କରି ଦୁକ୍ତା ସହିତ ଖୈବାଇଲି । ମନରେ ଟିକିଏ ଆନନ୍ଦ ଆସିଥିଲା ନା; ତାକୁ ବଢ଼ାଇବାକୁ ଖୁଣ୍ଟିଥିଲି । ଦୁଇ ତିନିଥର ବାନ୍ତି ହୋଇଗଲା । ଖାଲି କଞ୍ଚା ପାଣି । ସେମାନେ କାରଣ ପଚାରିଲେ । କହିଲି—ଦୁକ୍ତା ହେତୁ ବାନ୍ତି ହେଲା, ଅନ୍ୟ କିଛି କାରଣ (ରୋଗ) ନାହିଁ । ମୁଁ ମଧ୍ୟ ସେହି ଜାଗାରେ ଟିକିଏ ବିଶ୍ରାମ ନେଲି ।

ଯାତ୍ରା ଆରମ୍ଭରୁ ଶେଷ ପର୍ଯ୍ୟନ୍ତ, ମୁଁ ସାଧାରଣତଃ ବିଶ୍ରାମ କରେ ନା । ଶକ୍ତି ଅନୁସାରେ ଚାଲୁଥାଏ । ଦରକାରେ ବିଶ୍ରାମ କରେ । ସେ ସମୟରେ ମୋର ମନଟା ଥିଲା ଗୋଟେ ପାଣି ଚୋପା ସିଲେଟ । ମନରେ କୌଣସି ପ୍ରକାର ଭାର ନଥିଲା । ପୂର୍ବ ଓ ପର କଥା କିଛି ଭାବୁ ନଥିଲି । ଆଜି ମୁଁ ଓ ମୋର ନିଶ୍ୱାସ ।

ସେଠୁ ଯାଗାଠାରୁ କିଛି ସାମାନ୍ୟ ଉତରାଣିଆ ପଡ଼ୁଥିଲା । ନଦୀର ପ୍ରବାହ ଖରତର ଥିଲା । କଡ଼କୁ ଲାଗି ଓ ଜଳଧାରା ମଝିରୁ ମୁଣ୍ଡ ଟେକିଥିବା ପଥରକୁ ଲାଗି ଯେଉଁଠି ସେଠି ଦେଖାଏ ଦେଖାଏ ବରଫ । ଗୁଡ଼ାଏ ଯାଗାରେ ଉପରେ ବରଫର ପୋଲ ଓ ତା'ତଳେ ପାଉଁ ମଝିରେ ପାଣି ଚାଲୁଥାଏ । ଶୀତ କାଳର ବରଫ ସେ ସମୟ ପର୍ଯ୍ୟନ୍ତ ତରଳି ନଥାଏ ।

**ଦିରାଫୁକ୍ ୧୬୪୦୦ ଫୁଟ ଚାଲିଛି—୧୫୬+୮=୧୬୪**
**ପରିକ୍ରମା—୩+୮=୧୧ ମାଇଲ**

ଅଳ୍ପ ସମୟ ପରେ ପଡ଼ିଲା ଦିରାଫୁକ୍ । ସାମାନ୍ୟ ଟିକିଏ ସମତଳ ଜାଗା । ଆଗୁଏ ପର୍ଯ୍ୟନ୍ତ ପଥର ଦେଖାଇ ସେ ଜାଗାଟାକୁ

ଦୁଇ ତିନି ଭାଗ କରାଯାଇଥାଏ । ସେଠାରେ ତମ୍ବୁ ପାରି ରହିଲୁ । ଆମର ଉତ୍ତର-ପୂର୍ବ ଦିଗକୁ ଆଉ ଗୋଟିଏ ପାହାଡ଼ ଉପରେ ଗୋଟିଏ ଗୋମ୍ଫା ଥାଏ । ତାର ଶାନ୍ତିର ଦଗଟର କୈଳାସ । ପର୍ବତରେ ମୁଣ୍ଡିଆ ଦେହଟର ଗୋଟିଏ ଉଣାମ୍ବିକ ବକ୍ରରେଖା ଟାଣି ରହିଥିବା ଗିର୍ଜାଙ୍କଟ ଭିତର ତେଲ ଅତି ନିକଟରେ (ମନେହେଲା) ଦେଖି ଆସୁଥିଲି ସେହି ଅନେକ ଦିନର ଆକାଂକ୍ଷିତ ଅଭିଳଷିତ ଶିଭୁ କୈଳାସ । ଠାଏଁ ଠାଏଁ ପଥରର ଦାଗ ଦିଶୁଥାଏ ଓ କଠା ଭଳି ବିଲମ୍ବିତ ବରଫ ଖଣ୍ଡଗୁଡ଼ିକର ତଳ ନାଶିରୁ ଟପ-ଟପ-ଟପ ପାଣି ପଡ଼ିବା ଦେଖିଲି; ସତେକି ସେପଟୁ ଶିବଙ୍କ ଜଟାରୁ ଗଙ୍ଗା ବହୁଛନ୍ତି ।

ସେଠାରେ ସମୟର ଜ୍ଞାନ ଯେପରି ନିରର୍ଥକ, ଦୂରତାର ମାପ ମଧ୍ୟ ସେପରି ଭ୍ରମାତ୍ମକ । କିନ୍ତୁ ପ୍ରାଚୁର୍ଯ୍ୟ ଭିତରେ ସାମାନ୍ୟ ପରିମାଣ ଯେପରି ନଗଣ୍ୟ ସେହିପରି ଏକ ବିରାଟ ବିଶାଳତା ଭିତରେ ସାମାନ୍ୟ ଭୁଲ ସ୍ୱଭାବ ବିଶେଷ ତାରତମ୍ୟ ଆଣିଦିଏ ନାହିଁ ।

ଦୂରତା ଅମାପ ହେଲେ ତାର ମାପ ସମୟଦ୍ୱାରା କହିବା ସୁବିଧା ଜନକ ଓ ଆକାର ବୃହତ୍ ହେଲେ ତାର ଆକୃତି କହିବା ବଦଳୁଥିବା କୋଣକୁ ବା ଦିଗକୁ ନେଇ ଧରାଯାଇ ପାରିବ ।

ମୋର ଅନୁମାନ ହେଲା ଯେ ପାହାଡ଼ଟି ଠିକଏ ଚେପ୍ଟା, ତାର ଭୂମିଟା ସାଧାରଣ ଲିଙ୍ଗପରି ଗୋଲ ନୁହେଁ, ଅଣ୍ଡାକୃତି ଧରିଅଛି ।

ମୋର ମନେ ହେଲ କୈଲାସ ପେଜର ଏକ ବୃହତ୍ ତ୍ରିଶୂଳାକାର ପଥରରେ ଗଢ଼ା ଓ ତାର ତିନି ମୁନକୁ ଯୋଡ଼ାଇ ରଖିଛି ଏକ ବର୍ତ୍ତୁଳ ଧ୍ୱଂସଶକ୍ତି ଲିଙ୍ଗ ଆକାର ଦେଇ । ଲିଙ୍ଗର ଗୋଲକାଂଶ ପୃଥ୍ୱୀ ଭଳିଆଣୁଛି ସୃଷ୍ଟିର ଅସଂଖ୍ୟ ଗ୍ରହ ନକ୍ଷତ୍ରକୁ ବିକିରଣ ହେଉଥିବା ମୌଳିକ ସ୍ପନ୍ଦନ ଓ ମୌଳିକ ରଙ୍ଗୀନ ରଶ୍ମି ଓ ତାକୁ କେନ୍ଦ୍ରୀଭୂତ, ଘନୀଭୂତ ଓ ବିଦ୍ୟୁତ୍ କରଏ ତାର କେନ୍ଦ୍ରସ୍ଥିତ ଥିବା ମଧ୍ୟ ଶୂଳଟିର ମୁନ ଉପରେ । ତା ସେଠାରେ ତ୍ରିଧାର ଶକ୍ତିର ତରଙ୍ଗ ହୋଇ ଖେଳାନ୍ତି ତ୍ରିଶୂଳଦ୍ୱାରା ଭୂପୃଷ୍ଠ ଉପରେ ବିକିରଣ ହୁଅନ୍ତି—ପ୍ରଥମେ ମଧ୍ୟ ଶୂଳରେ ଚୈତନ୍ୟ ହୋଇ, ଓ ଅନ୍ୟ ଦୁଇଟିରୁ ମୌଳିକ ପୁଂ-ମୂଳ ଓ ସ୍ତ୍ରୀ ମୂଳ ଶକ୍ତିର ସୂକ୍ଷ୍ମ ରୂପି ଏହି ସୃଷ୍ଟିକୁ ବଞ୍ଚାଇ ରଖନ୍ତି । ପୃଥିବୀ ପୃଷ୍ଠରେ ସୂର୍ଯ୍ୟ ରଶ୍ମି ସେମାନଙ୍କୁ ଦେହର ଉପାଦାନ ଯୋଗାଇ ଥାଏ । ସେହି ମୌଳିକ ରଶ୍ମିର କେତେକାଂଶକୁ ସ୍ୱଧର୍ମରେ ତଳକୁ ଟାଣି ନେଉଛି ତ୍ରିଶୂଳର ଭୂଗର୍ଭ ଭେଦୀ ଦଣ୍ଡଟା ଓ ବୈଜ୍ଞାନିକ ଧର୍ମରେ ରୂପାନ୍ତର ହେଉଛନ୍ତି ସବୁ ମୌଳିକ ବସ୍ତୁ । ଅନୁମାନ ହେଲ ଯେ ତ୍ରିଶୂଳ ସହ କୈଳାସ ମେରୁର ଭୂଗର୍ଭ ଭେଦ ଦଣ୍ଡଟା ଏ ପର୍ଯ୍ୟନ୍ତ ଅନାବିଷ୍କୃତ ଅନ୍ତ ଜଡ଼ ମାନର ଭାରିଅଣୁ ଧାତୁଦ୍ୱାରା ଗଠିତ—ଯେପରି ଲୁହା ପଥରରେ ଲୁହା ଥାଏ । କିନ୍ତୁ ଚିହ୍ନ ତାର ଝଟକୁଥିବା ଧନ ମାଲ ଓ ଇତ୍ୟାଦି ସବୁକ । ସେ ହେଲ ପୃଥିବୀ ଧ୍ୱଂସକାରୀ ମଳ ବଳ ବିଷ । ଯଦି ଭୂପୃଷ୍ଠକୁ ମିଳୁଥିବା ୟୁରେନିଅମରୁ ଗୋଟେ ଧାଇଟି ସ୍ତ୍ରୀ ମୂଳ ଉପଅଣୁ ଛୁଟି ହୋଇ ଭୂପୃଷ୍ଠର ଏକ ବିଶାଳ କ୍ଷେତ୍ରକୁ ଧ୍ୱଂସ କରିପାରେ, ତାହାହେଲେ ଏହି ଧାତୁର ଗୋଟିଏ ଧାଇଟି ଗୁରୁଭାରୀ ଅଣୁରୁ ଛୁଟି ହୋଇ ଆସିବା ସ୍ତ୍ରୀ-ମୂଳ ଉପଅଣୁ ଟିକେ ସାରା ପୃଥିବୀକୁ ଅନାୟାସରେ ଧ୍ୱଂସ କରି ଦେଇପାରେ ।

ଯେହେତୁ ପଣ୍ଡିତ ସୁବର୍ଣ୍ଣ ଧାତୁଦ୍ୱାରା ଗଠିତ, ସେହେତୁ ତାର ଓଜନ ବେଶି ଓ ସେ ଖଣ୍ଡରର ମାଧ୍ୟାକର୍ଷଣ ଶକ୍ତି ଅଧିକରେ ଟାଣେ । ସେହେତୁ ପୃଥିବୀ ତାର ଅକ୍ଷ ଉପରେ ଦୋଳାୟମାନ ଓ ଭୂଚୁମ୍ବକର ଉତ୍ତର-ଦକ୍ଷିଣ ପ୍ରାକୃତିକ ଉତ୍ତର-ଦକ୍ଷିଣଠାରୁ ଭିନ୍ନ ଓ ସ୍ଥାନାନୁସାରେ ଭିନ୍ନ ହୁଏରେ । ତାହାହେଲେ ସୃଷ୍ଟିର ନିୟମକ କଏ—ଧର୍ମର ବିଜ୍ଞାନ ନା ବିଜ୍ଞାନର ଧର୍ମ ?

ସେଠାରେ ମହର୍ଷି ଦୟାନନ୍ଦଜୀଙ୍କୁ ମାଙ୍କଡ଼ ଦେଖିବା କଥା କହିଲ । ଅନ୍ୟମାନେ କେହିକେହିଲେ ଦେଖି ନଥିଲେ । ଖମାଜୀ ମୋତେ ବଲ ବଲ କରି ଚାହିଁଲେ । ଗୃହର-ବାହର-ମାନଙ୍କ ଭିତରେ ପ୍ରାୟ ଚହଲ ପଡ଼ିଗଲା । ସେମାନଙ୍କ ଭିତରୁ ଜଣେ ଦୁଇ ଜଣ ଜିଜ୍ଞାସା ସହିତ ପଚାରିଲେ—କ'ଣ ମାଙ୍କଡ଼ ଦେଖିଥିଲ ? ଖମାଜୀ କେବେହେଲେ ଦେଖି ନାହାନ୍ତି । ବୃଷଭଟା ସମସ୍ତେ ଦେଖିଛନ୍ତି । ସେଟା ଏ ତୀର୍ଥର ଗୋଟିଏ ଅଙ୍ଗ ।

ଦୟାନନ୍ଦଜୀ ପଚାରିଲେ—ସେମ ନଙ୍କର ମୁହଁ ଦେଖିଛ କି ?

କହିଲି—ନାହିଁ, ପଛ କରିଥିଲେ । ପାଟି କରିବାକୁ ଡର ଲାଗିଲା ।

ସେ—'ଲାଙ୍ଗୁଡ଼ ଉପରକୁ ଥିଲା ନା ତଳକୁ ଥିଲା ?'

ମୁଁ—'ଠିକ୍ ମାଙ୍କଡ଼ଙ୍କ ଭଳି । ମୁଁ କଣ ମାଙ୍କଡ଼ ଦେଖିନାହିଁ ?

ସେ ବୋଧହୁଏ ମୁଁ କେତେଦୂର ପ୍ରକୃତିସ୍ଥ ଅଛି ବା ସେ ସମୟରେ ଥିଲି ସେ କଥା ପରୀକ୍ଷା କରୁଥିଲେ ବୋଲି ସେ ସମୟରେ

ଶୁଣିଥିଲି । କିନ୍ତୁ ବର୍ତ୍ତମାନ ଶୁଣୁଛି ଯେ ମୁଁ ମୃତ ଦେଖିଛି କି ନାହିଁ ସେ କଥା ସେ ପରୀକ୍ଷା କରୁଥିଲେ । କାରଣ ଅନ୍ଧ ବିଶ୍ୱାସ ଅଛି ଯେ ମୃତର ମୁହଁ ଦେଖିଲେ ଛ ମାସ ଭିତରେ ମରିଯାନ୍ତି ।

ପଚାରିଲି—ସେମାନେ ଖାଆନ୍ତି କ'ଣ ?

ସେ କହିଲେ ହସି—ବରଫରେ ଯେଉଁଠି ଅନେକ ଦିନର ପୁରୁଣା ବରଫ ଜମିଥାଏ, ଉପରଟା ନେଳି ଦେଖା ଯାଉଥାଏ, ସେଠି ଖୋଳିଲେ ଏକ ପ୍ରକାର ଖାଦ୍ୟ ମିଳେ । ତାକୁ ଖାଇଲେ ଅନେକ ଦିନ ଚଳିଯାଏ । ମୁନି-ଋଷିମାନେ ତାକୁ ଖାଇ ରହନ୍ତି ।

ମୋର ବିଶ୍ୱାସ ହେଲାନି । ଅବିଶ୍ୱାସ ମଧ୍ୟ କଲିନି ।

କାଗାଁଟାର ଉଚ୍ଚତା ସୋଳହଜାର ଶହେ ଫୁଟ । ଏତେ ପୂର୍ବରୁ ଏତେ ଉଚ୍ଚରେ ଅବସ୍ଥାନ କରି ନଥିଲି । ସେ ଥଣ୍ଡା, ସେ ଶୀତ ଉପଭୋଗ କରିବା କଥା । ଥୁଲମା କିନ୍ତୁ ଖୁବ୍ କାମରେ ଆସିଥିଲା । ଗଡ଼୍‌ଲୁ, ତେଲ ରଙ୍ଗ ବଙ୍ଗ ସମସ୍ତଙ୍କ, ଖଟ୍ ଖାଟ୍, ଖଟ୍ ଖାଟ୍, ଶୁଭିଲା । ବରଫ ପଡ଼ିବା ପ୍ରଥମ ଅନୁଭୂତି ବେଶ୍ ଖୁସି ହେଲି । ପ୍ରାୟ ଦୁଇ ମିନିଟ ଭିତରେ ପ୍ରାୟ ଇଞ୍ଚେ ବହଳର କୁଆପଥର ଭଳି, ଛୋଟ ଛୋଟ ଖଣ୍ଡ ଶୁଖିଲା ବରଫ ପଡ଼ିଥିଲା । ତା' ପରେ ପରେ ଅସରା ବର୍ଷା ପଡ଼ି ସବୁ ଧୋଇଦେଲା । ଶୁଖିଲା ବରଫ ବୋଧହୁଏ ଏତେ ଭଲ ଲାଗେ । କିନ୍ତୁ ବରଫ ପଡ଼େ ଶିମିଳି ତୁଳା ଭଳିଆ ଓ ଭାସି ଭାସି ଆସେ ।

ସୁପ୍ରଭାତ ! ଜୁଲାଇ ତିନି ତାରିଖ, ସୋମବାର । ସୋମବାର ଦିନଟି ଶିବଙ୍କର ବାର । ଲୋକେ ବ୍ରତ ପାଳନ୍ତି । ସୂର୍ଯ୍ୟ ଉଦୟ ପୂର୍ବରୁ ଗାଧୋଇ ମନ୍ଦିର ଦର୍ଶନ କରି ଯାଆନ୍ତି—ରକ୍‌ସାରେ ବସି

ବା ଗାଡ଼ିରେ ବସି, ବା କୋଳାହଳ ଗସ୍ତ ଦେଇ ଗ୍ରୁଲି ଗ୍ରୁଲି ।
ଯୋଗା ଚଢି ଘୁଡ଼, ଦୁଇ ଗୃହ ଅଣୋର ବେଲଟେଣି ଫୁଲ କଣି,
ଘଣ୍ଟା ଘଡ ଝଙ୍କାର ହୋଇ ଆଗେଇଯାନ୍ତି ମନ୍ଦର ଦର୍ଶନ ପାଇଁ ।
ଅର୍ଥାତ୍ ଘଣ୍ଟା ବା ପୂଜାର ସାଙ୍ଗରେ, 'ସେମାନେ ଏଥି ଗାଇଁବ ଅଚନ୍ତି
ତାଙ୍କୁ କନ୍ତୁ ଦେବା' ବୋଲି ଭାବ, ଠାକୁରଙ୍କଠିକୁ ଯାଆନ୍ତି ।
ଘଣ୍ଟାର ଦେଶତାଳ ପାଦ ଉଚାରଣ ପୂର୍ବକ, ମୁଣ୍ଡିଆ ମାରନ୍ତି ।
ଯୋକେ ନଡଆ ଭାଙ୍ଗନ୍ତି । ତୃପ୍ତି ସହକାରେ ଫେର ଆସନ୍ତି
ଜୋନହେତୁ ସେ ପୂଜା କରିଚନ୍ତି । ଏ ବଚନ ସୃଷ୍ଟିର ପଛରେ ଥିବା
ଅଦୃଶ୍ୟ ଶକ୍ତିଠାକୁ କନ୍ତୁ ସମର୍ପ ପାଇଁ ମାନିଚନ୍ତି । ସେହେତୁ ବା
ମାନବାଞ୍ଛା କର୍ତ୍ତବ୍ୟ ବୋଲି ଭାବବା ହେତୁ ଦେହ୍ୱ ସନ୍ତୋଷ ।
କୌଣସି ପ୍ରକାର ଝାଣ୍ଟିଆ ରୋଗ ବା ଡାକ୍ତ କୁଣ୍ଡିଆ ଭଳିଆ
ବିରକ୍ତ କର ରୋଗ ଥିଲେ, ମନରେ କୌଣସି ଅଶାନ୍ତି ଥିଲେ,
ଗୋଟିଏ ସାମାନ୍ୟ ଅଧିକା କନ୍ତୁ ପୂଜା କରନ୍ତି । ସୋମବାରେ ମାଛ
ମାଂସ ଇତ୍ୟାଦ ଛାଡ଼ନ୍ତି । ଏ ହେଲା ଗୋଟିଏ ବ୍ରତ । ଏହି ସାମନ୍ୟ
ଝିକକରେ ସୋମବାରର ପ୍ରଭାବ ହେତୁ, ଫଳ ପାଇଁ, ବ୍ରତ
ପାଳିବା ଲୋକର ବିଶ୍ୱାସ ଦୃଢ଼ ହୋଇଛି ।

କନ୍ତୁ, ଏ ନେ ତୀର୍ଥ ସ୍ଥଳ କୈଳାସ । ଶିବଙ୍କର ବାସସ୍ଥାନ ।
ନୀରବ ଳ, ନିଃଶବ୍ଦ, ଜଡ଼ତା ଭିତର ଦେଇ ଚଞ୍ଚଳ ସଜୀବ ହୋଇ
ଉଠିଛି ଚୈତନ୍ୟର ଅନନ୍ତ ସଂଖ୍ୟକ ଚଷୁ, ହସ୍ତ, କର୍ଣ୍ଣ
ଇତ୍ୟାଦି । ପ୍ରକୃତର ବିଶାଳତା ସହିତ ନିର୍ଜନ କୂଟସ୍ଥ ପାହାଡ଼
ପାଖରେ ଆକାଶ ଭେଦ ଦଣ୍ଡାୟମାନ କୈଳାସ, ମହାଶୂନ୍ୟକୁ
ଅଙ୍ଗୁଳି ନିର୍ଦ୍ଦେଶ କରୁଛି—ଯେଉଁ ମହାଶୂନ୍ୟରୁ ଶବ୍ଦ ବ୍ରହ୍ମର
ଝଙ୍କାରରେ ଏ ସଚରାଚରର ସୃଷ୍ଟି ଓ ଶିବ ଯାହାର ମୂର୍ତ୍ତିମନ୍ତ

କଳ୍ପନା । ବରଫ ବନର ଅବିଚ୍ଛିନ୍ନ ଭ୍ରମଣ, ଦୁଇ ସପ୍ତାହ ଯୋଗୀ ଦେହଶକ୍ତ ମାଇଲର ବିପଦସଙ୍କୁଳ ପାର୍ବତ୍ୟ ପଥ ପଦଯାତ୍ରା, ଦଶ ପନ୍ଦର ଦିନ ଧରି ନ ଖାଇ ନ ପିଇ ଅସାଧାରଣ ଦୈହିକ କଷ୍ଟ ଭୋଗ କରି, 'ଦେହଟା ମୋର ନୁହେଁ' କହି ମନକୁ ବୁଝାଇ ତାକୁ ଚପି ଇଚ୍ଛା ଶକ୍ତି ଉପରେ ନିର୍ଭର କରି ଚାଲିବା ପରେ ଆଜି ସେହି ମୋକ୍ଷଦ୍ୱାର ଆସିଛି । ଶିବଙ୍କର ଶ୍ରେଷ୍ଠ ତୀର୍ଥର ସର୍ବୋଚ୍ଚ ଯାଗ ଓ ସବୁଠାରୁ ଭକ୍ତିକର ଦର୍ଶନସ୍ଥଳରେ ପହଞ୍ଚିଛି ।

ଏହି ଚିନ୍ତା ମୋର ମନରେ ନୂତନ ପ୍ରେରଣା ଆଣିଦେଲା । ରାତି ମୋଟେ ପାଞ୍ଚ ମାଇଲ । ସେଠାରେ ରାତ୍ରି ହେଲେ ମଧ୍ୟ, ମଲେ ସ୍ୱର୍ଗ ପ୍ରାପ୍ତି, ବଞ୍ଚିଲେ ଲାଭ ହାସଲ, ଯାତ୍ରା ସୁନିଶ୍ଚିତ । ମୋ ହାତର କଥା ନୁହେଁ । ପାଞ୍ଚ ମାଇଲ ମାନେ ଦଶ ଘଣ୍ଟା, ବେଳ ବୁଡ଼ିଯିବାକୁ କେଉଁଠି ନେଉଛି ଯିବାକୁ । ଦେଖାଯାଉ । ହୋଟେଲ ଯାତ୍ରୀଦଳଙ୍କି ପୂଜାପୂଜି ଆରମ୍ଭ କଲେ, ପ୍ରାପ୍ତ ଦକ୍ଷିଣକୁ ମୁହଁ କରି, ଦୁଇ ମୁଣ୍ଡିଆ ଫାଙ୍କ ଦେଇ ଦେଖା ଯାଉଥିବା କୈଳାସକୁ ଶିବ ଲିଙ୍ଗ ହେଲା ମାନି ପୂଜା କଲେ । ଦତ୍ତାତ୍ରେୟାନନ୍ଦଜୀ କହିଲେ ଯେ ସେ ଏହି ଫାଙ୍କ ଦେଇ ଯିବେ କୈଳାସ ସ୍ପର୍ଶ କରିବାକୁ । ସେ ଗଲେ । ସଚ୍ଚିଦାନନ୍ଦ ସ୍ୱାମୀଙ୍କର ସନ୍ନ୍ୟାସୀ ଅଭିମାନ ଉପରେ ଆଞ୍ଚ ଆସିଲା । ସେ ମଧ୍ୟ ଦତ୍ତାତ୍ରେୟାନନ୍ଦଜୀଙ୍କର ପଦାନୁସରଣ କଲେ । ଶୁଣିଲି ଚଢ଼ିବା ଓହ୍ଲାଇବା ମାତ୍ର ଗୋଟିଏ ଫର୍ଲଙ୍ଗ ହେବ । ଶୁଣିବାକୁ ପାଇଲି ଯେ ଏହାପରେ ଗୋଟିଏ ଗ୍ଲେସିୟର ଖରସ୍ରୋତସ୍ୱିନୀ ନଦୀ ମୂଳ କୈଳାସକୁ ଘେରି ରହିଛି, ଶକ୍ତ ଭଳିଆ । ତାକୁ ଅତିକ୍ରମ କରିବା ଦୁଃସାଧ୍ୟ । ମୋର ଗୋଡ଼ ହାତ ଥିଙ୍କି ପଡ଼ୁଥାଏ । ଯାହାକିଛି ଶକ୍ତି ସଞ୍ଚିତ ଥିଲା ତାକୁ ଏହି ଶେଷ ପର୍ଯ୍ୟାୟରେ ଲଗାଇବା ପାଇଁ

ମନସ୍ଥ କଲି । ଏହି ଦୁଃସାହସିକ କାର୍ଯ୍ୟରେ ସେ ଟିକକ ପଦ ହରାଇ ବସେ, ମୂଳ ଲକ୍ଷ୍ୟରୁ ଛିଟିଯିବାକୁ ପଡ଼ିପାରେ ।

ସେମାନେ ପୂଜା କରିବାକୁ ଉଦ୍ୟତ ହେଉଛନ୍ତି, କଟଖଣ୍ଡା ମୋହନ ଡାକ କହିଲା—'ଏଇ ଦେଖ, ଏ ଦୁଇ ମୁଣ୍ଡିଆକୁ ଟାଙ୍ଗିଲେ ତାର ବଳଖରେ ଯେଉଁ ତିନୋଟି ପାହାଡ଼ ଅଛି, ସେ ହେଉଛନ୍ତି ରାମ, ଲକ୍ଷ୍ମଣ ସୀତା । ଭାବିଲି—ଏ ତିନିଜଣ ଫେର ଏଠାକୁ କପରି ଆସିଲେ ?

ସେ କହି ଗଲା—ଏ ଭିତର ଦେଇ ଗୌରୀ କୁଣ୍ଡକୁ ଗୋଟିଏ ବାଟ ଅଛି । ମାନେ କମ୍ ବାଟରେ ସିଧାସଳଖ ରାସ୍ତାଟାଏ । ଯେତେବେଳେ ଜଣେ ଲୋକ ଏହି ସାଧାରଣ ରାସ୍ତାରେ ଏଟୋଇଣ୍ଟ ଥର ପରିକ୍ରମା କରିବ, ସେତେବେଳେ ତାକୁ ଅଧିକାର ମିଳବ ରାମ, ଲକ୍ଷ୍ମଣ, ସୀତା ପାହାଡ଼ ଦେଇ-ଯିବାକୁ । ତୁମେ ଆଗେ ବାହାର ପଡ଼ ।'

ଭାବିଲି—ତାହାହେଲେ ତୀର୍ଥସ୍ଥାନରେ ମଧ୍ୟ ଉତ୍ତୀର୍ଣ୍ଣ ହେବା ପାଇଁ ଶ୍ରେଣୀ ବିଭାଗ ଅଛି ।

ମୁଁ ଭାବିଥିଲି ଯେ ସେମାନଙ୍କର ପୂଜା ସରିଲେ କିଛି ପ୍ରସାଦ ବାଣ୍ଟରଣ ହେବ । ସେ ଟିକକ ପେଟକୁ ଗଲେ କିଛି ଶକ୍ତି ସଂଗ୍ରହ ହେବ । କିନ୍ତୁ ଅନ୍ୟର ହାତରୁ ଖାଦ୍ୟ ନେବାର ଆଶାର ଦୁର୍ବଳତା ପ୍ରକାଶ ନ କରିବାକୁ ଇଚ୍ଛା କରି ମୁଁ କୈଳାସ ପତିଙ୍କ ପାଖରେ ମନ, ପ୍ରାଣ, ଦେହ ଲଜ୍ଜ ଅବଶ୍ୟତ ସବୁ କିଛି ସମର୍ପଣ କରି, କାଳୀ ନାମ ଜପି ବାହାରି ପଡ଼ିଲି ।

## ବଗ୍ରଫୁକ୍ ଛାଡ଼ିଲ—ଜୁଲାଇ.୩ ସୋମବାର

ଅଣ୍ଡା ସଲଙ୍ଗି ଧୀର ପଦକ୍ଷେପ ନେଲା । ମନ ନିଶ୍ଚଳ-ଶାନ୍ତ । ନିଃଶ୍ୱାସ ପ୍ରଶ୍ୱାସ ସମତାଳରେ । ନିଶ୍ୱାସରେ ନାଦ ପ୍ରଶ୍ୱାସରେ ଅନୁରୂପ ନାଦ । ଏ ହେଲା ସହଜ ପ୍ରାଣାୟାମ ପଦ୍ଧତି ଦେହର ଭିତର କମ୍ପନ ଅବସାନ ଘଟେ, ମନ ନିଶ୍ଚଳ ରହେ । ସଙ୍ଗୀତ ସ୍ୱରକୁ ସମତାଳରେ ସ୍ପନ୍ଦିତ କରି ଦେହକୁ କମ୍ପିବା ଏକାଗ୍ରତା ପାଇଁ ଏ ହେଉଛି ଏକ ଉପାୟ ।

ମନ ଭିତରେ ଦୂର ପାହାଡ଼ର ଆଉପଟରୁ ଶୁଣି ପାରୁଥିଲି ବଂଶୀର ତାନ ସହିତ ଡମ୍ବରୁର ଶବ୍ଦ ତରଙ୍ଗ । କିନ୍ତୁ ଟିକଏ ଟିକଏ ପରେ ଦେହ ଭିତରେ ସାଲୁଦଏ ଚଡ଼କ ଓ ସେ ନିକଟାଗର ଘୋର ଘଡଘଡ଼ି ଝଡ଼ ରାତ୍ରର ପରିସ୍ଥିତିକୁ ଟାଣି ଆଣୁଥିଲା । ଅଗତ୍ୟା ନିଜକୁ ଫେରି ଭୁଲି ଯିବାକୁ ଚେଷ୍ଟା କରୁଥିଲି । ସେହି ଦେହର ଯନ୍ତ୍ରଣାକୁ ମନରୁ ଦୂରେଇ ନେଇ ଯିବାର ମାଦକତାରେ ମନ ନିବେଶ କରିବାକୁ ବୃତ୍ତଁଥାଏ—ବଂଶୀର ତାନ ଡମ୍ବରୁର ତରଙ୍ଗ ।

ଝଂ-ଝଂ-ଝାଇଁ । ହଠାତ୍ ଚମକି ପଡ଼ିଲି । 'କିଏ ଜଣେ ଝାଞ୍ଜିଟିଏ ଆଣି କାନ ପାଖରେ ମାଉଦେଲା—ଝାଇଁ । ହୋସ ଆସିଲା । ଦେଖିଲି, ଆଖି ଆଗରେ ଚନ୍ଦ୍ରଧରର ନିର୍ଜୀବ କଡ଼ାରୁ ଭିତରେ ଗୋଟିଏ ଭ'ଣ ଚଞ୍ଚଳ ହୋଇ ଉଠିଛି । ଲମ୍ଫ ଭଲି । ଦେହର ପୃଷ୍ଠ ଖଣ୍ଡେ ଆଗକୁ, ମୁହଁଟିଏ ଦୁଇ ଭାଗ ଦାନ୍ତ ଦେଖାଇ ହସୁଛି । ନିରୀକ୍ଷଣ କଲି । ଗୋଟିଏ ପଥରକୁ ଆଡ଼ୁଖା କରି ଚର୍ମର ଘଣ୍ଟି ସାହାଯ୍ୟରେ ଜଣେ ଶ୍ରେଷ୍ଠ ଟବ୍‌ଲିସ୍ଟ ସାଥିରେ ଅଣିଥିବା

ଘସି ଦେଇ ଚାଲ୍ କାଳ . ଖାଇବା ପ୍ରସ୍ତୁତ କରୁଛୁ, ତାର ଯାହା ପର୍ବ୍ବରୁ । ନଈଟାକୁ ଯିବାକୁ ଡାକିଲ । ନଈଟାକୁ ଯିବାକୁ ଭୟ ଲାଗିଲ । ଭଟାଟାକୁ ନାଆଁ ଦେଇଲ ହଳଅ ମୁଁ ଡାକିଲି—'କାଠ କୁଆଡେ ?' ମୋର ବାଁ ପଟେ ନଈ ଧାର କରି ଯିବାକୁ ଦାବିଲ । କଚକ୍ଷମା ହେଲ କଥା ଭଲଥିଲ । ନଈ ଉତରେ ଠିଆ ହୋଇ ଯୋଜନା କାଢ଼ିଲ । ଯୋଜନା ରାସ୍ତାର କଲ । ନଈ ପାର ହେବା ପାଇଁ ଏ ଚେଷ୍ଟା । ସେ ଯାଗାଟା ପ୍ରାୟ ଦୁଇଶହ ଫୁଟ ଖଣ୍ଡ ସମତଳଆ । ନଈଟା ସେଇଠୁ ଅପେକ୍ଷାକୃତ ଶାନ୍ତ । ପାଣିଟା ଖେଳେଇ ହୋଇ ଯାଇଥାଏ । ପାର ହେବା ପାଇଁ ଚେଷ୍ଟା କଲି । ନ ପାରି ବାହୁଡ଼ି ଆସିଲି । ଠିକ୍ ବାଟ ଧରି ନାହିଁ । ଭଲରୂପେ ନିରୀକ୍ଷଣ କଲି—ଯେଉଁ ଜାଗାରେ କିଛି ସ୍ରୋତ ଥାଏ ତା ପାର ହେବା ପାଇଁ ବାଟ ପାଏ । ବାଟ ବାରି ପାରିଲିନି । ପଛ ଦଳଟା ଆସିବା ପର୍ଯ୍ୟନ୍ତ ଅପେକ୍ଷାରେ ରହିଲି । ସନ୍ତର୍କତା ଅବଲମ୍ବନ ପୂର୍ବକ ଓ ଟଙ୍କାର ଅପବ୍ୟୟ ନ କରିବା ପାଇଁ ସେ ଉଦ୍ୟମ ପାଟକୁ ଯାଇ-ନାହିଁ । ବସି ରହିଲି । ପୁଣି ଦଳଟା ପେଟଭରେ ଆସନ୍ତି, ଢେରି ହୋଇ ଯାଇଥିଲ । ସେମାନଙ୍କ ସାଙ୍ଗରେ ପାର ହେଲି ।

ନଈ ପାର ହେଲ ପରେ ପ୍ରାୟ ଦୁଇ ଶହ ଫୁଟର ଖଣ୍ଡ ଭଙ୍ଗାର ଉଠାଣି ପଡ଼ିଲ । ମାନେ କିଛି ବାଟ ଆଗେଇଲେ କିଛିଟା ଉଠାଣି । ଜମୁନ୍ତି ଭଳି ଝଡ଼ ଝାଡ଼ କରି ରହି ପାଞ୍ଚ ପାହୁଣ୍ଡ ଉଠିପାନ୍ତି ଓ ଠିଆ ହୋଇ ଧଇଁସଇଁ ହୋଇ ନିଶ୍ୱାସ ମାରନ୍ତି । ମୁଁ ସେତେବେଳକୁ ତାଙ୍କ ପାଖରେ ପହଞ୍ଚିଯାଏ । ସେଇ ଭାବଟା ସେ ପୁନରାବୃତ୍ତି କରନ୍ତି । ମୁଁ ଧିର ପଦକ୍ଷେପରେ ଥାଏ । ଉଠାଣି ଯାଗାରେ 'T' ବା 'L' ଆକାରରେ ପାଦ ପକାଉଥାଏ । ସେପରି

ଢେଠଟା ଉଠିଲା ପରେ ମୃତ୍ୟୁ ପାଇଲାଏ ଖଣ୍ଡେ ବେଢ଼ ରାସ୍ତା ଚଢ଼ିଲା । ଦୁଇ ଜଣ ମିଶି ତାକୁ ପାରିଲୁ ଓ ଦେଖିଲୁ ଗୋଟିଏ ପାହାଡ଼ ଆକାରର ବୃହତ୍ ପ୍ରସ୍ତର ଶ୍ରେଣୀର କୁଢ଼ର ପାଦଦେଶରେ ।

ସେହି ପଥର କୁଢ଼ର ପାଦ ପାହାଡ଼ରୁ ଚାଲିବାର ପଥ ଅସ୍ପଷ୍ଟ ଭାବରେ ବା ଅପେକ୍ଷା ସ୍ପଷ୍ଟ ଭାବରେ ଦେଖାଯାଉଥିଲା । ପଥ ପାଖର ଯାଗା ଓ ପଥର ଶ୍ରେଣୀଗୁଡ଼ିକ ଅଖାଡ଼ୁଆ ଓ ଦୁର୍ଗମ । କିନ୍ତୁ ରାସ୍ତା ଦେହର ପଥରଗୁଡ଼ିକ କଣ୍ଟା ଘଷି ଚିହ୍ନାଇ ଯାଇଥିଲା ଓ ଗୋଟିଏ ପଥର ତା'ପର ପଥର ସହିତ ଯୋଡ଼ି ହୋଇ ପାହାଚ କାଟିଥିଲା । ପିଢ଼ାର ବାଟକୁ ଠକୁରେଇ, ଚିକ୍କଣି, ସମତଳିଆ ବା ନୁଆଁଣିଆ ପଥର ଉପରେ ପାଦ ଦେଇ ଚାଲିବାକୁ ପଡ଼ିଲା । ଏ ହେଲା କୁଢ଼-ପାଦ (Scree) ଉପରେ 'ମହାଜନୋ ଯେନ ଗତଃସ ପନ୍ଥା ।'

ସେ ଦିନ ସମସ୍ତଙ୍କର ଚାଲିବା ଓ ଅବସ୍ଥା ଦେଖିବା କଥା । ଏକ ପ୍ରକାର ଶିକ୍ଷଣୀୟ ବିଷୟ । ଏହି ହକାରେ ବା ବାର ଶହ ଫୁଟର ଚଟାଣି ସ୍ମରଣୀୟ ହୋଇ ରହିଲା । ଭୁଲି ହେଉନି ।

ଜୟନ୍ତ ଭାଇ ତାଙ୍କ କୌଶଳର ପୁନରାବୃତ୍ତି କଲେ । ଧାଇଁ ଧାଇଁ ଉଠି ଧଇଁସଇଁ ହୋଇ ବିଶ୍ରାମ କଲେ, ଫେରି ଧାଇଁଲେ । ମୋତେ ଆଗୁଆ ପଥର ଉପରେ ଥରେ ପାଦ ଦେଲେ ତିନି ଥର ଅଣ ନିଶ୍ୱାସିଆ ପ୍ରଶ୍ୱାସ ଛାଡ଼ିବାକୁ ପଡ଼େ । ମୋର ପକେଟରେ ଖଣ୍ଡେ ଖାତା ଓ ନକଲ ଉତ୍ତରବା ପେନ୍‌ସିଲ ଥିଲା । ଏମନ୍ତ ଅବସ୍ଥା ମୋ ଜୀବନରେ କେବେ ଘଟି ନଥିଲା ଓ ଦଣ୍ଡିମ୍ବ ଜୀବନ ପାଇଁ ମଧ୍ୟ ଅସାଧାରଣ, ତାକୁ ଓ ସେ ସମୟରେ ମୋର ମାନସିକ ଭାବ ଧାରାକୁ ଟିପିବା ପାଇଁ ଖାତା କାଢ଼ି ଟିପିବାକୁ ବସିଲି ।

ଲେଖି ପାରିଲନି । ଚେଷ୍ଟା କରି ଲେଖିଲ ଖାଲି—'ମୃତ୍ୟୁର୍ ଯନ୍ତ୍ରଣା; ମୃତ୍ୟୁର ଯନ୍ତ୍ରଣା ।' ଭାବ ଆସିଲା ନାହିଁ କି ଭାଷା ପାଇଲା ନାହିଁ । ମନ ଅଟକି ରହିଲା । ମନଟାକୁ ଦେହ ଜ୍ଞାନରୁ ଟାଣି ନିଶ୍ୱାସ ପ୍ରଶ୍ୱାସ ଉପରେ କାବୁ କରିବାକୁ ଆପ୍ରାଣ ଚେଷ୍ଟା କରୁଥାଏ । ନିଃଶ୍ୱାସକୁ ତାଳରେ ରଖି, ଲୟ ରଖିବାକୁ ଚେଷ୍ଟା କରୁଥାଏ । ଆଉ ହେଲା ନାହିଁ । ଅନା ନିଃଶ୍ୱାସିଆ ହୋଇ ପବନ ଢୋକୁଥାଏ । ଅନୁଭବ କଲେ ହୃତ୍‌ପିଣ୍ଡ ଭିତରେ ପାଣି ଟୋପାଟିଏ ଅଟକି ଯାଇଛି; ତାହାର ପାନ୍ଥ ନାହିଁ । ଭାବିଲେ—ଏ ଅବସ୍ଥାରେ ପ୍ରାଣ କାହିଁକି ଯାଉନାହିଁ କି ? ପ୍ରାଣଟାକୁ ଧାରଣ କରିବାକୁ ଦେହରେ ଶକ୍ତି ନଥିଲେ ମଧ୍ୟ, ପ୍ରାଣ ଯାଉନାହିଁ କି ? ଅନୁଭବ କଲେ ଏକ ଅଦୃଶ୍ୟ ଶକ୍ତି ଦେହକୁ ଓ ପ୍ରାଣକୁ ଜୋର କରି ଧରି ରଖିଛି । ବୁଝିଲେ ଆୟୁଷମାନେ କ୍ଷୀଣ । ପାହୁଣ୍ଡେ ପାଦ ପକାଇ ପଥର ଉପରେ ବସି ଗୁରୁ ପାଞ୍ଚଟି ନିଃଶ୍ୱାସ ଛାଡ଼ି, ଉଠି ଫେର ପାହୁଣ୍ଡେ ପାଦ ପକାଉଛି । ଅଥବା ବସି, ଲମ୍ବା ପଥରଟିଏ ମିଳିଲେ କିଛି ସମୟ ଛଡ଼୍ ହୋଇ ଟେକାଇଡ଼ି, ନିଃଶ୍ୱାସ ପ୍ରଶ୍ୱାସ ଟିକିଏ ସ୍ଥିର ହେଲେ ଠିଆ ହୋଇ ଆଉ ଗୋଟିଏ ପାହୁଣ୍ଡ ପକାଉଛି । ଘୋର ପାରବା ଚଣର ଦମ୍ଭ ଭାଙ୍ଗି ଯାଇଛି, ଅଛି କେବଳ ସାମାନ୍ୟ ଟିକିଏ ଅସ୍ତିତ୍ୱ ବୋଧ—'ମୁଁ ।' ଦୁର୍ଗା', ଶିବ, କାଳୀ ଇତ୍ୟାଦି ନାମ ଓ ସେ ନାମର ପ୍ରଭାବ ଭୁଲିଯାଇଛି । ଯନ୍ତ୍ରଣା ଓ ଆବେଗରେ ଖାଲି ଡାକୁଛି 'ମା-ଓଁ-ମା, ମା ।' ସବୁଦିନ ପ୍ଲାବିତ ବଢ଼ିରେ ନାକେ ଏତେ ପାଣିରେ ସୁଅର ବଦରେଣ ଢଗରେ ଚାଲିଛି ।

ଏପରି ସମୟରେ ମୋତେ ଟିପି ଆଗେଇଗଲେ ଶେର୍ଜା ହେଉଛି । କହୁଛି ଭାଇ ମୋଠୁ ଟିକିଏ ଆଗରେ ଥିଲେ ।

ସେମାନଙ୍କ ସାଙ୍ଗରେ ଥିଲ କଚଟମ୍ପା । ସେମାନେ ଅନେକ ସ୍ୱାସିଆ ପଦାର୍ଥ ହେଉଥାନ୍ତି ଚାଲୁଥାନ୍ତି । କଟେମ୍ପା କହିଲ—ଆସି ଗଲେଣି ଆଉ ଅଳ୍ପ ବାଟ ଅଛି । କହିଲି—"ଟେମ୍ପାଜୀ ବଡ଼ କଷ୍ଟ ହେଉଛି, ଟିକିଏ ସାଙ୍ଗରେ ରୁହ ।" ଉତ୍ତର ମିଳିଲ ନାହିଁ । ସେଟେଜୀ ଟିକିଏ ଉପୁରେ ଭଏେଗ ଚାହିଁଲେ । ଉଟେଇଜୀ ଟିକିଏ ହସି ଚାହିଁଲେ । ମୁଁ ସେମାନଙ୍କର ପଛରେ ଚାଲିଲି ।

ପରେ ପରେ ରୋଡ଼କୁ ମାଡି ଲାଗିଲ । ନିଶ୍ୱାସ ପ୍ରଶ୍ୱାସ ସହଜ ହେଲ । ଅଙ୍କା ବଙ୍କା ଓ ମୋଡ଼ ହୋଇ ରାସ୍ତା ଯାଇଥାଏ । ଚାଲି ପାରିଲି । ସେମାନେ ଅଧିକ ଆଗେଇଲେ । ଜଧୂନ୍ତ୍ର ଭାଇଙ୍କୁ ମୋ ସାଙ୍ଗରେ ରହିବାକୁ ପଡ଼ୁଥିଲ ବୋଲି ଲଜ୍ଜା କରୁଥିଲେ ବୋଧହୁଏ—ଦୌଡ଼ିଗଲେ ।।

ଭଗତ୍ରଜୀଙ୍କର ଟିକିଏ ଅଜ୍‌ମା ରୋଗ ଥିଲ । ଚାଲି ଚାଲି ଭଲ ସମୟରେ କଷ୍ଟ ହେଉଥିଲ । କିନ୍ତୁ ସେଦିନ ତାଙ୍କର କଷ୍ଟ ହୋଇ-ନ ଥିଲ । ସେ ମୋତେ ପରେ କହୁଥିଲେ ଯେ ତାହା ତାଙ୍କର ଗୁରୁ କୃପାରୁ ସମ୍ଭବ ହୋଇଥିଲ ।

ଦଶ ପନର ମିନିଟ ପରେ ଆସି ପହଞ୍ଚିଲି ଗୋଟିଏ ପାହାଡ଼ ଶୃଙ୍ଗ ଉପରେ । ନିଶ୍ୱାସ ଫେରି ପାଇଲି । ଗୋଡ଼ ଝିଟିଲ । ଦେହ ଅବଶ ଓ ମୁଣ୍ଡ ଗରମ । ମନ ନିସ୍ତେଜ । ଦେହ ଓ ମନର ସ୍ନାୟୁ ସଭଲ ଷଡ଼ ବଷଭ । ଯାହାର ସର୍ବୋଚ୍ଚ ଜାଗା । ପ୍ରାୟ ଅଠର ହଜାର ଛଅ ଶହ ଫୁଟ ହେବ । ବହିରେ ପଢ଼ିଥିଲି ଯେ ଏଠାରେ ଉତ୍ତାପ ଶୂନ୍ୟ ଡ଼ିଗ୍ରୀ । ସେଥିପାଇଁ ଏ ଜାଗାକୁ ଆମେ ଝୁର୍‌ବ୍‌ ଭୟୁ

କରୁଥିଲି । ପବନ୍ତ୍ର ଯାଉଥିବାରୁ ଅସ୍ୱସ୍ତି ବୋଧ ହେଲା । ଶୁଣିଲି ସେ ଯାଗାଟା ଗୌରୀକୁଣ୍ଡ । କୁଣ୍ଡଟି ଏଥର ଛିକଏ ତଳକୁ ।

କରମ୍ପା ଓ ସେର୍‌ପା ସେଠାରେ ଟିକଏ ଅଟକିଲେ । କଟ-ଖମ୍ପା ଲୋକମାନଙ୍କୁ ସେ ଯାଗାର ମାହାତ୍ମ୍ୟ ବା ଇତିହାସ ବୁଝାଉ ଥିଲେ ବୋଧହୁଏ । ମୋତେ ଆଗେଇଯିବାକୁ କହିଲେ । ଗୃଲିଲି ! ଦେଖୁ ପାହାଡ଼ ଶ୍ଳୀପର ଶେଷରେ ଚଉଳ ପ୍ରସ୍ତର ଫଥର ଖଣ୍ଡ । ଚାଟ ନ ପାଇ ପଥରକୁ ଧରି ଠିଆ ହୋଇଲି—ନିଶ୍ବାସ ଧରି । ପଲଥିଲି ପିଠା ସଳଖ ଗୌରୀକୁଣ୍ଡ ଦେଖିବାରେ ।

## ଗୌରୀକୁଣ୍ଡ—୧୮,୪୦୦ ଫୁଟ

ଗୌରୀକୁଣ୍ଡରେ ହୋଇ ନିଶ୍ବାସ ମାରିଲି । ଏ ନିଶ୍ବାସ ବାହ୍ୟ ନିଶ୍ବାସ ନୁହେଁ । ମନର ନିଶ୍ବାସ । କହିଛିଟା ପାରିଛି । ସେ ଧନ ପ୍ରାପ୍ତ ହେଲ ପାଇଲି ସ୍ମୃତି ହେଉଛି, କେବଳ ପ୍ରସ୍ତୁ ଦୁଇଟା । ତତ୍ତ୍ୱବୋଧାନନ୍ଦଜୀ ଅଗରୁ ଦେଖି ସାରିଥିଲେ । ଗାଧୋଇ-ସାରି ପୂଜାପୂଜ କରୁଥାନ୍ତି । ସେ ଧ୍ୟାନ ଅବସ୍ଥାକୁ ଲକ୍ଷ କରି ମୋର ଗାଧୋଇବାର ଇଚ୍ଛା ନଥିଲା । ତା ସାଙ୍ଗକୁ ଗୌରୀ କୁଣ୍ଡର ଅବସ୍ଥା ଦେଖି ।

ପଚାଶ ଷାଠିଏ ଫୁଟର ବ୍ୟାସର ଗୋଲ ଖଣ୍ଡେ । ପାଣି ଧାରକୁ ଲାଗି ଗୋଟିଏ ବରଫର ଚଟାଣ ଅଛି । ପାଣି ଭିତରେ ବରଫର ଖଣ୍ଡ, ରଙ୍ଗ ସବୁଜରଙ୍ଗର ସବୁଜ ଖଣ୍ଡ ଭଳି ଭାସୁଛି । ରଙ୍ଗଟା ଯେପରି ଚୂନ ମିଶା ପାଣି । ମାନେ ଜଳପଟା ଶୂନ ଡ଼ିଗ୍ରି । ଆମ

ଚଳକ୍ତ ଅଜ ଦୁଇଟା ଗୋଟ ଗୋଟ ଖାଲ । ସେବ ବୋଡ଼ଏ ଫୁଟ
ଲମ୍ବର ଓ ପାଞ୍ଚ ଛ ଫୁଟ ଗଭୀର । ଏ ଉନୋଟି ମଝିରେ ଦୁଇଟି



[ ଗୌରୀକୁଣ୍ଡ ]

ବୁଡ଼ । ସମ୍ଭବତଃ ହେଲ ଗୋମୁଖକୁଣ୍ଡ ଓ ଏ ସ୍ଥାନ ଗୋଟିଏ ବାରମଜା ଧୂଡ଼ିଆ ବା ଓଲଟା ଦେଙ୍ଗଲ (*Cone*) ଭିତରେ, ଫଟ ଓ ଅଙ୍କାଡ଼ୁଆ ଶିଳାଖଣ୍ଡରେ ।

ତତ୍ତ୍ୱବିଦ୍ୟାନନ୍ଦଜୀ ମୋତେ ବୁଡ଼ ପକାଇବାକୁ କହିଲେ । ଅବସ୍ଥା ଅତି ଖରାପ । ଠିଆଲ ମନା କଲି ।

କହିଲେ – ଏତେ ଦୂର ଆସିଛ, ଥରେ ହେଲେ ବୁଡ଼ ପକାଅ, ନ ହେଲେ ଜୀବନରେ ଗୋଟେ ଦୁଃଖ ରହିଯିବ । ଡରିବାର କିଛି ନାହିଁ ।

ତାହାର ଜଳ ଲଗାପଟା—ଟହାଟହ । ଭିତରେ ଝରଣା ଚେଢ଼ ମିଶିଥିଲା । ଅଦୃଶ୍ୟ ତଳ ଓ ଅଙ୍କାଡ଼ୁଆ ପଥରର ଖିଆଲ ରଖି, ହାତରେ ପଥରକୁ ଧରି, ଜଙ୍ଘ ଏତେ ପାଣିରେ ଚେଷ୍ଟାକରି ଗୋଟେ ବୁଡ଼ ପକାଇ ଆସିଲି । ଦେହଟା ବାଲୁଆ ପଡ଼ିଗଲା । ଜୀବନରେ ଏହାଠାରୁ କମ୍ ଥଣ୍ଡା ପାଣିରେ ଅଧିକ କଷ୍ଟରେ ଗାଧୋଇଥିଲି । ଦେହଟା ଯେ ଏତେ ଦୂର ଥଣ୍ଡା ସହିପାରିବ ମୁଁ କଳ୍ପନା କରି ନଥିଲି । ଆଶ୍ଚର୍ଯ୍ୟ ଲାଗିଲା । ସାଙ୍ଗେ ସାଙ୍ଗେ ପୋଛାଇହେଲି କମ୍ବଳ ଖଣ୍ଡ ଓ ଦେହଟାକୁ ଭଲରୂପେ ପୋଛି ନେଲି । ସେପରି ଥଣ୍ଡା ମାଗାରେ ନିଖୁଣ ଶୁଙ୍ଖିଳ ରହିବାକୁ ହେବ । ମୁଁ ଆସିଲା ପୂର୍ବରୁ ସ୍ୱାମୀଜୀ ଷୋହଳଥର ବୁଡ଼ ପକାଇଥିଲେ ।

ତଇଧେଯ୍ୟ ପିନ୍ଧିସାରିବାକ୍ଷଣି ତତ୍ତ୍ୱବିଦ୍ୟାନନ୍ଦଜୀ କହିଲେ– ଚଣ୍ଡୀ-ପାଠଟିର ମୁଁ ଟିକିଏ ଶୁଣିବି । ଭାବିଲି—ଏ ସନ୍ୟାସୀର କାହିଁକି ଚଣ୍ଡୀ ପାଠ ପାଇଁ ଶ୍ରଦ୍ଧା ?

କହିଲି—ଚଣ୍ଡିପାଠ କରିବାର ଅବସ୍ଥାରେ ନାହିଁ, ଭରି ଭୋଗ ହେଉଛି, ସମ୍ଭାଳି ହେଉନାହିଁ ।

ଅନେକ ଦିନ ହେଲା ଭୋଗ କରୁଥିଲେ କ'ଣ ମୁଁ ଜାଣି ନଥିଲି । ଗାଧୋଇବା ସାଙ୍ଗେ ସାଙ୍ଗେ ନାହିଁ ନଥିଲା ଭୋଗ ହେଉଥିଲା ।

ସେ ବୁଢ଼ିଙ୍କ ପରି ହସିଲେ, କହିଲେ—

'ପାଠ କର, କଷ୍ଟ ସମୟ ପରେ ଗୁରୁଙ୍କ ଦଳ ଧୂନାଦୃକ୍ତି କରିଲ ପ୍ରସାଦ ବାଣ୍ଟିବେ । ଭୁଜର ଖାଇବା ପାଇଁ ଯଥେଷ୍ଟ ହେବ ।'

ଉପରେ ଥିବା ଘୋଡ଼ାବାଲାଙ୍କୁ ଡାକିଲି ବିସ୍କୁଟ ପଠାଇବା ପାଇଁ । ସେ ମୁଁହଟା ମୋଡ଼ି ଦେଇଥିଲା ।

ମୁଁ ତ ବିସ୍କୁଟ ଖାଇପାରୁ ନଥାଏ । ଏପାଖେ ଗେଟ ଦୁଇଟି ସେପଟେ ଦ୍ୱାର ଭଡା ନଅନ୍ତି । ମୁଁ ଭୂଜା ଦେଉଥାଏ, ଯେତେହେତୁ ସେଗୁଡ଼ିକ ମୋର ଖାଦ୍ୟର ଅଦେଖା । କେଉଁ ସବୁ ପ୍ରାୟ ହୋଇ ଆସିଥାଏ । ଗୌରୀକୁଣ୍ଡ ଗାଁ ଉପରର ପହଞ୍ଚି ବକ୍‌ସିସ୍ ମାଗିଲେ । ବୁଝାଯାଇଥିଲା କେଉଁ ଏହି ଜାଗାରେ ବକ୍‌ସିସ୍ ଦେବା ନିୟମ । ଅନ୍ୟମାନେ ଦେଉଥାନ୍ତି । ତାଙ୍କ ଦେଖି ପେଟ ଭରିଯାଏ, ତାଙ୍କର ଉତ୍ସାହ କଥାପନା, ହସ୍ତ ଶ୍ରଦ୍ଧା ଦେଖି ବକ୍‌ସିସ୍ ଦିଆଯାଏ । ସେଇଟା ମୋ ନିୟମର ବାହାର ।

ସେମାନଙ୍କର ତାମ ସତ୍ତ୍ୱା ପରେ ମୋ ପାଇଁ କେତେକ ଉଷ୍ମ ପାଣି ମିଳିଲା । ଯାହା ଶେଷରେ ହାଲିଆ ହୋଇ ଉଣ୍ଟି

ଶୁଖିଯାଇଥାଏ । ଜମୁନା ପାଣି ହଁକଳ ପାଇଁ ଜଗି ବସି ଥାଏ । ମୁଖ୍ୟଙ୍କର ଗୃହପାଣି, କଳସିଆ ଢୋଳା ପରେ, ଏମାନଙ୍କର ଗୃହପାଣି ଛନ୍ଦୁଆ ଖିଆ ସରିଲା ପରେ ମୋ ପାଇଁ ଢେଙ୍କିଚଏ ଜମୁନା ପାଣି ମିଳେ । ଏହିଟିକ ହୋଇଥାଏ ମୋର ଜୀବନ ଧାରଣର ସମ୍ବଳ ।

ସେମାନେ ହିକଏ ସଚେଷ୍ଟ ଥିଲେ ଯେପରି ହେଁ ତା ଯେତେ ଗନ୍ଧ କହୁ ନଥାନ୍ତା । ସେବା ପଛରେ ଯଦି ଶ୍ରଦ୍ଧା ସ୍ନେହ ନଥାଏ, ଭାଷ ଯଦି ସମୟୋପଯୋଗୀ ହୋଇ ନଥାଏ ତାହାହେଲେ ସେ ସଠିକ୍ ଭାବ ନୁହେ ଓ ସେ ବ୍ୟକ୍ତି ସଠିକ୍ ସେବାର ହକ୍‌ଦାର ନୁହେ । ଏ ସବୁ ମନେ ପଡ଼ିବାରୁ ମନା କରିଥିଲି । ବକ୍‌ସିସ୍‌ଟା ଧରିବାକୁ ନୁହେଁ ।

ସାମାନ୍ୟ ହିକଏ ଚଣ୍ଡିପାଠ ପାଇଁ ଅନୁରୋଧ କରିବାରୁ ବସି ପଡ଼ିଲି । ସେ ବହୁଟା ଓ ଶିବ ତାଣ୍ଡବ ମୋ ସଙ୍ଗରେ ଥାଏ । ପ୍ରତିଦିନ ସନ୍ଧ୍ୟାରେ ପଦ୍ମଶୁ ଆବୃତ୍ତି କରେ । ଗୌରୀକୁଣ୍ଡ କଡ଼ରେ ବସି ପାଠ କରୁ କରୁ ଦୂରେଇଗଲା ଶରୀରର ସମସ୍ତ ବେଦନା । ହିକଏ ଅଳ୍ପ ଚଣ୍ଡିପାଠ କଲେ କ'ଣ, ଆବୃତ୍ତି କରିନେଲି, ଆବୃତ୍ତି କରିପାଇଥାନର ଯେତେକ ଅଂଶ । ଅଷ୍ଟମୀ । ଜଳୁଥିଲା ଅଗ୍ନିଶିଖା ଶତସିଂହର ବଳ । ସରିଲା ପରେ ଦୟାନନ୍ଦଜୀ କହିଲେ— କୈଳାସର ଇତିହାସରେ ବୋଧହୁଏ ତୁମେ ପ୍ରଥମ ଯିଏକି ଗୌରୀ-କୁଣ୍ଡ ନିକଟରେ ଚଣ୍ଡିପାଠ କରୁଛ । ସେ ପାଠ ଶୁଣି ନିଜକୁ ଧନ୍ୟ ମଣିଲେ । ସାଙ୍ଗେ ସାଙ୍ଗେ ରାମଦାସଜୀ ଆସି ଶ୍ରଦ୍ଧାରେ ଦୁଇଟି ନୋଟ ବଢ଼ାଇ ଦେଲେ । ସେଥିରୁ ଗୋଟେ ନୋଟ ପେଟରକୁ ସେ

ଅଣିଥିଲେ । କହିଲେ—ଏହି ବିସ୍କୁଟ ଟାଇଫଏଡ଼ ରୋଗିକୁ ଦିଆଯାଏ । ଏଥିରୁ ଦୁଇଟି ଖାଇଦେଲେ ଦରକାରୀ ସମସ୍ତ ଖାଦ୍ୟ ମିଳି ପାରିବ । ସତରେ ସମସ୍ତ ଖାଦ୍ୟ ମିଳିଥିଲା ତାର ସେହି ଟ୍ରେମବୋଲା ବିସ୍କୁଟରେ । ଉଲବାଟା ପୂରଣ କଲି ଗୌରୀକୁଣ୍ଡ ଜଳରେ । ଜଳ ଖାଦ୍ୟର ଅଗ୍ନିଏ ଭାଗ କିନା ?

ତା'ପରେ ପ୍ରକାପୂଜା କଲେ ଅମର ଶେଠ୍‌ଜୀ ଦେଇଥିବା ଓ ପ୍ରସାଦ ହିସାବରେ ମିଳିଲା ଖଣ୍ଡେ ବାଦାମ, ଗୋଟିଏ ଶୁଖିଲା ଖଜୁର ଆଉ ଟ୍ଲେଟ ଦୁଇଟି ନଡ଼ିଆ ଖଣ୍ଡେ ବୋଧହୁଏ । ସ୍ୱଳ୍ପଣ ଶୋଷ ହେଲା । ଫେର ହାଲେ ପାଣି ପିଇଲି ।

ଗୌରୀକୁଣ୍ଡ ଗୋଟିଏ ପୀଠ ଜାଗା ।

ମନରେ ଫୁର୍ତ୍ତି ଓ ଦେହରେ ବଳ ନେଇ ଓହ୍ଲାଇଲୁ । ସାଙ୍ଗରେ ରହିଲେ ତତ୍ତ୍ୱସ୍ୱରୂପାନନ୍ଦଜୀ ଓ ରାମଦାସ ବାବାଜି । କଚଖେମା ଅନ୍ୟମାନଙ୍କୁ ଟିକିଏ ଆଗରୁ ବାଟ କଢ଼ାଇ ନେଇଗଲା । ଆମେ ତିନିହେଁ ବାଟ ବାରି ବାରି ଓହ୍ଲାଇଲୁ । ପ୍ରଥମରେ ଗ୍ଲାସିୟର ଶିଳା ଖଣ୍ଡର ହିଡ ଉପର ଦେଇ ଯାଇଥିଲା ।

କିଛି ଦୂର ଯାଇଛୁ ଉତାରୁ ଗୋଟିଏ ହିମ-ପ୍ରବାହ (Glaciex) ପଡ଼ିଲା । ଉପରୁ, ଡାହାଣ ପଟରୁ ଉଳକୁ ବାଁ ପଟକୁ ଗଡ଼ିଯାଉଛି ଓ ତାର ଓସାର ପ୍ରାୟ ଶହେ ଫୁଟ । ଆଖପାଖରେ ପାରିହେବା ଉପାୟ ନାହିଁ । ତତ୍ତ୍ୱସ୍ୱରୂପାନନ୍ଦଜୀ କହିଲେ ଯେ ସେ ବରଫ ଦେଇ ଚାଲିବା କୌଶଳ ଜଣେ ସ୍ୱିସ୍ ପର୍ବତାରୋହୀଠାରୁ ଶୁଣିଛନ୍ତି । ତାଙ୍କର ଯୋତା ମଧ୍ୟ ସେ ଦେଶରେ ଥିଲା । ସେ ଆଗରେ ବାଟ କାଢ଼ିଲେ । ରାମଦାସ ବାବାଜି ରହିଲେ ପଛରେ ଓ ମୁଁ

ରହିଲି ମଝିରେ । ଦତ୍ତସ୍ୱାନନ୍ଦଜୀଙ୍କ ପାଦ ଚିହ୍ନରେ ପାଦ ରଖି ମୁଁ ଚାଲୁଥାଏ । ଠାଏଁ ଠାଏଁ ବରଫରେ ନୀଳ ଚକଡ଼ା ଦେଖି, ତାକୁ ବାଉଁରେ ଠେଲି କହନ୍ତି—'ଏହା ତଳେ ଫାଙ୍କ ଅଛି ।' କିନ୍ତୁ ମୁଁ ଦେଖେଁ ତାହା ପଥରଠାରୁ ଟାଣ । ତଳେ ଫାଙ୍କ ଥାଉ ବା ନ ଥାଉ ଆମକୁ ସମ୍ଭାଳି ଚାଲିଲେ ହେବ—ଏପରି ଭାବୁଥାଏ । ପ୍ରାୟ ଠିକ୍ ମଝାମଝି ହୋଇଛୁ, ହଠାତ ଦେଖିବାକୁ ପାଇଲୁ ଗୋଟିଏ ବରଫର ଫାଙ୍କ । ଦେଢ଼ ଫୁଟ ଖଣ୍ଡେ ଓସାର, କିନ୍ତୁ ଧାରରୁ କିଛି ତରଳି ଯାଉଛି । ଅଟକିଯାଇ, ଦୃଷ୍ଟି ଆକର୍ଷଣ କଲି, ବିଶେଷ ଶୋଚନା ନ କରି, ଖଟ୍‌କିନା ଡେଇଁପଡିଲେ, ଦତ୍ତସ୍ୱା-ନନ୍ଦଜୀ । ତା ସାଙ୍ଗକୁ ମୁଁ ମଧ୍ୟ, ଅବଶ୍ୟ ଗୋଟିଏ ନିଃଶ୍ୱାସ ନେଇ ପରେ । କିନ୍ତୁ ସ୍ୱରଦାସଜୀ ଡରିଗଲେ ବା ଘାବରେଇ ଗଲେ । ହାତ ବଢ଼ାଇଲି । ଦରକାର ନାହିଁ କହି ଲମ୍ଫ ଦେଲେ । ଗୋଡ଼ ଯେପି ଛୁଟି ହୋଇ ପଡ଼ିଗଲେ । ଗୋଡ ଦୁଇଟି ରହିଲା ଫାଙ୍କ ଭିତରେ । ଉଠିବାକୁ ସାହାଯ୍ୟ କରିବାକୁ ଯାଉଥିଲେ ମଧ୍ୟ ମନା କଲେ ଓ ନିଜ ଚେଷ୍ଟାରେ ଠିଆ ହେଲେ । ଏହି ବରଫ ଫାଙ୍କ ବିଷୟରେ ଗପିବାକୁ ଆରମ୍ଭ କଲେ ଦତ୍ତସ୍ୱାନନ୍ଦଜୀ ।

ଖରା ଦିନରେ ଗରମ ହେତୁ ବରଫ ବିସ୍ଫାରିତ ହୁଏ ଓ ଶୀତ ଦିନରେ ସଙ୍କୁଚିତ ହୁଏ । ସେତେବେଳେ ଲମ୍ବର ସମାନ୍ତରାଳରେ ହିମ-ପ୍ରବାହଟି ଫାଟି ଫାଙ୍କ ତିଆରି ହୁଏ । ତା' ଉପରେ ଫେର ଶୀତ ଦିନରେ ଗୋଟିଏ ପ୍ରସ୍ଥ ବରଫ ପଡ଼ି ଜମାଟ ବାନ୍ଧି ଗୋଟିଏ ଟାଣ ସ୍ତର ହୋଇଯାଏ । ଯିବା ଲୋକେ ଦେଖିବେ ଯେପରି ଏ ମୁଣ୍ଡରୁ ସେ ମୁଣ୍ଡ ପର୍ଯ୍ୟନ୍ତ ଗୋଟିଏ ଟାଣ ନିର୍ଦ୍ଦୋଷ ବରଫ । ହାତେ

ମାପି ଗୃଖଣ୍ଡେ ଗୃଲ, ସାବଧାନତା ସହକାରେ ଚୃଲବାକୁ ହୁଏ । ଡରଟସ୍ତୁମାନେ ଶୀତକାଳେ ଏଡଦ୍ଧ ଯାଗାରେ ବୁଲବାଚେଳେ, ଅଣ୍ଟାରେ ଗୋଟିଏ ଗୋଟିଏ ରାଜ୍ଜୁ ବାନ୍ଧି ଗୃଲନ୍ତ । ଗୋଡ଼ ଯଦ ଖସିଯାଏ ବାଡ଼ିକଟି ଫାଟର ଦୁଇ ଟକୁ ଅଟକ ଯିବାପାଇଁ ସାହାଯ୍ୟ କରେ ।

ଥରେ ଦୁଇ ଜଣ ଡବ୍ୱାସୁ ଏହିପ୍ର ଭଳ ଯାଗାରେ ବୁଲୁଥିବା-ବେଳେ ଜଣେ ଏହିପ୍ର ଭଳ ଫାଟ ଭିତରେ ପଡ଼ିଗଲ । ଦ୍ୱିତୀୟ ଜଣକ ଯାଇ ସାଥି ସାଙ୍ଗଙ୍କୁ ଧରି ଅଣିଲ । ଦନେ ଖଣ୍ଡେ ପରେ ଉଦ୍ଧାର କାର୍ଯ୍ୟ ଅରମ୍ଭ ହେଲ । ଦଉଡ଼ି ପକାଇ ଓହ୍ଲାଇଲେ । ଦେଖାଗଲ ଯେ ଲୋକଟା ଜୀବନ୍ତାବସ୍ଥାରେ ଥିଲ, ଯଦ ଓ ଗଣ୍ଡୁ ବହୁତ ବେଶି ଥିଲ । ଅଙ୍କା ବଙ୍କା ହୋଇଥିବା ହେତୁ ପଡ଼ିବାର କୋରଟା ଧପେଇ ଯାଇଥିଲ । ଏଥିରୁ ଜଣାଯାଏ ଯେ ପ୍ରତ୍ୟେକ ବର୍ଷର ବରଫ, ଯଦ ଓ ଉଗଟେ ଯାଗାରେ ଫାଟେ, ଦଗଟା ଜ୍ୟୋ ଟାଏ । ଲୋକଟା ଅବସ୍ଥା ସାମାନ୍ୟ କଣ୍ଟୁ ଖଣ୍ଡେ ଖାବସ୍ତ ହୋଇଥିଲ । ଉଲେ ନଦୀ ଭଳଅ ପାଣିର ସ୍ରୁଅ ଗୃଲଥିଲ ଓ ଖୋଲ ଯାଗା ଥିବାରୁ ନିଃଶ୍ୱାସ ନେବାରେ ଅସୁବିଧା ହୋଇ ନଥିଲ । ଦଉଡ଼ି ସାହାଯ୍ୟରେ ତାକୁ ଉଦ୍ଧାର କରାଗଲ ।

ପର୍ବତାରୋହୀମାନେ ଦଉଡ଼ିରେ ବନ୍ଧାବନ୍ଧ ହୋଇ ଅଭସ୍ତ-ଦୂରତା ରକ୍ଷା କରି ଗୃଲନ୍ତ । ସତର୍କତା ସତ୍ତ୍ୱ ଅଗର ଲୋକଟି ଖସି ଗଲେ, ପର ଲୋକଟି ଲଟକାଇ ରଖେ ଓ ପରେ ଟାଣିଅଣେ ।

ବଲକାଠା ଅଙ୍କାବଙ୍କା ସର୍ପିଳ ରାସ୍ତା ଦେଇ ବିଜୟ ଉଲ୍ଲାସରେ ଚାଲି ଓହ୍ଲାଇଲୁ ।

ଶେପ୍‌ଡଚଟକ୍—ତ୍ରିଲଛି—୧୭୪+୫=୧୭୯ ମାଇଲ
ପରିକ୍ରମା—୧+୫=୧୭ ମାଇଲ

ଆଜି ପହଞ୍ଚିଲୁ ଚଗାଟିଏ ନଦୀ ନାଳଟିର, କୋମଳ ଘାସ ଥିବା ଚକଡ଼ା ଖଣ୍ଡରେ । ଦେଖିଲେ ବୋଝ ସବୁ ଉଠାଇ ରଖାଯାଇ ଥିଲା । ଘାସ ଉପରେ କଲ୍ୟାଣୀ ମନରେ ଲଟ୍‌କନା ଗଡ଼ପଡ଼ ହେଲି—'ମୁଁ ଆଜ ଭାରି ଖୁସି ।' ଡେଲିଙ୍କ ଗୁଆ ମୋ ପାଖରେ ଥିଲ ସେତକ ବାଣ୍ଟିଦେଲି । ରମ୍ଭା ଠଣା ଚାଲିଲା । ମନରେ ଚାଲିଲା ଭାବର ସ୍ରୁଅ, ଏକ ପ୍ରକାର ତନ୍ଦ୍ରା ଅବସ୍ଥାରେ—

ଗୌରୀକୁଣ୍ଡର ଝରି ଆସିଲା । ସେ ପର୍ଯ୍ୟନ୍ତ ଥିଲ ଖାଲି ଉଠାଣି, ଉଠାଣି ପରେ ଉଠାଣି—ବେଦମ୍ ଉଠାଣି । ଚାଲ୍‌ବା-ବେଳେ ଥିଲ ଦୁଇ ହଜାର ଫୁଟ ଉପରେ, କୋସଯୁଟ ବା ଫୁଲବାଣି ଭଳି । ସେଠାରୁ ଚଢ଼ି ଚଢ଼ି ଉଠୁଙ୍କ ହିମାଳୟ ପାଦ ଛାଡ଼ି, ପୃଥିବୀର ଜଗତମ ଖଣ୍ଡ ଡବ୍‌ର ଦେଇ, ଆପେ ଉଠି ଆସିଲୁ ଅଠର ହଜାର ଛଅ ଶହ ଫୁଟ ଉଚ୍ଚରେ ଥିବା ଗୌରୀକୁଣ୍ଡକୁ । ସେଇଠାର ତଳରେ ତଳରେ ଗଲ । ହିମାଳୟର ଏ ପଟରେ ମାତ୍ର ଗୋଟିଏ ଉଠାଣି ଅଛି । ମାଲମା ପରେ ଗ୍ଲେଟ ଗୋଟେ ଦୁଇଟା । ଟିଙ୍ଗି ଟିଙ୍ଗି ଚାଲି-ଟହଲ ଟହଲ ଓହ୍ଲାଇଲେ ବାଟ ସରିଯିବ । ଭଗ୍ନାର ପର୍ଯ୍ୟାପ୍ତ ସରିଛି । ଭଗ୍ନ ସହ୍ୟ ଦେହ କାଠ ଧାଲିଟି ଯାଇଛି ! ଶେଷକ ଅଣ୍ଡା ଦେହକୁ ବିଶେଷ ବାଧୁ ନାହିଁ । ଏହି ଅବସ୍ଥାରେ ମଧ୍ୟ, ପ୍ରତିଦନ

ଦଶବାର ମାଇଲ ଚାଲିବା ସହଜ ଅଭ୍ୟାସରେ ଚଢ଼ିହୋଇଛି । ଦେହରେ ରୋଗ ନାହିଁ । ଏହାପରେ ଆଜ ଛ'ସାତ ଦିନ ବିତିଗଲେ, ଗନ୍ତବ୍ୟ ସ୍ଥାନରେ ପହଞ୍ଚିଲା ପରେ, ଘରକୁ ବାହୁଡ଼ି ବାହୁଡ଼ି ଖାଇପିଇ ଦେବସ୍ଥା ବାହାରି ଚଢ଼ିବ । କେତେ ଉଲ୍ଲାସରେ ଗୋଟିଏ ଗୋଟିଏ ଭକ୍ତ ଘରକୁ ଫେରିବେ । ଫେରି ବୋଲାଇବେ କୈଳାସ ଫେରନ୍ତା । ଏବା ଧାର୍ମିକ ସତ୍ୟ ଲୋକ ଦର୍ଶନ ଓ ନରକ ଯନ୍ତ୍ରଣା ଭୋଗ କରି ଆସିଛନ୍ତି ।

ସ୍ୱପ୍ନ ଭାଙ୍ଗିଲା । କଟେଶମା କହିଲେ—'ତୁମର ତମ୍ବୁ ପ୍ରସ୍ତୁତ ଅଛି, ଚାଲିଯାଅ ।' ମୋର ଜିନିଷ ସବୁ ତମ୍ବୁ ଭିତରେ ରଖା ଯାଇଥିଲା ।

ମୁଁ କହିଲି—ମୋତେ ଜ୍ୱର ଆସିଲା ଲାଗୁଛି; ଏ ଧରକ କୋଡ଼ରେ ଟିକିଏ ଗଡ଼ିବାକୁ ଦିଅ ।

ବୁଢ଼ା ଛୁଟି ଆସିଲା । ଫୁଲ ଭଳି ଉଠାଇ ନେଇ ମୋତେ ତମ୍ବୁ ଭିତରକୁ ଛୁଟି ଦେଲା ।

ବର୍ଷା ସରାଇ, ଭଡ଼ ଚଳଞ୍ଜାଇ, ଆଖି ବୁଜି ବୁଜି, ସବୁ ପାଣିଆ ଦେଖା ବନ୍ଦ ହୋଇଗଲା । ଏଁ—ଏ କ'ଣ ? ଚିହ୍ନା ଚିହ୍ନା ତ ଲାଗୁଛି । ଗୁରୁଗ୍ରାହି ଦଳର ତମ୍ବୁ'ଙ୍କର ଉପରେ ଗୋଟିଏ ଚିହ୍ନା ଛାପ । ଓଁ—ଏତ ଭୁବନେଶ୍ୱର ମନ୍ଦିରର ଛାପ ! ବାହାରକୁ ଯାଇ ଦେଖିଲି ଲେଖା ହୋଇଛି—ମାନେ ଓଡ଼ିଶା ଟେକ୍ସଟାଇଲ ମିଲ୍ସ, କଟକ, ଚୌଦ୍ୱାର (ମୋଟା) ଜି.ଓ. ୧୯୪୦ । ଆସିଲା ଉତ୍କଳ ସଇତାନ ହସ - ଓ ହୋ ହୋ—ହୁହୁ ହଃ ।

ସେହି ଚମ୍ବୁ ଉପରୁ ମୁଁ କିଛି କଥାବାର୍ତ୍ତା ଶୁଣି ପାରିଲି । ବୁଝିଲି ସେମାନେ ମୋ ବିଷୟରେ କଥାବାର୍ତ୍ତା ହେଉଛନ୍ତି ।

ପାଚିଲି—ଶେଠ୍‌ଜୀ, ଆପଣଙ୍କ ଚମ୍ବୁଟା ଓଡ଼ିଶାରେ ତିଆରି ବନାରେ ।

ଶେଠ୍‌ଜୀ—ହଁ, ହୋଇଥିବ ।

ପ୍ରମାଣ ଦେଲି—ଦେଖନ୍ତୁ, ଭୁବନେଶ୍ୱର ସହର ଛାପ ଅଛି, ଓଡ଼ିଶା ଟେକ୍ସଟାଇଲ ମିଲ୍‌ସ ଲେଖା ହୋଇଛି ।

ଶେଠ୍‌ଜୀ କିଛି ଉତ୍ତର ଦେଲେ ନାହିଁ । ମୁଁ କହୁ ଚଲେଇଛି—ଏ ମିଲ୍‌ର ଯିଏ ପ୍ରତିଷ୍ଠାତା ସେ ବର୍ତ୍ତମାନ ଓଡ଼ିଶାର ମୁଖ୍ୟମନ୍ତ୍ରୀ ।

ଶେଠ୍‌ଜୀ—ହଁ ।

ଦେଖିଲି, ସେଠି ଥିବା ଆବେଗ ସେମାନଙ୍କଠି ନାହିଁ । ଆସିବ ବା କିପରି ? ସେମାନେ ଜନ୍ମରୁ ଯେ ଦୂର ବିଦେଶରେ ଥାଇ ଗାଁ ଓ ଦେଶର ସଂସ୍କୃତି ଦେଖି ଶୁଣି ନାହାନ୍ତି । ଅସୁବିଧା ସ୍ୱାଭାବିକ । ମୁଁ ଯାହା ଭିତରେ ଯାହା ଦେଖିପାରୁଥିଲି, ସେମାନେ ତାହା ଦେଖିପାରୁ ନଥାନ୍ତି । ସେମାନଙ୍କ ପ୍ରଶ୍ନର ଉତ୍ତର ସେମାନେ ପାଇବେ । ମୋ ପ୍ରଶ୍ନର ଉତ୍ତର ମୁଁ ପାଇଛି । ପ୍ରତ୍ୟେକ ଲୋକ ଗୋଟିଏ ଗୋଟିଏ ବୀଜଗାଣିତିକ ପ୍ରଶ୍ନ—

ସମାଧାନ କର ମୁଁ=ଝ (ଅ, ଜ, ମ) ।

ଗଣିତ ହେଉଛି ସୃଷ୍ଟିର ପ୍ରତ୍ୟେକ ମୌଳିକ ସ୍ତରର ବହୁଳ ମାତ୍ରାନୁପାତର ମିଳନ ଝଙ୍କାର, ଓ କିଏ ତାହା ସହଜ ସମାନ ନୁହେଁ ।

ଡାକ ପକାଇଲି କଚଖମାକୁ । ଗର୍ଭଗୃହରୁ ବାହାରିବା ପୂର୍ବରୁ କଚଖମା ଗୋଟିଏ ପୁଷ୍ପ ଥାଳ ବଢ଼ାଇଦେଲେ ଭରି ସିଲର ଛବି ଥିଲା, ଯେଉଁରେକ ଗୃହସ୍ଥି ଦର୍ଶନାର୍ଥୀମାନଙ୍କ ଭେଦ ଅନୁଯାଇ ତୟାର ହୋଇପାରେ । ସେମାନେ ସମସ୍ତେ ଗୋଟିଏ ଯାଗାରେ ରହିବାକୁ ଚାହିଁଥିଲେ । କନାର ବୁଟୋଟା ଫେଣ୍ଟାର ଭଳିଆ ଲାଗିଥିଲା । ତାକୁ ବିଶେଷ ମୂଲ୍ୟ ଦିଆ ନଥିଲା । ବିଶେଷ କୌତୂହଳ ମଧ୍ୟ ହୋଇ ନଥିଲା । ସେ ସମୟରେ ମୋର ଆଗେଇବାଟା ତାର ମର୍ଜି ଉପରେ ନିର୍ଭର କରୁଥିଲା । ବିଶେଷ କଥାବାର୍ତ୍ତା କଲେ ଢଙ୍ଗ ବଦଳିପାରେ ବୋଲି ସତର୍କ ଥିଲି ଓ କେବଳ ସାହା କରିବା ଚିନ୍ତାରେ ମଗ୍ନ ଥିଲି ।

କଚଖମା ଉତ୍ତର ଦେଲା ।

ପଚାରିଲି —ଏ କନା ତୁମେ କେଉଁଠାରୁ ଆଣିଲ ?

କହିଲା —ଦିଲ୍ଲୀ ବଜାରରୁ ଆମେ ପାରସୀୟ କନା ମଗାଉ-ଥାଉ । ଏ କନା ଦିଲ୍ଲୀ ବଜାରକୁ ଆସେ ।

ଏଇଟା ସ୍ୱାଗତର କଥା । ଆଶ୍ଚର୍ଯ୍ୟ ହେବାର କିଛି ନାହିଁ । ଆଶ୍ଚର୍ଯ୍ୟ ହେବାର ଅଛି ଯୋଗାଯୋଗରେ । ତାହାର ଲକ୍ଷ ପ୍ରାୟ ଶେଷ ହେବା ଉପରେ । ପ୍ରକାର ଭୋଗ ହେଉଛି । କେବଳ ସମର୍ପଣ ଓ ବିସର୍ଜନ ବାକି ଅଛି । ଠିକ୍ ସେହି ସମୟରେ ଦେଖିବାକୁ ପାଇଲି ସନ୍ଧୁଦସ୍ନ ନସ୍ତ୍ରାକ୍ର ପରୀକ୍ଷକର ଇଙ୍ଗିତ—ଏଇଟି ଭୁଲ, ଏଇଟା ବାଟ । କେଉଁଟା ବାଟ ?

ଅନ୍ୟମାନଙ୍କଠାରେ ସେ ଆବେଗ ନ ଦେଖି ଟମ୍ପୁ ଭିତରକୁ ଫେରିଲି । ଗଡ଼ପଡ଼ ଛବିଟିକୁ ଚାହିଁ ରହିଲି । ଭୁବନେଶ୍ୱରରେ

ଥାଇ କୈଳାସ କଥା ଶୁଣୁଥିଲି, ଏବେ କୈଳାସରେ ଥାଇ ଶୁଣୁଛି ଭୁବନେଶ୍ୱର କଥା । ପ୍ରଥମ କଥା ହେଲା ଯେ ମୁଁ ସକୁଶଳେ ଭୁବନେଶ୍ୱର ଫେରିବି ଓ ଫେରିବାକୁ ହେବ ।

ଫଲ୍‌ହାରିବାବା କହୁଥିଲେ—'ଅକ୍ ଧୁ ଚଲେ ଯାନା ।'

ମନ ଭିତରେ ଗୁଞ୍ଜନ ଶୁଭର ଚଢା ଉର୍ତ୍ତିର । ଚକ୍-କରରେ ପଡ଼ୁଛି । ଘୂରେଇ ବୁଲେଇ ମାରୁନେଲା ରସାତଳକୁ ।

ଶାସ୍ତ୍ର ଚନ୍ଦନ ଫଳରେ କାରଣ ଜଗତରେ ଯେଉଁ ମଞ୍ଜି ପୋତୁଛି ତାର ଫଳ ଫଳିବାକୁ ଯାଉଛି ।

ସେହି କାରଖାନାର ପ୍ରତିଷ୍ଠାତା ଯିଏ ସେ ଏବେ ଓଡ଼ିଶାର ଭାଗ୍ୟନିୟନ୍ତା । ସେ ମଧ୍ୟ ଜଣେ ସମାଧାନ ମୁଖୀ 'ମୁଁ' । ଉଦ୍ଦାମ ଯୌବନରେ ଉଚ୍ଛୁଳା ସାହସ ଯେଉଁ ପ୍ରଦେଶରୁ ନିର୍ଗତ ହୁଏ । ଉତ୍ତର ପ୍ରଦେଶର ଶବ ଧାରିର ଘାତ ପ୍ରତିଘାତ ଓ ଟକ୍କରରେ ଚିନ୍ତାଧାରା ସଜାଡ଼ି ହୁଏ, ତୁଳନା ଓ ବିଶ୍ଳେଷଣ କରେ । ସମାଧାନର ବାଟ ଖୋଜେ, ଏକ ପ୍ରକାର ବାଟ ପାଏ ।

ଗୁଳି ଜାଣିଲେ ବାଟ ଅବାଟ କିଛି ନଥାଏ । ଚଢ଼ି ଜାଣିଲେ ଅତଡ଼ି ବୋଲି କିଛି ନଥାଏ । ଫେରି ନ ଜାଣିଲେ ଦୁଃସାହସ ତଥା ମୂର୍ଖାମି କୁହାଯାଇଥାଏ । ସମୟର ସୁଅକୁ କାଟି ବା ଟପି ଆଗେଇବାକୁ ହେବ । ସେଥିରେ ବାଟ କ'ଣ ଅବାଟ କ'ଣ ? ପାରିଲେ ବାଟ, ନ ପାରିଲେ ଅବାଟ ।

ଜଗତର ସବୁ ବିଷୟର ମୂଳରେ ଅଛି ଟଙ୍କା । ଟଙ୍କାରୁ ଗଢ଼ି ଉଠିଛି ସମସ୍ତ ପ୍ରକାର ବିକାଶ । ଟଙ୍କା ପାଇଁ ସାହସ ଦରକାର ।

ପ୍ରଚୁର ସାହସ ସହକାରେ ଯୋଗାଇ ହେଲ ଅକସ୍ର ଟଙ୍କା । ଟଙ୍କା ଦ୍ୱାରା ଧର୍ମ, ଅର୍ଥ, କାମ, ମୋକ୍ଷ ଚତୁର୍ବର୍ଗର ପ୍ରାପ୍ତି ହୋଇ ପାରେ ।

ବିକାଶର ଗୋଟିଏ ଧାରା ଅଛି; ସୂଅ ଅଛି । ପ୍ରଥମରେ ପେଟକୁ ଲୋଡ଼ା ଦାନା । ପରେ ଦେହକୁ ଲୋଡ଼ା ଲୁଗା । ଲୁଗା ପାଇଁ ଗଢ଼ି ଉଠିଲ ପ୍ରଥମ କାରଖାନା । ଏ ବଡ଼ କାରଖାନା ନୁହେଁକ ଗୁଡାଖୁ କାରଖାନା ନୁହେଁ । ସାରା ଭାରତରେ ସର୍ବ-ବୃହତ୍ ଓ ସର୍ବାଧୁନିକ ।

ବାଣିଜ୍ୟେ ବସତେ ଲକ୍ଷ୍ମୀ । ବିକାଶ ଘଟିବ ଶିଳ୍ପରୁ । ଶିଳ୍ପ ଛିଡ଼ିବ କାମ କଲେ । କାମ ହେବ ପ୍ରେରଣା ପାଇଲେ । ପ୍ରେରଣା ପାଇବ ଐତିହାସିକ ଭବ ଧାରାରୁ । ଡାଙ୍କ ଯୋଗାଇଥିଲ ସେହି ଭବଧାରା । ସେହେତୁ ତାଙ୍କ ପୁରସ୍କାର ଓ ତାଙ୍କ ଶିଳ୍ପଗୋଷ୍ଠି ।

ବୀର ଭୋଗ୍ୟା ବସୁନ୍ଧରା ।

ଯଦି ଲକ୍ଷ ହେବ ବାଟ, ଅବାଟ ବୋଲି କିଛି ନାହିଁ । ଯଦି ବାଟ ହେବ ଲକ୍ଷ, ବାଟ ଠିକ୍ ସ୍ଥଳରେ ପହଞ୍ଚାଇ ଥାଏ । କାରଣ ବାଟ, ଲକ୍ଷ ଓ ଯାତ୍ରୀ ଏକ—ଏକ ହେବା ଉଚିତ । ବାଟ ହେଉ ବା ଅବାଟ ହେଉ ଲକ୍ଷରେ ଯଦି ଅଟଳ ଥିବ, ବାଟ ପାଇଯିବ, ଅନୁଭୂତି ହେବ ।

ହିଂସାରୁ ଜାତ ପ୍ରତିହିଂସା । ଏ କମେ ବଢ଼ି ଗଲେ । ପ୍ରତି-ଦ୍ୱନ୍ଦ୍ୱୀ ଗଲେ । ଶିଷ୍ୟ ଠକେଇଦେଲେ ଗୁରୁକୁ । ଗୁରୁ ଠକି ଥିଲେ ପରମ ଗୁରୁକୁ । ଏ ହେଲ ପରମ୍ପରା ଗୁରୁଠାରୁ ପରଂପରା । ପୂର୍ବ

ଗୁରୁମାନେ ଥିଲେ ଋଷି । ସେ ତାଙ୍କର ଶିଷ୍ୟଙ୍କୁ ଆଶିର୍ବାଦ କରୁ-
ଥିଲେ । ସେହେତୁ ଗୁରୁଙ୍କୁ ମଧ୍ୟ ଧରାନେଲୁ ଋଷି ବୋଲି।

ଓଃ ସମ୍ଭାଳି ହେଉନ । ନିଃଶ୍ୱାସ ପାଉନ ନ ପାଣି ହୋଉନ ।
ମନଟା ଖରୁ ଘୂର୍ଣ୍ଣୀସ୍ରୋତ ନଈ ଭଳିଆ, ସେ ଗୋଟିଏ ଭାବଧାରାର
ଅଣ ଉପରେ ଘୂରୁଛି ଓ ମୁନି ଭାବରେ ଦୋହଲୁଛି । ଗୋଟେ
ହୁଂକାର କରି ଝାମ୍ପି ନେବାକୁ ଚେଷ୍ଟା କଲି, ଯେପରିକି ଓଲଟ
ପାଲଟ ତନ ଗଡାଣି ନେଇ ଗଡ ଗଡ଼ ଚୃଲିବ । ବୃଥା ଅପ୍ସର୍ଣ୍ଣା ।
ବୃହିଳ, ହୃଣ୍ଡା, ଖାମ ମଧ୍ୟ ଶିବଙ୍କର ଅତି ଆଦରର ହୋଇଥିଲେ ।
ଯାହା ପୂର୍ବରୁ ଅନେକେ ମୋତେ କୈଳାସଟି ମନେ ପକାଇବା
ପାଇଁ କହୁଥିଲେ । କାହିଁ ସେମାନଙ୍କର ନାମ ତ ସ୍ମରଣ ହେଉନାହିଁ ।
ନାଭି ଅଗରେ ଅଟକି ଯାଉଛି । ଗୋଟିଏ ଶକ୍ତ ଚୃପି ମାଉଛି ।
ଆକୁଳ ଡାକିଲି ଭଗବାନଙ୍କୁ । ଶୁଣିଲେ ନାହିଁ । ଆତ୍ମ ସମର୍ପଣ
କଲି । କଣ୍ଠଟା ଶୁଖିଲେ ।

ମୁଁ ଆଉ ମୋର ବୁଦ୍ଧି ଦୁହେଁ ମିଶି ଅଲଗା ରହିଲୁ ।
ଚୃହିଁ ରହିଥାଉ । ମନ ଦ୍ୱାର ସେ ଘୂରୁଥାଏ ।

କନ୍ଦ୍ରୋର ଭାବରେ ଚୃଲିବ ଓଡ଼ିଶାର ଶିଳ୍ପ ପ୍ରସାର ।
ଓଡ଼ିଶାର ଶାନ୍ତ ବାତାବରଣ ଭିତରେ ପଶିବ ଯାନ୍ତ୍ରିକ ବାତାବରଣ ।
ଯନ୍ତ୍ରର ବିକାଶହିଁ ମୂଳ ଲକ୍ଷ ହେବ । ଯନ୍ତ୍ର ରାକ୍ଷସ ଗ୍ରାସିବ ।
ଉନ୍ନତ କଳ ହେତୁ ଓଡ଼ିଶା ଆଉ ଜଙ୍ଗଲ ହୋଇ ରହିବ ନାହିଁ ।
ଶତକ କି ସମ୍ଭାଳି ନେବ ହାବେଳର ବେଗ ?

ବାହାର ପ୍ରଦେଶରୁ ଆସିବେ ଦୁର୍ନୀତି ଦୁରାଚାରଗ୍ରସ୍ତ ତଥା
କଥିତ ପ୍ରଗତିଶୀଳ, ଉଚ୍ଚ ସମ୍ପନ୍ନ, ମନେ ମନେ ହାମବଡ଼ା, ବାବୁ-

ଠାକୁରଆ ଗୃହକେଓ । ତାଙ୍କୁଲ୍ୟ ରଷି. କୃଷ୍ଣ ତପସ୍ୟରେ ସ୍ଥାନୀୟ ଲୋକଙ୍କୁ ହଇରାଣ କରିବେ । ଗୃହର ଦେବେ ନାହିଁ କି ଝଗଡ଼ାଇ-ଦେବେ ନାହିଁ । ନିଜର ସ୍ୱାର୍ଥ ଜୀବନ ଉପରୁ ସମାଜର ଦୃଷ୍ଟି ଅଡ଼େଇ ନେବା ପାଇଁ ସ୍ୱାର୍ଥ ଚକ୍ରାନ୍ତ ଭିଆଇ ନୂତନ ଘଟାଇବେ ଓ ଚରିତ୍ର ସଂହାର କରାଇବେ । ପ୍ରଗତିଶୀଳ ସମାଜର ଦୋହାଇ ଦେଇ ବୀଜଗୁଣ ହେତୁ ରଚିବେ ସବୁ ସ୍ତରର ବ୍ୟଭିଚାର—ତଣ୍ଟି କଟା, ଭଙ୍ଗାରୁଜା, ଧର୍ମଘଟ ଇତ୍ୟାଦି । କାରଣ ସେମାନେ ତାଙ୍କର ଜାରଜ ଓ ବର୍ଣ୍ଣଶଙ୍କର ଦୃଷ୍ଟିକୋଣରୁ ପ୍ରତ୍ୟେକ ବିଷୟକୁ ଦେଖିବେ । ଲାଞ୍ଜକଟା ବିଲୁଆର ବୁଦ୍ଧି ନେଇ ଆସିବେ ।

ମଞ୍ଜିରୁ ଗଛ ଓ ଗଛରୁ ମଞ୍ଜି । କାରଣ ଏ ଦୁଇଟି ଭିତରେ ଅଛି ପ୍ରକୃତ ମଞ୍ଜି—ଜୀବନ ଅଙ୍କୁର, ଯାହାର ଜୀବନ ଚକ୍ରର ବ୍ୟାସର ଦୁଇ ପାର୍ଶ୍ୱରେ ଏ ଦୁଇଟି ଅବସ୍ଥିତ ।

ମଞ୍ଜି ଦୋଷରୁ ବିଷ ବୃକ୍ଷ ।

ଅତୃପ୍ତ ଆତ୍ମା ତଥା ଚଞ୍ଚଳ ମନର ଯୌନ ଲାଳସା ପ୍ରବଳ ଥାଏ । ଏପରି ଯୌନ ସମ୍ପର୍କରୁ ଜାତ ଜାରଜ ଓ ବର୍ଣ୍ଣଶଙ୍କରଙ୍କର ଆତ୍ମା ଅତୃପ୍ତ ଓ ଚିତ୍ତ ଚଞ୍ଚଳ ଥାଏ । ପ୍ରକୃତ ପ୍ରେମ ଓ ସ୍ନେହ ନ ପାଇ ନଜାଣି ଓ ଦେଇ ନ ପାରି, ଅବଚେତନରେ ରହିଲା ଅଭାବ । ମଞ୍ଜିଗତ ଦୋଷ ହେତୁ ସଠିକ୍ ଭାବ ଆଣି ପାରନ୍ତି ନାହିଁ । ଅଭାବର ପୂରଣ ହୁଏ ନାହିଁ । ବିଷୟ ଭୋଗ ପାଇଁ ହାଇଁ ହାଇଁ ହେଉଥାନ୍ତି । ଯେଉଁଠି ଭେଦ ଦେଖିଲେ ସେଠି ଅସହ୍ୟ ହୁଅନ୍ତି । ସେହେତୁ ପ୍ରାଦେଶିକତା, ଧର୍ମାନ୍ଧତା, ଭଙ୍ଗାରୁଜା ଇତ୍ୟାଦି ।

ନିଜର ଏ ସ୍ୱାର୍ଥ ପାଇଁ ଅନ୍ନ ବା ସମ୍ବଳ ଖୋଜୁଥାନ୍ତି, ସୁବିଧାବାଦୀ ଚିନ୍ତାଧାରାରେ ଓ ଯାହାକୁ ସେମାନେ ଆଖ୍ୟା ଦିଅନ୍ତି ପ୍ରଗତିଶୀଳ । ଯିଏ ଯେଉଁ ପଥକୁ ମୁହଁ କଲା ତାର ସେଇଟା ହିଁଏ ଆଗ—ପ୍ରଗତିର ବାଟ । ତାର ପିଠି ପଟକୁ ରହିଲା—ପଛ, ପ୍ରତି-କ୍ରିୟାର ବାଟ । ଆଳର ଅଢୁଆଳରେ ସମସ୍ତ ଖୋଜ ଗୁଣ୍ଡା ଶ୍ରେଣୀସ୍ଥ ଏକତା ଚାହାନ୍ତି । ଏକ ସ୍ପନ୍ଦନରେ ନିଜର ଯୋଗ୍ୟ କର୍ତ୍ତବ୍ୟ କରିଯିବା ହେଉଛି ଅସଲ ଏକତା । ଅନ୍ୟ ଏକତାର କ ଦରକାର । ମଦ୍ୟପ, ଲମ୍ପଟ ଓ ବେଶ୍ୟାମାନଙ୍କର ଦଳଗତ ଏକତା । ସମାଜର ଶୋଷକାରକ ଓ ସେହି କାରଣରୁ ଦଳଗତ ରାଜନୀତିରେ ପ୍ରମାଦ ଅଛି । ସେପରି ଏକତା ଦରକାର କେବଳ ଲୁଟପାଟ ପାଇଁ । ସମାଜର ଧର୍ମ ତଥା ଅମୃତମୟୀ ସ୍ପନ୍ଦନର ଏକ ତାଳରେ ରହିବା ହେଉଛି ଯୋଗ୍ୟ କର୍ତ୍ତବ୍ୟ—ବାଟ ।

ଏମାନେ ଅର୍ଥକୁ ଅନର୍ଥ କରନ୍ତି ଶାସ୍ତ୍ରକୁ କଦର୍ଥ କରନ୍ତି । ଲକ୍ଷର ଆଳରେ କ୍ଷଣିକ ଉତ୍ତେଜନା ଓ ତୃପ୍ତି ସକାଶେ ଅବାଟରେ ଥାନ୍ତି । ଲକ୍ଷ ଥାଏ ଝାଲ ଆଳକୁ, କିନ୍ତୁ ଅବାଟରେ ଯିବା ତାଙ୍କର ପ୍ରବୃତ୍ତି । ତଳ ଉପର କଥା ନ ବୁଝ କର୍ମରେ ଲାଗିଯାନ୍ତି । ସେଥିରୁ ସେମାନେ ପାଆନ୍ତି କ୍ଷଣିକ ତୃପ୍ତି ବା ଅଶାନ୍ତିରୁ କ୍ଷଣିକ ଉପଶମ । ଚାଲି ନ ଜାଣି, ଅବାଟରେ ଚାଲି, ଅବାଟରେ ହିଁ ରହିଯାଆନ୍ତି । ଲକ୍ଷ ସ୍ଥଳରେ (ଯେବେ ସେପରି କିଛି ଥାଏ) ପହଞ୍ଚିପାରନ୍ତି ନାହିଁ । ବାଟ ଉପରେ ଲକ୍ଷ ନାହିଁ ।

ରାବଣ ସ୍ୱର୍ଗକୁ ନିଶୁଣି ପକାଇବାକୁ ଚାହିଁଥିଲା । ଲକ୍ଷ ନ ଥିଲା । ଅବାଟରେ ପଶି ଅବାଟରେ ହିଁ ରହିଲା । ସେ ଥିଲା ରାକ୍ଷସୀର ପୁଅ ।

ଆଜ୍ଞା ହଁ ସେ ଥିଲା ସମସ୍ତ ଓ୍ଵରସର କାରଣ । ଏମାନେ ସବୁ ହେଲେ ସୈତାନର ହାତବାରିସି । ଏମାନଙ୍କର ଚିନ୍ତା ସଇତାନ ଚିନ୍ତା ।

ଗୀତାରେ ଅଛି—

କାମ ଅଶ୍ରିତ୍ୟ ଦୁଷ୍ପୂରଂ ଦମ୍ଭମାନ ମଦାନ୍ୱିତାଃ ।
ମୋହାଦ୍ ଗୃହୀତ୍ୱା ସଦଗ୍ରାହାନ୍ ପ୍ରବର୍ତ୍ତନ୍ତେଽଶୁଚିବ୍ରତାଃ ॥
ଚିନ୍ତାମପରିମେୟାଂ ଚ ପ୍ରଳୟାନ୍ତା ମୁପାଶ୍ରିତାଃ ।
କାମୋପଭୋଗ ପରମା ଏତାବଦିତି ନିଶ୍ଚିତାଃ ।
ଆଶାପାଶ ଶତୈର୍ବଦ୍ଧାଃ କାମକ୍ରୋଧ ପରାୟଣାଃ ।
ଇହନ୍ତେ କାମ ଭୋଗାର୍ଥ ମନ୍ୟାୟେ ନାର୍ଥ ସଞ୍ଚୟନ ॥

ଅର୍ଥ—ଦୁଷ୍ପାର କାମନାମାନ ଧରି, ଦମ୍ଭ ଓ ଅଭିମାନରେ ମତୁଆଲ ହୋଇ ସେହି କୁତ୍ସିତ କର୍ମୀମାନେ ଅଜ୍ଞାନରେ ହେତୁରୁ ମନ୍ଦ ଲକ୍ଷ ନେଇ ମନ୍ଦ ସଙ୍କଳ୍ପରେ ମାତି କାମ କରନ୍ତି । ସେମାନେ ମରିବା ପର୍ଯ୍ୟନ୍ତ ଅପରିମେୟ ବିଷୟ ଚିନ୍ତାକୁ ମନରେ ପୋଷଣ କରି କାମ ଉପଭୋଗକୁ କେବଳ ପୁରୁଷାର୍ଥ ବୋଲି ମନେ କରନ୍ତି ।

ତେଣୁ ଅସଂଖ୍ୟ ଆଶାପାଶରେ ଗୁଡ଼େଇ ହୋଇ ବିଷୟ ଓ ଇନ୍ଦ୍ରିୟ ଭୋଗ ଆଶାରେ କାମ କ୍ରୋଧ ଆଶ୍ରୟରେ, ଅନ୍ୟାୟରେ ଇନ୍ଦ୍ରିୟ କାମନା ଭୋଗରେ ଲାଗନ୍ତି ।

ଅବଶ୍ୟ ଯେତେବେଳେ ସଇତାନ ଇଭ୍‌କୁ ମତାଇଲା ଓ ଆଦମର ଫଳ ଖୁଆଇଲା, ସେମାନେ ସ୍ୱର୍ଗ ଶାନ୍ତିରୁ ବିତାଡ଼ିତ

ହେଲେ, ଅମୃତତ୍ୱ ହସ୍ତଗତ ହେଲ । ସେମାନଙ୍କର ମତ ଚଞ୍ଚଳ ଓ
ଆତ୍ମା ଅତୃପ୍ତ ହେଲ । ସେହେତୁ ମନୁଷ୍ୟ ମାନଙ୍କ ମତ ଚଞ୍ଚଳ
ଓ ଆତ୍ମା ଅତୃପ୍ତି । କିନ୍ତୁ ଫରକ ଅଛି । ବିଶୁଦ୍ଧ ଶୁଦ୍ଧ ଜଳ ମିଳେ
ନାହିଁ । ପାଣିରେ କ୍ଷୀର ମିଶାଇଲେ ଗୋଳିଆ ପାଣି ଓ କ୍ଷୀରରେ
ପାଣି ମିଶାଇଲେ ପାଣିଆ କ୍ଷୀର । ଅନୁପାତ ଅନୁସାରେ । ଆତ୍ମ
ବିଶ୍ଳେଷଣ ଓ ସଠିକ୍ ଭାବ ଓ କର୍ମରେ ପରିମାଣ କମି ଯାଇଥାଏ ।
ଧରନ୍ତୁ ବିଷ ଓ ଅମୃତର ମିଶ୍ରଣ । ବିଷ ଯଦି ଦଶ ଭାଗ ଓ ଅମୃତ
ନବେ ଭାଗ, ତାହାହେଲେ ସାନସୃଷ୍ଟିର କାର୍ଯ୍ୟକାରିତା ଶକ୍ତି ଅଶି
ଭାଗ ଅମୃତ । କର୍ମଫଳ ହେବ ପୁଣ୍ୟ ଓ ଶାନ୍ତି ଦାୟକ । ଯଦି ବିଷ
ନବେ ଭାଗ ଓ ଅମୃତ ଦଶ ଭାଗ, ମିଶ୍ରିତ ପାନସୃଷ୍ଟିର ଶକ୍ତି ଅଶି
ଭାଗ ବିଷର । କର୍ମଫଳ ହେବ ପାପ ଓ ଅଶାନ୍ତି କାରକ । ପରୃଣ
ପରୃଣ ଯଦି ହୁଏ ସାମାସୃଷ୍ଟି ଶକ୍ତିହୀନ ହୋଇଥାଏ । ଯେମିତି ଜଡ଼ ।

ଆତ୍ମ ବିଶ୍ଳେଷଣଦ୍ୱାରା ନିଜ ଭିତରର ବିଷ ଓ ଅମୃତର
ପରିମାଣ ଜାଣି, ସଠିକ୍ ଭାବ ଓ କର୍ମରେ, ଅନୁତାପ କରି ଓ
ପ୍ରେମଦ୍ୱାରା ବିଷ ଅଂଶକୁ କମାଇ, ବିଷ ଜନିତ ପ୍ରବୃତ୍ତିକୁ ଶୃଙ୍ଖଳିତ
କରି ଅମୃତ ଚିନ୍ତନକୁ ବଢ଼ାଇବାକୁ ଚେଷ୍ଟା କରିବା ଉଚିତ ।
ଏଥିରୁ କିଛି କିଛି ଅଂଶ ନେଇ ବିଭିନ୍ନ ତଥା କଥିତ ଧର୍ମ ଗଠିତ ।
ପ୍ରତ୍ୟେକ କର୍ମର ଆରମ୍ଭରେ ଭଗବାନଙ୍କ ନାମ ନେଲେ ବିଷଦୋଷ
କଟିଯାଇ ଥାଏ । ବୀଜର ଶୋଧନ ହୋଇଥାଏ । ଏ ହେଲା ବୈଧ
ବା ବୈଧର ଲକ୍ଷଣ । ଏ ହେଲା ବାଟ । ଏ ଲକ୍ଷ ହେବା ଉଚିତ ।

ଏହି ବିଷ ଜ୍ୱାଳାରେ ଜଳପୋଡ଼ି ହୋଇ ସମାଜ ହେଲା
ଖଣ୍ଡ ଭାଗ । ଦେଶ ହେଲା ଭଙ୍ଗ । ତେବେ ହେଲେ ମଧ୍ୟ ବୁଦ୍ଧି

ହେଉ ନାହିଁ । ବୃଦ୍ଧି ଆସିବ କେଉଁଠୁ । ବିଷ ଯେ ଘାରୁଛି । ଏମାନେ ଗୃହାନ୍ତ—ସମସ୍ତଙ୍କୁ ବିଷ ଘାରୁ, ସବୁ ଗୋଳିଆ ପାଣି ହେଉ । ତେବେ ସମାଜରେ ଏକତା ଆସିବ, ଦେଶ ମିଶ୍ରଣ ହେବ । ଦେଶ ଏକ ହେବ । ମାନବ ସମାଜ ଏକ ହେବ । ପାଗଳା ବିମାରୁ ଗୁଣର ପରିମାପ ଧରି ହେବ ଶ୍ରେଣୀ ଓ ବିଭେଦ ସୃଷ୍ଟି ହେବ ।

ପୁଅ ହେଉଛି ମଣିଷର ବାପ ।

ଏକଠାରୁ ଅସଂଖ୍ୟ ବ୍ୟକ୍ତି ବିଶେଷଙ୍କୁ ମିଳାଇଲେ ଅର୍ଥାତ୍ ବ୍ୟକ୍ତି ବିଶେଷର ସମଷ୍ଟିକୁ ନେଇ ସମାଜ ଗଠିତ ହୁଏ ।

ମୂଁ = ଓଂ (ଅ, ଭ, ମ) = ସମାଜ ॥

ସମୂହ ଭାବରେ ଅସ୍ତିତ୍ୱ ବୋଧ କରି ଜୀବନ ରହୁଥିବାକୁ ସମାଜ କୁହାଯାଏ । ମନକୁ ନେଇ ବ୍ୟକ୍ତି ବିଶେଷ ଓ ମନକୁ ମିଳାଇଲେ ଗୋଷ୍ଠି ବିଶେଷ ବା ସମାଜ । ଯଥେଷ୍ଟ ସଂଖ୍ୟାରେ ବ୍ୟକ୍ତି ବିଶେଷ ଯଦି ଦୂଷିତ ହୁଅନ୍ତି, ସମାଜ ଦୂଷିତ ହୁଏ । ଅଗଣ୍ୟ ପୁଷ୍ଟ ବସ୍ତାଟା ଯାକରେ ଗୋଟି ଗୋଟି ଚାଉଳ ନଥାଏ । ଖୁଦ ଭଙ୍ଗା ଚାଉଳ, ଧାନ, ଗୋଡ଼ି କଣ୍ଟାଟା ଥିବ । ସାମାନ୍ୟ ଥିଲେ ଚାଉଳ ବସ୍ତା, ଅପମିଶ୍ରଣ ପରିମାଣ ଟିକିଏ ବେଶି ହେଲେ କଣ୍ଟା ଖାଲି ଖୁଦ, ଧାନ, ଗୋଡ଼ି ଇତ୍ୟାଦି । ଭଙ୍ଗା ଚାଉଳ, ଖୁଦ, ଧାନ, ଗୋଡ଼ି ଇତ୍ୟାଦି ଭିତରେ ମଧ୍ୟ ପ୍ରଭେଦ ଅଛି । ଭଙ୍ଗା ଚାଉଳ, ଖୁଦ ଅଳ୍ପ ମାତ୍ରାରେ ଚଳନୀୟ କିନ୍ତୁ ଧାନ ଓ ଗୋଡ଼ି ଅସହ୍ୟ । ବ୍ୟକ୍ତି ବିଶେଷ ଯଦି ନିଜକୁ ସଜାଡ଼େ ସମାଜ ଆପେ ଆପେ ସଜାଡ଼ି ହୋଇଯିବ । କେତେକ ପୁରୁଷ-ଉତ୍ତମ ବା ମହାତ୍ମା ଯଦି ସଠିକ୍

ଭାବେ କର୍ତ୍ତବ୍ୟ ସମ୍ପାଦନ କରି କର୍ମଚଞ୍ଚଳ ହୁଅନ୍ତି [illegible] ସେଥିରୂପ 'ସଙ୍ଗଚ୍ଛଧ୍ୱଂ ସଂ' [illegible] କର୍ମଚଞ୍ଚଳ ହୋଇ ଉଠେ, ସଠିକ୍ କର୍ମର ସ୍ରୋତ ଚାଲେ। ସନ୍ତତ ଧାରାରେ ମଣି ଛିଣ୍ଡି ପାରେ ନାହିଁ ବୋଲି କୁହାଯାଏ। ସନ୍ତତ ଧାରାକୁ ଚାଲୁ ରଖିବା ହେଉଛି ସରକାରଙ୍କର କର୍ତ୍ତବ୍ୟ। ସରକାର ହେଉଛି ସମାଜର କ୍ରିୟାଶୀଳ ଶକ୍ତି, ଅମୃତର ସ୍ରୋତକୁ ଚାଲୁ ରଖେ, ଧର୍ମକୁ ରକ୍ଷା କରେ ଓ ବାଟକୁ ଦେଖାଏ।

ଚାକିରି ପାଇବା ପାଇଁ ସେମାନେ ଉତ୍କଣ୍ଠିତ, କିନ୍ତୁ ଚାକିରି ଦେବାରେ ଅଲଗା ଅଲଗା। ଅଧିକାର ହାସଲ କରିବା ପାଇଁ ହକଦାର ସେଇମାନେ, ଯେଉଁମାନେ ପ୍ରଥମେ ସଠିକ୍ ଭାବେ ନିଜର କର୍ତ୍ତବ୍ୟ ସମ୍ପାଦନ କରନ୍ତି, ଯେଉଁମାନେ ଭାରତର ପ୍ରତ୍ୟେକ କୋଣରେ ଓ ବାହାରେ ଭାରତୀୟ ଭାବରେ ଉଦ୍‌ବୁଦ୍ଧ ଓ ଦେହ ପ୍ରାଣର ସ୍ପନ୍ଦନରେ ନିଜକୁ ମିଳାଇ ନେବେ। ନ ହେଲେ ମିଥ୍ୟାଚାର ଓ ଶଠତା ଚାଲୁଛି।

ଯେଉଁଠାରେ ଶିଳ୍ପୋନ୍ନତି ଘଟିଛି, ଅବସ୍ଥା ଧୀରେ ଧୀରେ ସମ୍ଭାଳି ସୁଧାରି ଉଠିଛି। କିନ୍ତୁ ତଥାପି ଏହି ଶିଳ୍ପ ଉନ୍ନତିର ଆନ୍ଦୋଳନରେ ଯେଉଁ ଶପ ଉଦ୍‌ଗାର ଉଦ୍ଭବ ତାକୁ ସମ୍ଭାଳିବା ପାଇଁ ନେତା ସମାଜ ଭିତରେ ସମ ସ୍ପନ୍ଦନର ଭାବ, ସମତାଳର କର୍ମ ଓ ପରିପୂରକ ଭାବେ ଶିକ୍ଷା ଓ କାରିଗରି ଦକ୍ଷତାର ଉନ୍ନତି। ଏହି ଉନ୍ନତି ନଥିଲେ ଅଶାନ୍ତି ଅନିର୍ବାର୍ଯ୍ୟ। ଯଦି ଥାଏ ଶିଳ୍ପ ପ୍ରସାର ଆପେ ଆପେ ହୋଇଯିବ, ଚେଷ୍ଟା କରିବା ଦରକାର ପଡ଼େନି। ପ୍ରତ୍ୟେକ ବିଭାଗ ବା ଲକ୍ଷ୍ୟରେ ଆଗେଇବା ଦିଗରେ ଗୋଟିଏ

ନିମିତ୍ତ ଧାର୍ଯ୍ୟ ଅଛି । ଆଗ ପଛ କଲେ ଅବାଟ, ବିପଦ । ଲକ୍ଷ୍ୟ ହାସଲ ହୁଏ ନାହିଁ-ଅଶାନ୍ତି ଉପୁଜେ ।

ମନେ ପଡ଼ୁଛି ଧେବର ଭାଇ କଥା । ହୃଷିକେଶ, ଖଣ୍ଡ ସତାବନ ସାଲ । କେଦାର-ବଦ୍ରୀରୁ ଫେରି ଠନାଦେଶ ଅନ୍ଧକାରେ ହୃଷି-କେଶରେ ଥିବା ଶିବାନନ୍ଦ ଆଶ୍ରମରେ ଅବସ୍ଥାନ କରିଥାଏ । ଶିବାନନ୍ଦଙ୍କର ସନ୍ଧ୍ୟାକାଳ ବୈଠକରେ ମୁଁ ଉପସ୍ଥିତ ରହେ ।

ଏପରି ଗୋଟାଏ ବୈଠକ ଚାଲିଛି, ହଠାତ୍ ଭିଡ଼ଭିତରେ ଜଣେ ଅନୁଚର ସନ୍ୟାସି ଆସି ସ୍ୱାମୀ ଶିବାନନ୍ଦଙ୍କୁ କହିଲେ— 'ଧେବର ଭାଇ' ! ଆଉ ଗୋଟିଏ କୁର୍ଚ୍ଚି ଆସିଲା, ଶିବାନନ୍ଦଙ୍କର ବାଁ ପଟେ ପଡ଼ିଲା । ଧେବର ଭାଇ ଆସି ସେଇଥିରେ ବସିଗଲେ । ଆସିବାର କାରଣ ପଚାରିବାରୁ ସେ ଗୋଟିଏ ପ୍ରଶ୍ନ ନେଇ ଆସିଥିବା କଥା କହିଲେ । ସେତେବେଳକୁ ସେ କଂଗ୍ରେସର ସଭାପତି ଥିଲେ । ଭାରତ ସ୍ୱାଧୀନତା ପାଇବାର ଦଶ ବର୍ଷ ବିତି ଯାଇଥିଲା ।

ସେ କହିଲେ—ଅନେକ କଷ୍ଟ ପରେ ଆମେ ସ୍ୱାଧୀନତା ପାଇଛୁଁ । ବ୍ରିଟିଶ୍ ବିଦେଶୀ ଥିଲା । ସାମାଜିକ ଓ ଅର୍ଥନୈତିକ ଉନ୍ନତିରେ ତାର ବିଶେଷ ଆଗ୍ରହ ନଥିଲା । ଆମର ସ୍ୱାଧୀନତା ପାଇଁ ଲଢ଼ି-ବାର ଲକ୍ଷ୍ୟ ଥିଲା ଦେଶରେ ସାମାଜିକ, ଅର୍ଥନୈତିକ ଇତ୍ୟାଦି ଅବସ୍ଥାର ଉନ୍ନତି ଘଟାଇବା । ସ୍ୱାଧୀନତା ଆସିଲା । ଦେଶୀୟ ସରକାର ଗଠନ କରାଗଲା । ଉଦ୍ଦେଶ୍ୟ ପ୍ରତି ଲକ୍ଷ୍ୟ ରଖି ଭଲ ଭଲ ନିୟମ କାନୁନ୍ ପ୍ରଣୟନ କରାଗଲା । ହେଲେ କ'ଣ

ହେଉ ? ଡାନୁନ୍‌ ଘୋଟେ ଡାନୁନ୍‌, ହେଲ୍ଥ, ଫଲ କିଛି ହେଉ ନାହିଁ । ଉଦାହରଣ ସ୍ୱରୂପ ଏଗ ସବକାର ସାଦନା ଆଇନ୍‌ ପ୍ରଣୟନ କରିଥିଲେ । ଯାହାକାକୁ ହେବ ଯେ ଏହା ଗୋଟିଏ ପ୍ରଗତିଶୀଳ ଆଇନ୍‌ ଥିଲା । ଆଇନ୍‌ ଯାହେଉ ଆଇନ୍‌ ରହିଲା, ଲୋକେ ମାନିଲେ ନାହିଁ । ତାହାର ପ୍ରଭାବରେ ଲୋକଙ୍କର ବୁଦ୍ଧି ବଦଳିଲା ଓ ସେ ଆଇନରେ ଥିବା ନିୟମର ପାଳନ ହେଲା । ସ୍ୱରାଜ୍ୟ ପ୍ରତିଷ୍ଠିତ ହେବାପରେ ଅନୁଷ୍ଠିତ ହେବା ଆଇନ୍‌କୁ ଲୋକେ ମାନୁ ନାହାନ୍ତି ବା ପୂର୍ଣ୍ଣ ସୁଯୋଗ ନେଇପାରୁ ନାହାନ୍ତି । ଏ ପରିସ୍ଥିତିରେ କ'ଣ କରାଯିବ ?



ସ୍ୱାମୀ ଶିବାନନ୍ଦ

ଶିବାନନ୍ଦସ୍ୱାମୀ ଟିକଏ ହସି କହିଲେ—

'ଭଗବାନଙ୍କର ନାମ ନିଅ'

ଧେବର ଭାଇ ବୁଝିପାରିଲେ ନାହିଁ, ଅଥବା ଶିବାନନ୍ଦସ୍ୱାମୀ ବୁଝିପାରିଲେ ନାହିଁ ବୋଲି ଭାବିଲେ । ପ୍ରଶ୍ନଟାକୁ ଅନ୍ୟ ବାଗରେ ପଚାରିଲେ, ସେ ବୁଝାଇ କହିଲେ—

ଅନେକ ଦିନ ହେବ ମୁଁ ଭାବୁଛି ଯେ, ଏପରି ଗୋଟିଏ ସାଧୁ ସନ୍ଥ ସଙ୍ଗଠନ ହେଲେ ଭଲ ହୁଅନ୍ତା, ଯାହା ଗାଁ ଗହଳରେ ଲୋକଙ୍କୁ ନିଜସ୍ୱ ଭାବନାର ତାତ୍ପର୍ଯ୍ୟ ବୁଝାଇ ସୁ-ସମାଜ ଗଠନ ଲକ୍ଷ୍ୟରେ ପ୍ରଗତିର ବାଟର ଦିକ୍ ଦର୍ଶକ ହେବ ।

ଶିବାନନ୍ଦସ୍ୱାମୀ ସଦାନନ୍ଦସ୍ୱାମୀଙ୍କୁ ବୁଝାଇବାକୁ କହିଲେ । ସେ କହିଲେ—ଆମେ ହେଲୁ ସନ୍ୟାସୀ, ସର୍ବନ୍ୟାସ କରିଛୁ । ଗତକାଲି କ'ଣ ହେଲା, କାଲିକି କ'ଣ ହେବ ସେ କଥା ଆମେ ଚିନ୍ତା କରୁ ନାହୁଁ । ଶଙ୍ଖ ତଳେ ପାଣି ଯେପରି ଥାଏ ଆମର ସେହି ଅବସ୍ଥା । ଉପର ପଟ୍ଟ ପାଣି ଆସେ, ତଳ ପଟକୁ ଚାଲିଯାଏ । ଶଙ୍ଖ ତଳେ ପାଣି ଚାଲୁ ଥାଏ । ସ୍ଥିର ନ ଥାଏ । ଆମର ଅବସ୍ଥା ସେହିପରି । ଆମେ କୌଣସି ସଙ୍ଗଠନର ଦାୟିତ୍ୱ ନେଇ ପାରିବୁ ନାହିଁ ।

ମୋତେ ଲାଗିଲା ଯେ ଧେବର ଭାଇ ନିରାଶ ହୋଇ ଚାଲିଗଲେ । ଭଗବାନ୍ ଧାର୍ମିକ ଭାବେ ଏତ କଥା କହିଥିଲେ । ଅଭାବ ବା ଅମେଳ କାହିଁକି କୋ'ଠି ? ଶିବାନନ୍ଦସ୍ୱାମୀ ଭଗବାନଙ୍କୁ ଡାକିବାକୁ କହୁଥିଲେ, ସେଟା ନିଶ୍ଚୟ ଠିକ୍ ହୋଇଥିବ । କିନ୍ତୁ

ପେଟର ଭାଇ ପାଇଁ ସେ ହୋଇଥିଲେ ପୋଥିବାଇଗଣ । ସାଧୁ-
ମାନଙ୍କୁ ସେ ଯେଉଁ ଅବ୍ଧାନ ଦେଇଥିଲେ ସେ ମଧ୍ୟ ଠିକ୍ । କିନ୍ତୁ
ଅସ୍ୱାଭାବିକ । ତାଙ୍କର ସେହି ପ୍ରଶ୍ନ ମୋ ମନ ଭିତରେ ମଧ୍ୟ
ଘେଞ୍ଚୁଥିଲା । ସବୁଲା କଣ୍ଟା ଫୁଟିଯାଉଛି । ଅସ୍ପଷ୍ଟ ଅନୁଭୂତିକୁ ସ୍ପଷ୍ଟ
ଭାବରେ ଜାଣିବାକୁ ଚାହୁଁଥିଲି । ଆଜି ତାର ଉତ୍ତର ମିଳିଲା ।

ଓଡ଼ିଶା ସ୍ୱାଧୀନ ଥିଲା । ଗୌଡ଼, କର୍ଣ୍ଣାଟ, ଉତ୍କଳ, କଳବର୍ଗ
ସବୁ ଗୋଟିଏ ରାଜ୍ୟ ଥିଲା । ରାଜା ଥିଲେ ଜଗନ୍ନାଥଙ୍କର ଝାଡ଼ୁ-
ଦାର । ରାଜ କାର୍ଯ୍ୟକୁ ସେ ସମାଜକୁ ନିର୍ମଳ ରଖିବା କାର୍ଯ୍ୟ
ବୋଲି ଭାବୁଥିଲେ । ରାଜ କାର୍ଯ୍ୟ ପାଇଁ ବୁଦ୍ଧିଦାତା ଥିଲେ ମନ୍ତ୍ରୀ
ମଣ୍ଡଳ । ମନ୍ତ୍ରୀମାନେ ବିଜ୍ଞ ଓ ଯୋଗ୍ୟତା ବେଦଜ୍ଞ ବଟୁର ଓ
ମଣ୍ଡଳୀମାନେ ନୈତିକ । ତେଣୁ ଭୋଗରେ ଲିପ୍ତ ନ ଥିଲେ, ବ୍ରହ୍ମକୁ
ଜାଣିବାରେ ସଚେଷ୍ଟ ଥିବା, ଦୋଷରହିତ, ବିଶ୍ୱାସ ଯୋଗ୍ୟ
ବ୍ରାହ୍ମଣମାନେ ନୈତିକ ଭାବ ଧାର୍ମିକ ଓ ନିରପେକ୍ଷ ଭାବରେ ରାଜ-
ଧର୍ମର ପଥ ଦର୍ଶାଉ ଥିଲେ । ରାଜ୍ୟରେ ଅସନ୍ତୋଷ ନଥିଲା ।
ଏଥିରେ ଜନତାର ମନ ଖୁସି ଥିଲା । ରାଜକାର୍ଯ୍ୟ ନିଜର ଦାୟିତ୍ୱ
ବୋଲି ଭାବୁଥିଲେ । ସେହେତୁ ବଢ଼ି ଉଠିଥିଲା ପାଇକ ସେନା । ଯୁଦ୍ଧ
କୌଶଳ ଥିଲା ଲକ୍ଷ୍ୟ ଜୟର ଲକ୍ଷ୍ୟ ଯନ୍ତ୍ର ସେନାର ଆକର୍ଷଣ ।
ଶତ୍ରୁବ୍ୟୂହ ଫାଟିଗଲେ, ସେହି ଫାଙ୍କଦେଇ ଓ ଗୃହ ଉପରୁ ପାଣି ଭଳିଆ
ଖେଳାଇ ହୋଇପାରନ୍ତି । ଶତ୍ରୁ ସେଥିରେ ପଡ଼ିଯାଏ । ଶତ୍ରୁ
ଡ଼ରୁଥିଲେ । ଯୁଦ୍ଧରେ କଳିଙ୍ଗର ଜଗବାଣା ଥିଲା ସ୍ୱାଭାବିକ,
ସାଧାରଣ କଥା ବସମ୍ପର୍କୀୟ ଥିଲା ଖବର, ଇତିହାସ ସୃଷ୍ଟି କରିଥିଲା ।

ଦୁର୍ଦ୍ଦାନ୍ତ କଳିଙ୍ଗ ସେନାର ମହାଭାରତ ଅମଳରୁ ସୁନାମ ଥିଲା । ଏମାନେ ଦୁର୍ଯ୍ୟୋଧନ ପକ୍ଷରୁ ଲଢ଼ିଥିଲେ । ଯୁଦ୍ଧ କୌଶଳ ହେତୁ ଭୀମକୁ ଗୋଟିଏ ଦିନ ଅଟକ ରଖିବା ଦରକାର ପଡ଼ିଲା । ବାହାରି ପଡ଼ିଲେ ବୀର କଳିଙ୍ଗ ସେନା । ମାରିବା ବାଣ ବା ଭଙ୍ଗିବା ବାଳ ଆଉ କେହି ନଥିଲେ । ପାହାଡ଼ ଓ ଗଛକୁ ଟେକି ଯୁଦ୍ଧ କଲାବେଳେ ଭୀମଙ୍କୁ ପଥର ଖଣ୍ଡ ଧରି ହାତୀ ଉପରେ ହାତୀ ଭଳି ଅକାରଣ କରି ଭୀମଙ୍କୁ ଅସ୍ତବ୍ୟସ୍ତ କରିଥିଲେ । ଭୀମ ଗୋଟେ ହାତୀ ଧରି ତାକୁ ନିର୍ମୂଳ କଲା ସହିତ, ଆଉ ଗୋଟେ ହାତୀ ମାଡ଼ି ଆସୁଥାଏ । ସନ୍ଧ୍ୟା ହେଲା । ଦୁର୍ଯ୍ୟୋଧନ ସେ ଦିନ ତାର ଲକ୍ଷ ହାସଲ କରିପାରିଥିଲା । ସେନାପତି ଶ୍ରୁତାୟୁଷ ସହ କଳିଙ୍ଗ ସେନା ଆତ୍ମବଳି ଦେଇଥିଲା ।

ଏହି ସୁନାମ ରକ୍ଷା କରୁଥିବା ପଡ଼ୋଶୀଙ୍କ ଭିତରେ ଜଗାଇ ଥିଲା ଭୟ ହିଂସା ଓ ଦ୍ୱେଷ । ଦାସୀପୁତ୍ର ଅଶୋକ, ନିଜକୁ ଶୌଣ୍ଡ ସାବ୍ୟସ୍ତ କରିବାକୁ ଯାଇ, ଭ୍ରାତୃ ହତ୍ୟା କରି ରାଜ୍ୟ ଅଧିକାର କରିବା ପରେ ନିଜକୁ ସାର୍ବଭୌମ କରିବାକୁ ଚାହିଁଥିଲା—ଅତୃପ୍ତ ଆତ୍ମାର ତୃପ୍ତି ପରିତୋଷ । ଜିଗୀଷାର ହିଂସା ହେତୁ ପାଲଟିଗଲା ଚଣ୍ଡାଶୋକ—ପୁଣି ଶତେ ଭାଗ ବିଷଦ । ସେଥିରେ ଅନ୍ତରାୟ ଥିଲା, କେବଳ କଳିଙ୍ଗ । ଯେହେତୁ ସେ ଥିଲା ଦୈବ ବିଶ୍ୱାସୀ, ଶିବଭକ୍ତ, ସ୍ୱାଧୀନ ଚେତା ଓ ବୀର । ସ୍ୱଭାବ ହେଲା ଓ ସ୍ପୃହିତ ଚାଲିଲା । ହାତୀ ଅସିଳ ଓ ଗ୍ରୀସୀୟ ଅନୁକରଣରେ ତେରଛା ସମର ଧାର ବ୍ୟୂହ ଓ ବର୍ମର ବ୍ୟବହାର ଶିକ୍ଷା ଚାଲିଲା ।

ଯୁଦ୍ଧ ହେଲା ।

ଭୁହାଇ ଭୁହାଇ ଆସିଲେ କଳିଙ୍ଗ ସେନାର ଲହଡ଼ି । ଚଣ୍ଡାଶୋକର ହିସାବ ଥିଲା, ପ୍ରସ୍ତୁତ ଥିଲା ! ଜିଦ୍ ଥିଲା । ଲହଡ଼ି ଛଟେଇ ପାରିଲେ ଲହଡି ଆପେ ଭାଙ୍ଗିଯାଏ । ପ୍ରଥମ ଦୁଇ ତିନି ଥର ଲହଡ଼ି ଉଠେଇ ନେଇଥିଲା । ଚଣ୍ଡାଶୋକ ସୁଅରେ ନ ପଡ଼ି ସମ୍ଭାଳି ନେଇଥିଲା । ହିସାବ ଥିଲାଠ-ଭାଇଦା ଶିଖିଗଲା । ଅବସ୍ଥା ଅପ୍ରତିଦ୍ୱନ୍ଦ୍ୱ ହେଲା ।

କଳିଙ୍ଗର ଲହଡ଼ି-ବ୍ୟୂହ ଧକ୍କା ଦେଇ ଭାଙ୍ଗି ଯିବାପରେ ଯୁଦ୍ଧ ପ୍ରଚେଷ୍ଟାର ଐକ୍ୟକରଣ ଗଲା । ତାଙ୍କ ବୀର ସୈନିକଙ୍କୁ ଛାଡ଼ଛାଡ଼ ଭାବରେ ନିଜର ବୁଦ୍ଧିରେ ବାହାଦୁରୀ ସହ ଗୋଳ ଯୁଦ୍ଧ କରିବାକୁ ଦଉଡ଼ିଥିଲା ଓ ଅଶୋକଙ୍କର ପ୍ରଶାଖା ବ୍ୟୂହଦ୍ୱାରା ମୂଳପୋଛ ହୋଇ ଯାଇଥିଲା । କଳିଙ୍ଗର ସେ ସମୟରେ ଯଥେଷ୍ଟ ଭାବରେ ବା ଆଦୌ ସାଞ୍ଜୁଆ ହାତୀର ବ୍ୟବହାର ନ ଥିଲା ଓ ଅଶୋକଙ୍କର ଥିଲା । କଳିଙ୍ଗ ସେଥିକୁ ହଟି ନୂତନ ବ୍ୟୂହ ସଜାଡ଼ିବାକୁ ପ୍ରୟୋଜନ ମନେ କରି ନଥିଲା ଯେହେତୁ ଯୁଦ୍ଧ ସମୟରେ ଶତ୍ରୁର ଷଯୁ ଷଠ ହେବୁ ଅଦ୍ଭୁତ କାର୍ଯ୍ୟ ବୋଲି ମନେ କରୁ ନଥିଲା । ଯୁଦ୍ଧ ଚାଲିଥିଲା ସମୟରେ ଅନିଶ୍ଚିତତା ଥାଏ । ଅବଶେଷ ଓ ଆହତ ପ୍ରାପ୍ତ ଲୋକଙ୍କର ହାହାହାନ୍ତି ହାଟକୋଠ ଯୁଦ୍ଧର ପରିସମାପ୍ତି ଆଣି ଥାଏ । ଏମିତିଆ ଦୁର୍ଦ୍ଦାନ୍ତ ଚଣ୍ଡାଶୋକ ଧଉଳି ପାହାଡ଼ ଉପରେ ଉପବିଷ୍ଟ ହୋଇ ଯୁଦ୍ଧ ସଞ୍ଚାଳନାର ପରିଚାଳନା ନେଇଥିଲା । ସନାଭିମାନ ଥାଇ ନିଜ ପାଖରେ ଯୁଦ୍ଧ ବାହାରେ ବଛା ବଛା ବିଶ୍ୱାସୀ ଯୋଦ୍ଧାଙ୍କୁ ନେଇ ପାର୍ଷ୍ଣିଗ୍ରାହ ରଖିଥିଲା । ସେମାନଙ୍କୁ ଯୁଦ୍ଧ ଶ୍ରମ ବାଧୁ ନଥିଲା । ଏମାନଙ୍କୁ ଲଗାଇ ଦୁଇ ପହର ସେହି ଝାଳନାଳ ହାଲିଆ

ଶ୍ରେଣୀ ଓ ଧରମର ଲୋକଙ୍କୁ ମୂଳପୋଛ କରାଇ ଏକ ଅସ୍ତ୍ର-ବଳମାତ୍ର ଅଟ୍ଟହାସ ସଦୃଶ ସାମ୍ରାଜ୍ୟ ଗଢ଼ିଥିଲା ।

କଳିଙ୍ଗ ସେନା ନିଜର ପରଂପରା ଅନୁସାରେ ଶେଷ ପର୍ଯ୍ୟନ୍ତ ଲଢ଼େଇ ଧନ୍ୟ ଆତ୍ମବଳି ଦେଇଥିଲା । ଯେପରେ ହେଉ, ବଳ୍ୟାନ୍ତ ମୂଳପୋଛ ହାଣକାଟରେ ଜୟ ବା ପରାଜୟ ପ୍ରାୟ ସମାନ ଥାଏ । ମହାଭାରତ ଯୁଦ୍ଧ ପରେ ହାରିବା ପକ୍ଷରୁ ତିନି ଜଣ ଓ ଜିତା ପକ୍ଷରୁ ମାତ୍ର ପାଞ୍ଚ ଜଣ ବଞ୍ଚିଥିଲେ । ପର ମୁହୂର୍ତ୍ତରେ, ବିଜେତା ହେବାର ନିଶା ଛାଡ଼ି ହୋଇ ଆସିଲା ପରେ ଲୋକ ବଳ ହ୍ରାସ ଦେଖି ଅଶୋକ ଭାଙ୍ଗି ପଡ଼ିଥିଲା । ବଞ୍ଚି ରହିଥିବା ହେତୁ ଜାଣିଛୁ ବୋଲି କୁହାଗଲେ ମଧ୍ୟ, ଯୁଦ୍ଧ ରାକ୍ଷସ ଭାବ ଶେଷ ହୋଇ ଯାଇଥିଲା ।

ସେତେବେଳେ ଖଣ୍ଡଗିରି ଗୁମ୍ଫାର ସନ୍ନ୍ୟାସୀର ଅମୃତ ବାଣୀ ତାଙ୍କ ହୃଦୟଙ୍ଗମ ହେଲା ।

"ପ୍ରକୃତ ଜୟ ତାକୁ କୁହାଯାଏ ଯେଉଁଥିରେ ଦୁଇ ପକ୍ଷର ଜୟ ହୁଏ । କେବଳ ପ୍ରେମ ତାହା ଦେଇଥାଏ ।"

ହିଂସା ଦୁଇ ପକ୍ଷର ହାନି କରିଥାଏ, ମଦ ଓ ଏକ ପକ୍ଷ ଗର୍ବ-ମୋହରେ ନିଜକୁ ବିଜେତା ବୋଲି ଭାବିଥାଏ ।

ଅଶୋକ ଅନୁତପ୍ତ ହେଲା ।

ପ୍ରେମର ଦୀକ୍ଷା ନେଇ, ଧର୍ମାଶୋକ ହେଲା । ଅମୃତତ୍ୱ ପାଇଲା ।

କଳିଙ୍ଗ ନିଜ ରକ୍ତରେ ଚଣ୍ଡାଶୋକର ବିଷ ଧୋଇ ତାକୁ ଧର୍ମାଶୋକ କରିଥିଲା । ଯିଶୁ ମଧ୍ୟ ତାହା କରିଥିଲେ ।

ଈଶ୍ୱରଙ୍କ ପୁତ୍ର ଯିଏ ତାର ମା ନିଷ୍କଳଙ୍କିନୀ । ଅମୃତର ସନ୍ତାନ ଯିଏ ତାର ମା ଅମୃତମୟୀ । ଯାଉଯୋନି ପ୍ରସୂତ ସଇତାନଙ୍କ ତଥା କଦର୍ଥ କରି ଅନର୍ଥ ଘଟାନ୍ତି । ଶାସ୍ତ୍ର ପ୍ରମାଣ ଓ ସତ୍ୟ ଘଟଣାକୁ ନିଜକୁ ସୁହାଇଲା ଭଳି ଭୁଲ ହିସାବ ବାହା ।

ଯୁଦ୍ଧ ହେଉଛି ଦୁଇ ଚିନ୍ତାଧାରାର ସଂଘର୍ଷ, ଏକ ପକ୍ଷର ଅପର ପକ୍ଷ ଉପରେ ପ୍ରଭାବ ପକାଇବା । ସେ ଦୃଷ୍ଟିରୁ କଳିଙ୍ଗର ଜୟ ହୋଇଥିଲା । ଯେ ଲକ୍ଷରୁ ହଟେ ତାର ହାରିବା କଥା ଉଠେ ।

କଳିଙ୍ଗ ପରାଜୟ ହୋଇ ନ ଥିଲା । ପଳାତକ ହେବ । ବଥାନ୍ତ ଗୁଡ଼ ।

## ଜବାବ

କିନ୍ତୁ ପଳାତକ ସ୍ୱୟଂ ଧ୍ୱଜ ଯୋଦ୍ଧାର ଦାୟାଦମାନେ କହିବେ —ଏତେ ଲୋକେତ ମରିଗଲେ ବାହାଦୁରି ଆଉ କେଉଁଠି ରହିଲା ? ଏମାନେ ପେଟ ହୋଇ ଖାଇବାର ଲୋକଙ୍କୁ ବୁଦା ଅନ୍ଧୁଆଳରେ ବୁଝିଲାଇ ନେଇ ମସ୍ତକର ହୋଇ ହଟହଟାରେ ଗଡ଼ି ଉଠିଥିବା ମଶାଣିରେ ଥିବା ଭଙ୍ଗା ହାଣ୍ଡିରେ ପଇସା ପଖାଳକୁ ଗିଳି ଚଳା ଖଯଶର କୁହ ଭରି ନେବେ ବାହାଦୁରି । ତା ଯୁଦ୍ଧ ନୁହେଁ । ଯୁଦ୍ଧମାନେ ନିରୀହ ଲୋକଙ୍କୁ ପଛପଟରୁ ଲୁଚି ଲୁଚି ବାହାପୁଷ୍ଟ ମାରିବା ନୁହେଁ । ବିପକ୍ଷ ଯାଉଛି, ମନ ବଳୁଛି

ହୋଇଛୁ, ଚନ୍ଦ୍ରାଧାର ଆଜ କଣ ହୋଇପାରେ ? ସେ ପଟେ କୁଁଅଡ଼େ ଧର୍ମର ସୁବିଧାର ବାଉଁଶ ନଳୀ ଭିତରେ ନାଗସାପ ପୂରାଇ, ଜନ୍ତୁଗୁଡ଼ାକୁ ଦଉଡ଼ି ସାହାଯ୍ୟରେ ବାନ୍ଧି ଦେଇ, ଶୋଇଥିବା ଶତ୍ରୁକୁ ଉପାଘାତ କରନ୍ତି । ତାହାର ବେଣ୍ଟା ! ଶିର ପ୍ରଶିରରେ ପଚାଶ ରକ୍ତ, ଛନ୍ଦ ଦେଉଥିବ ହୃଦ୍, ମନେ ମନେ ମାର୍କ୍ସବାଦୀ ଓ ପ୍ରଗତିଶୀଳ, ପିନ୍ଧି ପାରନ୍ତି ଖଦଡ଼ ଓ ସମ୍ପର୍କ ରଖିଥିବେ କଂଗ୍ରେସ ସହିତ; ସ୍ୱାର୍ଥ ପାଇଁ ବିବାଦ ହୋଇଥିବ ବ୍ୟକ୍ତିର ପାଇଁ ପେରମିଟ୍ — ଜନ୍ମଗତ ଦୋଷ ହେତୁ କର୍ମର ପ୍ରେରଣା ଓ ପ୍ରବୃତ୍ତି ଗୋଟାଏ ସିଦ୍ଧ ସର୍ପ ଦଂଶନର ଫଳ ।

ଦେଶ ନାହିଁ, ଜାଲ ନାହିଁ, ପାପ ନାହିଁ, ବଟ୍‌ନର-ଷ୍ଟ୍ରାପରେ କୁନ୍ତ୍ରଙ୍କର ଭାନକୁଣ୍ଡିଆ । ସୁବିଧା ଅନୁସାରେ ଖୋଳ ବଦଳାନ୍ତି । କର୍ମଫଳ ହେତୁ ପରିବେଷ୍ଟନୀ ଅସହ୍ୟ ହେଲେ ମାଡ଼ି ଆସିବେ ବାନ୍ଧବର ସାଜ ଓ ପ୍ରକୃତିଗତ କର୍ମ ପ୍ରବୃତ୍ତିର ପୁନରାବୃତ୍ତି ପାଇଁ ଓ ଲଗିଯିବେ ସମ୍ପୂର୍ଣ୍ଣ ଭାବରେ ସମାଜର ଉପୃତ୍ତି ଆଣି ଓ ସାମ୍ୟ-ବାଦର ପ୍ରସାର ପାଇଁ ।

ଏପଥି ସୁବିଧାବାଦୀ ହୋଇ ବିଧର୍ମୀ ଅମଳରେ ସହଜ ପନ୍ଥା ଅବଲମ୍ବନପୂର୍ବକ ଧର୍ମ ବଦଳାଇଲେ ଓ ମୋଟା ବେତନ ଲାଳ-ସାରେ ନିର୍ଲ୍ଲଜ ଭାବରେ ବିଦେଶୀଙ୍କୁ ସାହାଯ୍ୟ କରି ସାମ୍ରାଜ୍ୟ ପ୍ରତିଷ୍ଠା କରାଇ ଥିଲେ ଓ ଦେଶରେ ନିଜର ଭବିଷ୍ୟତ ପ୍ରାଦେ-ଶିକ ସାମ୍ରାଜ୍ୟର ସ୍ୱନାର ସ୍ୱପ୍ନ ଦେଖୁଥିଲେ ।

ଏପରି ସାମ୍ୟବାଦୀଙ୍କର ତ କଥା ନାହିଁ, କେତେ ମଧ୍ୟ ଚୈତ୍ରବିଲାସୀ, ଅଳ୍ପ ଥୋକେ ଯେ ମାଡ଼ି ଆସିଲେ ସେମାନେ ଗୁଣ୍ଡ୍ରସ କେନ୍ଦ୍ର ଶବ୍ଦରୂପକ ସଂସ୍କୃତ ନେଇ ଆସିଲେ, କେଉଁ କାରଣରୁ କି ସେମାନଙ୍କୁ ମଧ୍ୟ ଶବ୍ଦ ଢାଳୁଛନ୍ତି ଓ ସେମାନେ ଲୋଭ ଓ କୁକୁର ଗୁଣ ଧରିଲେ ହିଁ ଦେଇ ଦାନ୍ତ ଦେଖାଇବାରେ ଲେଖି। ସବୁ ପ୍ରକାର ସ୍ୱାଦକୁ ଲୁଣ, ଲଙ୍କା, ତେନ୍ତୁଳିର ଉତ୍କଟ ପ୍ରୟୋଗ ଉପରେ ନିର୍ଭରଶୀଳ କରନ୍ତି। ବସ୍ତୁର ନିଜର ମୌଳିକ ସ୍ୱାଦୁ ପ୍ରତି ଅନ୍ଧ। ଯାହା କୌଣସି ବସ୍ତୁ ବା ଗୁଣର ମୂଲ୍ୟବୋଧ ଜ୍ଞାନ ସେଥିପାଇଁ ଉତ୍କଟ ଓ ତୀବ୍ର ଗୁଣର ପ୍ରଚ୍ଛଦପଟରେ ଧରି ନାହାନ୍ତି। ଯାହା ଭୁଲାଭୁଲି ବର୍ବର-ବର୍ତ୍ତୁଳ ଓ ଯାନ୍ତ୍ରିକ ସୂତ୍ରଧାର ଦୃଷ୍ଟି କୋଣରୁ। ସେମାନେ ସ୍ୱାଧୀନତା କଣ ଜାଣି ନଥିଲେ। ନିଜର ସଂଖ୍ୟା ବୋଲି କିଛି ନାହିଁ। ସ୍ୱଭାବ କଠୋର ସବୁ ରାଜକାର୍ଯ୍ୟ ଧନ୍ଦା ଥିବ କି ନା? କେଉଁ ଯୁଗରେ ଜଣେ ରାଜ୍ୟ ଖଣ୍ଡେ ମାଗୁ-ଥିବ ଯେ, ଶୃଗାଳ ଭଳିଆ ଏଣ୍ଡ ରୂପକ ହୋଇ ପଡ଼ୋଶୀଙ୍କୁ ଲଗାଇବାକୁ ଯାଇ, ରୂପକ ଟେକି ପଡ଼ିବାରୁ ଗୃହ ଜଣକଦ୍ୱାରା ନିନ୍ଦିତ ହୋଇଥିବ। ପାଣି ଠୋପା ଭଳିଆ ଉଡ଼ିଯାଇ ପାଇଥିବ। ଯୋଗିପୁଅ ବୋଲି ଶ୍ୱଶୁର ଘର ପର୍ଯ୍ୟନ୍ତ ଯାଇ ପାଉଥିବ ଓ ନିର୍ବନ୍ଧରେ ଫେରିଥିବ ଯେ, ସେ କଥା ନେଇ ବାହାଦୁରୀ ଦେଖାଉଛନ୍ତି। ଏମାନେ ବାଟରେ ଘାଟରେ ଶୃଙ୍ଖଳାବୋଧ୍ୟ ପ୍ରସୂତ କରି, ସଂସ୍କୃତହୀନ ପଦ୍ୟାବଳୀରେ ଅନର୍ଗଳ ଭାଷଣର ପ୍ରତିଦ୍ୱନ୍ଦ୍ୱିତା ଚଳାଉଥିବେ।

ଆଜି ଥୋକେ ଅସିଦ୍ଧ ଲେଖକମାନଙ୍କର ଜନ୍ମଗତ ଦୋଷ ଏତେ ପ୍ରଖର ଯେ ଜାତି ସ୍ୱଭାବରେ ଉଣ୍ଡିବା ଲେଖ ବୋଲି

ଖ୍ୟାତ ଅଛି । ସେମାନଙ୍କୁ ପାଇମୁଖିଆ ଗ୍ରନ୍ଥରେ ଗଠନ କରି ଜଳନ୍ତ ବ୍ୟକ୍ତିତ୍ୱକୁ ମାନିଛନ୍ତି, ଘୋଡ଼ାଇଛନ୍ତି ଓ ପ୍ରଶ୍ରୟ ଦେଇଛନ୍ତି । ଆଜିର ଓ, ଏ ଯୁଗରେ ଆମ୍ଭ ଗଢ଼ିବ ପିମ୍ପୁଡ଼ି ।

ଏହିପରି ଅନେକ ଓ ସେହିପରି ତାଙ୍କ ପରମ୍ପରା । ସେମା-ନଙ୍କର ଗୃହଲକ୍ଷଣ ଶଠତାଭରା, ବାହ୍ୟିକ ଯୌନକେନ୍ଦ୍ରିକ କର୍ମପ୍ରବୃତ୍ତି ଲୁଣ୍ଠନ ଓ ଦ୍ୱାରରେ ପଡ଼ିଲ ଗଲେବେ । ଏମାନଙ୍କ ପାଖରେ ଭଲ ହେବା ମାନେ ଦୁର୍ବଳତା, ଗୁଣ୍ଡ ହେବା ମାନେ ନିର୍ବୋଧତା, ସତ୍ ଚରିତ୍ର ମାନେ ନପୁଂସକତା ।

ଏମାନେ ମୁଷ୍ଟିମେୟ ଇଂରେଜୀଙ୍କୁ ସାମ୍ରାଜ୍ୟ ଗଠନରେ ସାହାଯ୍ୟ କରିଥିଲେ ଓ ସହଜ ପନ୍ଥା ଅବଲମ୍ବନପୂର୍ବକ ସୁବିଧାରେ ଦୃଢ଼ତର ମାରି ନେଇଥିଲେ; ସେମାନଙ୍କର ପଦାନୁସରଣ କରି ପ୍ରଗତିଶୀଳ ହୋଇଯାଇଥିଲେ । ବର୍ତ୍ତମାନ ସେମାନେ ଚୀନର ପଦାନୁସରଣ କରି ଆସିଲେ—'ଅସୁ ଖାଇବାକୁ ତ ମିଳିବ' ଯୁକ୍ତି ବାଢ଼ୁଛନ୍ତି । ଅବଶ୍ୟ ସେମାନଙ୍କୁ ଖାଇବାକୁ ମିଳିବ, କିନ୍ତୁ ଭିତରେ ଯେପରି କଲଫିଡା ବାଳ ସବୁ ମୁହାଁର ମଳାରେ ଅଛନ୍ତି । ତା ପରେ କଲଫିଡା ପାଇଁ ତାଙ୍କ ଭିତରେ ଲାଗିବ ହାଣକାଟ । ଅଗ୍ର-ବର ଭୁଷ୍ଟା ଦସ୍ୟୁ ବେଗରେ ବଢ଼େ—କେବେ ନାହିଁ ।

ସ୍ୱାଂସକୁ ଭଦ୍ରକେ ଦର୍ଶଣ ଓ ଦର୍ପଣ ଆଣିଦଏ ସଂଘର୍ଷ ।

ଉଗ୍ର ଅବଶ୍ୟମ୍ଭାବ ହାଣକାଟରୁ ମାନବ ସମାଜ ଭିତର ଧର୍ମଭୀରୁ ସରଳମନା ଲୋକଙ୍କୁ ରକ୍ଷା କରିବା ତଥା

ଓଡ଼ିଶାର ଲଘୁ ରୂପ ପରିବର୍ତ୍ତି ଗୁରୁତ୍ୱପ ସୃଷ୍ଟି କରିବା ହେଲା ମୋର କର୍ତ୍ତବ୍ୟ ଓ ଲକ୍ଷ୍ୟ—ହେବା ଉଚିତ ।

ହାଣକାଠ ହେଉଛି, ସମାଜକୁ ଅଗାଡ଼ ଯାଗ୍ରେଢ଼ିବା ପାଇଁ ଭଗବାନଙ୍କ ବନ୍ଦୋବସ୍ତ । ଧର୍ମରେ ଯେଉଁଠି ହାଣକାଠର ବ୍ୟବସ୍ଥା ଅଛି ତାହା ସଂସାର ବନ୍ଧନରେ, ଧ୍ୱଂସାତ୍ମକ ପ୍ରବୃତ୍ତ ହୋଇ ନୁହେଁ । ଶାସ୍ତ୍ରରେ ଅଛି—

'ତତ୍ତ୍ୱ କୃପା ସମୟରେ ନଷ୍ଟ ହେବା ତ ତୃଷ୍ଣା' ।

କିନ୍ତୁ ଅଗାଡ଼ ହେଉଥିବ ଓ ପଇତା ଯାଉଥିବ ଏବଂ ମୋହର ପାଳୁଥିଲେ ଅଗାଡ଼ ବଢ଼ୁଥିବ, ଏ ହେଲା ସଇତାନର କୃଟନୀତି—ଏ ଲାଗି ରହୁଥିବ । ତଥାକଥିତ ପ୍ରଗତିଶୀଳଙ୍କୁ ଗୁଲି ରଖିବା ହେଉଛି ପ୍ରକୃତ କାର୍ଯ୍ୟ ପାଇଁ ଆଳ—ବାହାନା । ଅଗାଡ଼ ନ ହେବାକୁ ଦେବା ପାଇଁ ସଚେଷ୍ଟ ହେବା ହେଉଛି ପ୍ରକୃଷ୍ଟ ପନ୍ଥା—କାଠ । ଅବଶ୍ୟ ସାମୟିକ ଭାବରେ ଅଗାଡ଼ ପାଳୁଥିବା ପାଇଁ ବନ୍ଦୋବସ୍ତ ରଖିବା ଉଚିତ । କୃଷ୍ଣ ସେଇଆ କରିଥିଲେ ।

ପାଗଳା କୁକୁରକୁ ମାରିବା ଓ କୁକୁରଟାକୁ ହିଁ ଭ୍ରମରେ ପାଗଳା କୁହାଇ ମାରିବା ବା ମରାଇବାରେ ପାର୍ଥକ୍ୟ ଅଛି ।

ଯେଉଁ ମେଣ୍ଟ ଯାଗାର ସୀମାର ପରସ୍ପର ସଙ୍କୁଚିତ ହୋଇଛି, ଅନୁଧ୍ୟାନ କଲେ ଜଣା ଯିବ ଯେ ଧର୍ମ ପ୍ରଖରତାର ସୀମା ବଢ଼ିଛି ଓ ଧର୍ମ ଶିଥିଳତାର ସୀମା ସଙ୍କୁଚିତ ହୋଇଛି । ତେଣୁ

ଗଲେ ଢ଼ାଳିଲେ ଯେପରି ଦେଖାଯାଇ ନାଏ, କୌଣସି ଯଗାରେ କର୍ମ ପ୍ରଖରତା ଦେଖାଗଲେ ପରସ୍ପର ସେପରି ବଢ଼ିଯାନ୍ତି । ତେଲ ଢ଼ାଳିବା ବେଳେ ଯେପରି ଗୋଟିଏ ଭେଦ ହୁଏ, କର୍ମ ପ୍ରଖରତାର ମଧ୍ୟ ସେହିପରି ଗୋଟିଏ ଭେଦ କେଉଁ । କର୍ମ ପ୍ରଖରତା କହିଲେ ବୁଝିବାକୁ ହେବ ବୌଦ୍ଧିକ ଉନ୍ନତି, ଯୁଦ୍ଧ କୌଶଳର ଆପେକ୍ଷିକ ଉନ୍ନତି, ସାଂସ୍କୃତିକ ଉନ୍ନତି, ଭାଷାର ଉନ୍ନତି, ଯାନ୍ତ୍ରିକ କୌଶଳର ଓ ବୈଜ୍ଞାନିକ ଉନ୍ନତି ଇତ୍ୟାଦି । ଉନ୍ନତିର କମିତ ଧାରାରେ ଆଖି ରଖି, ସୁଶୀଳ କର୍ମପ୍ରଖରତାରେ ମଣିତ ଉନ୍ନତି ଘଟାଇ ସ୍ଥୂଳ ବକ୍ଷେତ୍ରରେ ଶେଷୋକ୍ତ ଫଳ ଦେଇ-ଥାଏ: ପେଟ୍ରୋଲ ଢ଼ାଳି ନିଆଁ ଲଗାଇବା ଭଳି । ବୌଦ୍ଧ ଧର୍ମ ଖ୍ରୀଷ୍ଟ ଧର୍ମ ସହିତ ଯୁଦ୍ଧଖୋର ଦେଶ ଗୁଡ଼ିକର ଅବସ୍ଥା ଦେଖି ତାହାକୁ । ଇତିହାସ ଉଦାହରଣ ଦେବ । ବର୍ତ୍ତମାନ କ୍ଷେତ୍ରରେ ଉନ୍ନତିର ସମନ୍ୱୟ ଥିଲେ, ଉନ୍ନତି ସ୍ଥାୟୀ ବା ବର୍ଦ୍ଧମାନ ଥାଏ, ଯେହେତୁ ଗୋଟିଏ କ୍ଷେତ୍ର ଅନ୍ୟଟିର ସହାୟକ ବା ପରିପୂରକ ଭାବେ କାମ କରେ ।

ବେଦରେ ଅଛି—

> ବ୍ରହ୍ମବନ୍ଧ୍ୱଂତମ୍ ଉତ ବଜ୍ରଂତମ ଧିୟଃ
> ଇନ୍ଦ୍ରଂ ରକ୍ଷାଂସି ସେଧନ୍ତମ୍ ଅମିତ୍ରାଃ ॥
> କ୍ଷତ୍ରଂ ବନ୍ଧ୍ୱଂତମ୍ ଉତ ବନ୍ଧ୍ୱଂତମ୍ ନୃଣ
> ଇନ୍ଦ୍ରଂ ରକ୍ଷାଂସି ସେଧନ୍ତମ୍ ଅମିତ୍ରାଃ ॥
> ଧେନୁର ବନ୍ଧ୍ୱଂତମ ଉତ ବନ୍ଧ୍ୱଂତମ ବିଶଃ
> ଇନ୍ଦ୍ରଂ ରକ୍ଷାଂସି ସେଧନ୍ତମ୍ ଅମିତ୍ରାଃ ॥

ବୁଦ୍ଧି, କ୍ଷତ୍ରିୟ ଗୁଣ ଓ ବାଣିଜ୍ୟର ସମନ୍ୱୟରେ ବିକାଶ ଘଟିଥାଏ ଓ ଅଶାନ୍ତି ଦୂର ହୁଏ ।

ମୁସଲମାନ ଆକ୍ରମଣ ସମୟରେ ଓଡ଼ିଶାରେ ଭାବ ଧାରାର ଜଡ଼ତ୍ୱ ଓ ଇଂରେଜ ଶାସନ ସମୟରେ କର୍ମପ୍ରଖରତାର କେନ୍ଦ୍ର ଓଡ଼ିଶା ବାହାରେ ଥିବାରୁ ଓଡ଼ିଆର ସୀମା ସଙ୍କୁଚିତ ହୋଇଯାଇଛି । ଓଡ଼ିଶା ଭିତରେ ଲଘୁରୂପ ସୃଷ୍ଟି ହୋଇଛି । ଏପରି ସ୍ଥଳେ ବ୍ୟକ୍ତିବିଶେଷ, ସମାଜ ଓ ସରକାର ଋଷାଙ୍କର ଦାୟିତ୍ୱ ଧାରାକୁ ଲକ୍ଷ ରଖି, ବିଭିନ୍ନ କ୍ଷେତ୍ରର ଭିତରେ ସମନ୍ୱୟ ରକ୍ଷା କରି କର୍ମପ୍ରଖରତା ପ୍ରବର୍ତ୍ତନ କରିବା ଓ ମୂଲ୍ୟ ରଖିବା ଉଚିତ । ଏ ହେଲ ବାଟ ।

କର୍ମବୀରମାନେ ବାଟ ଦେଖାଇଥାନ୍ତି । ସେମାନେ ସମାଜରେ କର୍ମମୟ ଜୀବନର ସ୍ପନ୍ଦନ ଆଣିଥାନ୍ତି ।

କଳୁ ପାଣି ଗଡ଼ାଇବେ, ପେଟ୍ରୋଲ ହାଲ ନିଆଁ ଲଗାଇବେ ନାହିଁ ।

ଯୁଗ ଯୁଗ ଧରି ଓଡ଼ିଶାର ଶାନ୍ତି ଓ ଶୃଙ୍ଖଳା ବିରାଜମାନ ଥିଲା । ଅଭ୍ୟନ୍ତରୀଣ ଶକ୍ତି ହେତୁ ବାହାର ପ୍ରଦେଶରୁ ଶତ୍ରୁଭୟ ଆଦୌ ନଥିଲା । ଅଭ୍ୟନ୍ତରୀଣ ଶକ୍ତି ବଜାଏ ରଖିବାକୁ ଲୋକଙ୍କୁ କର୍ମ ଧର୍ମର ଓ ସମାଜର ଭାବଧାରାରେ ନୂତନତ୍ୱ ଆଣିବାକୁ ପଡ଼ୁଥିଲା । ତେଣୁ ଯୁଦ୍ଧରେ ସମାଜ ଭିତରେ ଜଡ଼ତ୍ୱ ଆଣିବାକୁ ନ ଦେବା ରାଜଶକ୍ତିର କର୍ତ୍ତବ୍ୟ; ସନ୍ଧି ଭାବରେ ରାଜ ଶକ୍ତିର ସାଂସ୍କୃତିକ ବ୍ୟାପାରର କର୍ତ୍ତବ୍ୟ । ସେତେବେଳେ ସାଂସ୍କୃତିକ ଭାବ ଛଡ଼ା ଅନ୍ୟ କିଛି ରାଜକାର୍ଯ୍ୟ ଭାବ ନଥିଲା ପରି ଜଣାପଡ଼େ । ଲୋକେ

ଭଲ ଭଲ ସ୍ତରରେ ଯାହା ଝିଭଳ ଦରକାର ସେ ସବୁ ବୁଝୁ-ଥିଲେ । ସବରେ ନୂତନକୁ ଆଣିବା ପାଇଁ ରାଜାମାନେ ଧର୍ମର ଅଙ୍ଗର ପ୍ରାଧାନ୍ୟ ବଦଳାଉଥାନ୍ତି—ଶୈବ, ବୈଷ୍ଣବ, ସୌର, ଶାକ୍ତ, ଗାଣପତ୍ୟ ଇତ୍ୟାଦଙ୍କୁ । ଭଗବାନ ତ ଏକ ଓ ତାଙ୍କ ସହିତ ଝଗଡ଼ା ହେବ ନାହିଁ, ସେହେତୁ ରାଜଧାନୀ ମଧ୍ୟ ବଦଳାଇ-ବାକୁ ପଡ଼େ । ରାଜଧାନୀର କଳେବ ସେ ଭଳିଆ ମନ୍ଦିର ମଧ୍ୟ ହେବାକୁ ହେବ । ତା ପରେ ରାଜା ଗଲେ ରାଜଧାନୀ ହେବ ।

ମନ୍ଦିର ଗଢ଼ିଲେ ପୂର୍ବ ରାଜ୍ୟ ପ୍ରଖର ହୋଇ ଉଠିବ । ରାଜ୍ୟସାରା ଲୋକଙ୍କର ଦୃଷ୍ଟି ଓ ଲକ୍ଷ ତାହା ଉପରେ ରହିବ । ସବୁ ଶ୍ରେଣୀର କର୍ମକୁଶଳଲୋକ ସେଥିରେ ନିଯୁକ୍ତ ହେବେ । ଏହା ଦ୍ଵାରା ଯୁଦ୍ଧ ସମୟର ଶକ୍ତି ଖଟାଇବାକୁ ପଡ଼େ । ବେକାର ସମସ୍ୟାର ସମାଧାନ ହେବ ।

ଏପରି ଗୋଟିଏ ଦେଉଳ ତୋଳିବାକୁ କଳ୍ପନା ହେଲା । ଜ୍ୟୋତିଷ ବିଦ୍‌ମାନେ ସ୍ଥାନ ନିରୂପଣ କଲେ ଅକ୍ଷାଂଶ ଓ ଦ୍ରାଘିମାର ହିସାବ କରି । କିନ୍ତୁ ବାସ୍ତବ କ୍ଷେତ୍ରରେ ଦେଖାଗଲା ଯେ ସେଠାରେ ଗୋଟିଏ ପଥରଡ଼ ଗଣ୍ଡ ଅଛି । ତଥି ନିଷ୍ଦିଷ୍ଟ ଭଳିଆ ଅକ୍ଷାଂଶ ଓ ଦ୍ରାଘିମାକୁ ତ ବାଦ୍ ଦିଆଯାଇ ପାରିବ ନାହିଁ ।

ଆଉରି ଗୋଟିଏ କାରଣ ଅଛି । ଅକ୍ଷାଂଶ ଓ ଦ୍ରାଘିମାକୁ ଦେଖି ମନ୍ଦିର ଚୂଳରେ ରତ୍ନ ରଖିଲେ ମନ୍ଦିର ଭିତରେ କୌଣସି ନିର୍ଦ୍ଦିଷ୍ଟ ସ୍ଥାନ ଉପରେ ଏକ ଦିନ ଓ ସମୟରେ ସୂର୍ଯ୍ୟ କିରଣଦ୍ୱାରା

ଅନେକଟା ହୋଇଯାଇଥିବ । ଗଣ୍ଡପାଠା କାମ ଆରମ୍ଭ ହେଲା । କାମଟି ଥିଲା ଖୋଦ ଓ ମହାମନ୍ତ୍ରୀଙ୍କ ଦାୟିତ୍ୱରେ । ମନ୍ତ୍ରୀ ଭଣ ଦଲେ ନ, ବଡ଼ ବଡ଼ ଡ଼ଙ୍ଗାରେ ପଥର ନେଇ ଗଣ୍ଡ ମଝିରେ ଢାଳିବାକୁ ଆଦେଶ ଦେଲେ । ବଡ଼ ଲୋକର ଓ ବଡ ଆଶା । ଗଣ୍ଡ କନ୍ତୁ ପୋତି ହେଉ ନଥାଏ । ପ୍ରସାଦ ଓ ଭୂଲ ନୁହେଁ । ମାଝି ବଗଗଲା । ସ୍ୱସାବ ଭୂଲ ନୁହେଁ । ମଝିଟା କଣ ? ପଥର ଗଲା କୁଆଡ଼େ ? ଅନୁସନ୍ଧାନ ଚାଲିଲା । ଏ ବିଷୟରେ ଚିନ୍ତା କରୁ କରୁ ଦିନେ ମନ୍ତ୍ରୀ ମହାଶୟ ସାନ୍ଧ୍ୟ ଭ୍ରମଣରେ ବାହାରିଲେ । ଗମ୍ଭୀର ଆବେଗ ଓ ପୂର୍ଣ୍ଣ ବ୍ୟାକୁଳତା ସହକାରେ ଚିନ୍ତା କରି କରି ବୁଲୁଥନ୍ତି, ଅକସ୍ମାତ ଗୋଟିଏ ମେଘ ଆସିଲା ଓ ତା ସଙ୍ଗେ ସଙ୍ଗେ ବର୍ଷା । ଏ ପର୍ଯ୍ୟନ୍ତ ନଗରକୁ ନ ଆସିଥିବା ପାଖରେ ଗୋଟିଏ କୁଡ଼ିଆ ଦେଖି ମହାଶୟେ ଭିତରକୁ ପଶିଲେ । ଦେଖିଲେ ଜଣେ ବୁଢ଼ୀ ଅଛି । ବୁଢ଼ୀ ଆମନ୍ତ୍ରଣ କଲା—

'ଆରେ ପୁଅ, ଆ, ଆ, । ଖୁବ୍ ଭଲ ଅସମୟ ବର୍ଷା ହୋଇଛି । ଜଲ୍ ହେବ ।'

ମନ୍ତ୍ରୀ 'ହୁଁ' କରି ଲୁଗାରେ ମୁଣ୍ଡ ପୋଛିବାକୁ ଲାଗିଲେ । ବୁଢ଼ୀ ଆସନ ଆଣି ଦେଲା । ପୋଛି ପୋଛି ହୋଇ ବସିଲେ । ବୁଢ଼ୀ ସଦ୍ୟ କ୍ଷୀରି ରାନ୍ଧୁଥିଲା । କହିଲା—

'ଭୋକ ହେଉଥିବ, ଟିକିଏ କ୍ଷୀରି ରାନ୍ଧୁଛି, ଖାଏ ?

ସଚ୍ଚୋଟ ଲୋକଟି ଚୁମ୍ବକ ଥାଏ । ଆଦର ପାଖରେ ଆକର୍ଷଣ ଥାଏ । ଭାଷାରେ ଅଛି ବଶୀକରଣ । ମନ୍ତ୍ରୀ ମହାଶୟେ

ବୋଧଦ୍ୱଏ ଚନ୍ତା କରି କରି ଗୁଡାଏ .ବାଟ ବୁଲିଥିଲେ, ଖେଳ ହେଉଥିଲା; ମନା କରି ପାରିଲେ ନାହିଁ। ବୁଢ଼ୀ ଜଉରକୁ ଅପେକ୍ଷା ନକରି କ୍ଷୀର ପରଷି ଦେଲା—ଫଳରେ ଓ ଖୁବ୍ ଗରମାଗରମ ଥିଲା।

ସେତେବେଳେ ଗୃହର ଥିଲା କି ନଥିଲା ବନ୍ଦ ହେଉ ନାହିଁ। କନ୍ତୁ ବଡ଼ ଲୋକେ ସୁନାର ପାତ୍ରରେ ଖାଉଥିଲେ। ମନ୍ତ୍ରୀ ବୋଧଦ୍ୱଏ ଖଲରେ କେବେ ଖାଇ ନଥିଲେ। ମଝିରୁ ହାପୁରିବାକୁ ଲାଗିଲେ। କ୍ଷୀର ପାଣି ଫାଟିଗଲା।

ବୁଢ଼ୀ ବସି ପଙ୍ଖା କରୁଥିଲା। ଅତିଥିର ବେଢ଼ଙ୍ଗ ଖାଇବା ଦେଖି କହିଲା—ଆରେ ପୁଅ, ମନ୍ତ୍ରୀଙ୍କ ଭଳି ତଣ ମଝିରୁ ହାପୁରୁଛୁ ?

ମନ୍ତ୍ରୀ ଚମକି ଉଠିଲେ। ଏ ପର୍ଯ୍ୟନ୍ତ ଅବଗୁଣ୍ଠନରେ ବୁଢ଼ୀ ଗୁପ୍ ମାରି ବସିଥିଲେ। ଯନ୍ତ୍ରବତ୍ ସବୁ କରି ଯାଉଥିଲେ। ଆଗ୍ରହ ଓ ଆତୁରତା ସହିତ ପଚାରିଲେ—

'ମନ୍ତ୍ରୀ କଣ କଲେ କି ? କଣ ହେଲା ?

ବୁଢ଼ୀ— 'ବୁଝିପାରୁନୁ ପୁଅ ? ଗଣ୍ଡ ତ ଦେଖୁଛୁ କେତେ ବଡ଼ ଓ କେତେ ଗଭୀର ! ମୁଁ ପିଲାଦିନେ ଶୁଣିଥିଲି କଣ କି ତା ତଳେ ଗୋଟେ ଛୁରଖାରୁଆ ସୁଅ ଅଛି। ସେ ତ ପଥରଗୁଡ଼ାକୁ କାଟି ଦେଉଥିବ ବା ଭସେଇ ଗଡ଼େଇ ନେଉଥିବ। ତା ସାଙ୍ଗକୁ ତ ଗୁଡ଼ାଏ ମସ୍ତବଡ଼ ମଗର ଅଛନ୍ତି। ପରି, ସାତ ସମୁଦ୍ରର ମଗର ଆସି ଏଠି ରାଜଧାନୀ କରିଛନ୍ତି। ଗୋଟା ଗୋଟା ପଥରକୁ ଗିଳି

ଦେଉଥିବେ । ମଟିରେ ଚେଟେଇ ପଥର ପକାଇଲେ ଆଉ କଣ ହେବ ?

ତୁ ମଧ୍ୟ ସେଇ ଭଳିଆ ମଟିରୁ ହାପୁଛୁ । ତାତଲା ଖୀର ପାଣି ଫାଟି ଯାଉଛୁ, ଖାଇବୁ ଆଉ କଣ ? କଡ଼ରୁ ଖାଇଲେ ସିନା ହେବ ।

ଭଡ଼ରୁ ପଥର ଦେଲେ ସିନା ଆସ୍ତେ ଆସ୍ତେ ଯୋଡ ହେବ ।'

ମନ୍ତ୍ରୀ ମହାଶୟଙ୍କ ଭିତରେ ଖେଳିଗଲା ଚକ୍ଟଲା । ଖାଇବେ ଆଉ କଣ ? ଗୋଟେ ଟଳାର ଗ୍ଲୋଉଡ଼୍‌ଲ—'ପାଇଲ' ଓ ଅଖିଆ, ଅଧୂଆ, ଅସ୍ତବ୍ୟସ୍ତ ହୋଇ ଏବୁଣ୍ଡି ହୁଣ୍ଡି ଧାଉଁଛନ୍ତି ।

ବୁଢ଼ୀ ପଛରୁ ମୁରୁକ ମୁରୁକ ହସୁଥାଏ ।

ବର୍ତ୍ତମାନର କଥା ହେଉ । ଆଜିକାର ରାଜଶକ୍ତି ଯେଉଁ ଜନତାର ମନ୍ଦିର ସ୍ଥାପନ କରିବାକୁ ଯାଉଛନ୍ତି, ସେଥିରେ ମଗଧ କଏ ଏବଂ ସୁଠା କଣ ? ଗଣ୍ଡ ମଟିରେ ପଥର ପକାଇବା । ଭଲ ହୁଚି କେଉଁଠି ?

ସେଇମାନେ ମଗଧ ମେଡ଼ଉଁମାନେ ଗିଳୁଛନ୍ତି । ଉପରେ ଥାଇପାରନ୍ତି, ତଳେ ଥାଇପାରନ୍ତି । ଉପର ଲୋକେ ତଳକୁ ଦୋଷ ଦଅନ୍ତି ଓ ତଳ ଲୋକେ ଉପରକୁ ଦୋଷ ଦଅନ୍ତି । କିନ୍ତୁ ଉପରେ ହେଉ ବା ତଳେ ହେଉ, ସେହି ବ୍ୟକ୍ତିବିଶେଷ ଯେ ବିଷାକ୍ତ ସେଥିରେ ସନ୍ଦେହ ନାହିଁ ।

ଏହି ବିଷାକ୍ତ ବ୍ୟକ୍ତିବିଶେଷଙ୍କୁ ମିଳାଇଲେ, ସମାଜ ବା ଦେଶ ଭିତରେ ଯେଉଁ ବିଷର ପ୍ରବାହ ଚାଲେ, ସେହି ହେଲା ପ୍ରଖର ସ୍ରୁଅ । ବିଷାକ୍ତ ଲୋକଙ୍କ ଭିତରେ ସହୃଦୟତା ଓ ସଳ

ଥାଏ । ମତ ଲଟ ହେତୁ ସଙ୍ଗଠିତ ଭାବରେ ମଧ୍ୟ ଅର୍ଥନୈତିକ ଓ ସାମାଜିକ ବିକାଶରେ ବାଧା ପହଞ୍ଚାଇବାକୁ ଚାହାନ୍ତି । ତାଙ୍କର ଭାବଧାରାର ଗୋଟିଏ ବାସ୍ତବ ଚିତ୍ରଟା ଗଢ଼ିବାକୁ ଯାଉଛନ୍ତି ଯାହାକି ନୂଆବର୍ଗମାନ ହୋଇ ଗଢ଼ ଗଢ଼ ହେଉଥିବ । ଶେଷରେ, ସେମାନେ ଆଶା କରନ୍ତି, ଅର୍ଥନୀତି ଭାଙ୍ଗି ପଡ଼ିଲେ, ଦେଶରେ ବିଭ୍ରାଟ ଓ ଅରାଜକତା ସୃଷ୍ଟି ହେଲେ, ସମାଜ ଭାଙ୍ଗି ପଡ଼ିଲେ, ରାଜଶକ୍ତିକୁ ଅଧିକୃତ କରି ତାଙ୍କର ଇଚ୍ଛାର ନୂତନ ସମାଜ ଓ ନୂତନ ଅର୍ଥନୀତି ଗଢ଼ିବେ । ପାଗଳା, ହିଂସାରେ ପ୍ରତିଷ୍ଠିତ ଯେ କୌଣସି ସଙ୍ଗଠନ, ଯେତେ ବଳବାନ ହେଉନା କାହିଁକି ପରିଶେଷରେ ଧ୍ୱଂସ ହେବ— ଯଦୁକୁଳ ଭଳି, ଅଥବା ନାଜିବାଦ ଭଳି । ପୃଥିବୀରେ ଯେଉଁ ଲହଡ଼ି ମାଡ଼ି ଆସୁଛି, ମାନବ ସମାଜ ବିପନ୍ନ ହୋଇ ଆସୁଛି, ଯଦି ତାକୁ ବାଧ କରା ନଯାଏ, ତାହା ଦିନେ ନା ଦିନେ ସମଗ୍ର ପୃଥି- ବୀରେ ଖେଳେଇଯିବା ଉଦ୍ଦେଶ୍ୟରେ ମାଡ଼ି ଆସିବ । ଜଗିବ ତାଣ୍ଡବ ଲୀଳା ଓ ସଂହାର । ସେଇମାନେ ବର୍ତ୍ତିବେ ଯେଉଁଠାରେ ଶାନ୍ତ ବାତାବରଣ ଅବ୍ୟାହତ ରହିଛି ଓ ଯେଉଁମାନେ ସମୃଦ୍ଧ କଲ୍ୟାଣର ସଚେଷ୍ଟ ଓ କର୍ମପ୍ରଖର ଏବଂ ଯେଉଁମାନେ ଏକ ଉନ୍ନତ ରାଜକାର୍ଯ୍ୟ ଚଳାଇବାରେ ସକ୍ଷମ ।

ଏହି ଉନ୍ନତ କେଉଁଠି ? ବିରାଟ ବିରାଟ ପରିକଳ୍ପନା କରି ମଣି ସ୍ୱରାଜର ମଙ୍ଗଳ ମୁହୂର୍ତ୍ତରେ ଛାଡ଼ି ଦେବା । ସ୍ୱତଃ ଜନତା ଘଟିବାକୁ ହେଲେ, ଜନତାର ନିମିତ୍ତ ଧାରା ମାନିବାକୁ ହେବ । ଗଣ୍ଡିକୁ ଚଡ଼ାକୁ ପୋଡିବାକୁ ହେବ । ବିକାଶର ବିଭିନ୍ନ ଅଙ୍ଗ ପରସ୍ପରର ପରିପୂରକ ହେବାକୁ ହେବ । ପ୍ରଥମରେ ସମାଜର

ସମୂହ କଲ୍ୟାଣ ସାଧନରେ ବ୍ୟକ୍ତି ବିଶେଷର କଲ୍ୟାଣ ପାଇଁ ସମାଜର ଦାୟିତ୍ୱ —ଏହାକୁ ନେଇ ସାମାଜିକ ଶିକ୍ଷା, ଦ୍ୱିତୀୟରେ ବ୍ୟାପକ ଭାବରେ ସବୁ ସ୍ତରର ଶିକ୍ଷା ଓ ତୃତୀୟରେ ବିକାଶମୂଳକ କର୍ମକୁ ସେହି ଅନୁଯାୟୀ ଯୋଗାଇ ଦେଉଥିବା ସୁଦକ୍ଷ କର୍ମଚଞ୍ଚଳ କାରିଗରି ଶିକ୍ଷା । ଏମାନେ ସମାଜ ଭିତରେ ଥିବା ଗଣ୍ଡିକୁ ଫୋଡ଼ି, ପଥର ଗଡ଼ିବାଟରେ ଆରେଇବା ଉଚିତ । ନ ହେଲେ ଅଚଳ ସମ୍ପତ୍ତି ବ୍ୟବହାର ପାଇଁ ଆସିଥିବା ସବୁଟାକ ନଦୀ ପଥର ମଗର ପେଟରେ ବା ସୁଅ ମାଡ଼ରେ ଯିବ, ଗଣ୍ଡିକୁ ଟଣ୍ଡ ସେହିପରି ଥିବ ।

ଓ ଶିକ୍ଷାକୁ ବାତାବରଣରେ ନିଶ୍ୱାସ ମାରି ହେଉନି । ବିଷ ଉଦ୍ଗିରିଲ ଜୀବନ ଧାରଣ ଅସମ୍ଭବ ହେବ । କେବଳ ବିଷାକ୍ତ ସଇତାନ ହାତ ତଣ୍ଟି ରହିବ ।

ଗାଁର ଦାବାରେ ଯେ କୌଣସି ଇଚ୍ଛା ପୂର୍ଣ୍ଣ ହୁଏ ବୋଲି କଥିତ ଅଛି । ଉଦ୍ଭବ—ବିନା ଶିକ୍ଷା ଓ ଦାୟିତ୍ୱ ଜ୍ଞାନର ଉଦୟ ନ ହେଉଣୁ ଓଡ଼ିଶାରେ ଶିଳ୍ପ ତଥା ଯାନ୍ତ୍ରିକ ପ୍ରସାର ଯେପରି ନ ହୁଏ । ଶିକ୍ଷା ଓ ଦକ୍ଷତାର ଢାଳେ ଢାଳେ ଯୋଗରେ ଶିଳ୍ପ ପ୍ରସାର ଘଟେ ।

ସାଙ୍ଗେ ସାଙ୍ଗେ ମନ ଭିତରେ ଗୋଟିଏ ଅସ୍ୱସ୍ତି ବୋଧ କଲି । ନଷ୍ଟ ହୋଇଗଲା । ମନର ଦୁଲିବା ଧୂମେଇ ଆସିଲା ।

ଯାହା ହେଲା ହେଲା । ମୋର ଆଜି ଅନ୍ୟଥା କହିବାର ନଥିଲା, ଚୁପ୍ ନଥିଲା । ଏକ ରକମ ଠିକ ହୋଇଗଲା । ନିର୍ଦ୍ଧାରିତ

ସୁଅ ବହୁଛରେ, ନିସ୍ତବ୍ଧ ବହୁଛରେ ଯିଏ ଗାଲୁ ଗୃହିଁଲେ ଏପରି ଘଟେ । ହେଲେ ମଧ୍ୟ ବାଟ ଅଛି । ତୀର୍ଥ ଯାଗାର ତ ମହାତ୍ମ୍ୟ ଅଛି, କିନ୍ତୁ ନ ହେଲେ କିଛିଟା ଗ୍ରହଣୀୟ ତ ହେବା ଯାଇ-ପାରେ । ସେଥିପାଇଁ ଗ୍ରନ୍ଥଧାରୀର ଶିଅ ଧରି ସେ ଇଚ୍ଛା କଲେ ପଦଟିଏ ଯୋଡ଼ିଦେଲେ—

ଅଗ୍ନିର୍ବେ ମନ୍ୟୋ ତ୍ୱିଷିତ ସହସ୍ୱ
ସେନାନିନଂ ସହୁରେ ହୁତ ଏଧି
ହତ୍ୱାସ୍ୱ ଶତ୍ରୂନ୍ ବି ଭଜସ୍ୱ ବେଦ
ଓଜୋ ମିମାନୋ ବି ମୃଧୋ ନୁଦସ୍ୱ ।

ହେ କ୍ରୋଧ, ଶତ୍ରୁ ସେନା ଭିତରେ ପଶି ସେମାନଙ୍କୁ ସ୍ୱଗ ଭଗ କରି, ଛିନ୍ନଭିନ୍ନ କରି ଓ ନିପାତ କରି, ଅଗ୍ନି ଯେପରି ବଣକୁ କରେ ।

ଏଥି ପାଇଁ ପ୍ରସ୍ତୁତ ହୋଇ ଆସିଥିଲି ।

ଏଥି ପାଇଁ କୌଣସି ନିର୍ଦ୍ଦେଶ ପାଇଁ ଅପେକ୍ଷା କରିବାକୁ ପଡ଼ ନଥିଲା । ନିର୍ଦ୍ଦେଶ ଥିଲା—ଯିଏ ବାହାରିବା ଦିନ, ଜିନିଷପତ୍ର ବନ୍ଧାବନ୍ଧି ପାଇଁ ସଜଡ଼ାସଜଡ଼ି କରୁଛି, ଦିନ ପ୍ରାୟ ଅଢ଼େଇଟା ତିନିଟା ହେବ, ଦୁଇ ଜଣ ଆସିଲେ ।

କହିଲେ— ଆଜ୍ଞା, ଭୋଟ ପାଇଁ ଆସିଛୁ ।
ମୁଁ—କଣ କଂଗ୍ରେସ ପଟରୁ ?
ସେମାନେ—ନା, କମ୍ୟୁନିଷ୍ଟ ପକ୍ଷରୁ ।

ସେମାନେ ଜାଣନ୍ତି ଯେ ସେହି ଖଣ୍ଡ ସେମାନଙ୍କ ସପକ୍ଷବାଦୀ। ମାନଙ୍କୁ ସନ୍ତୋଷ୍ଟ କେଲ। ମଣ୍ଡଳ କଗନ୍ତୀର ସାମାନ୍ୟ ଭୁଲରେ ଷଡଶେଷ କରୁଛି ଧରି ପାରି ନ ଥିବେ ବୋଲି ମୁଁ ଭାବିଥିଲି। ଭିତରେ ମଟେଷ ଏକ କୌତୂକ ଆନନ୍ଦ ଜନ୍ମୁଛି ଅନୁଭବୁଥିଲି, ଯେହେତୁ ପଞ୍ଚ-ଶୋହା ମୁଁ ଯେ କୈଲାସ ଯାଇ ପହଞ୍ଚିବି ତାର ଗୋଟିଏ ପ୍ରମାଣ ହୋଇଥିଲା। କୈଲାସ ଦର୍ଶନ ସହିତ ଗାରନ୍ତରେ ଚୀନ ସର-କାରଙ୍କର ସାମ୍ୟବାଦର ଭାଗ୍ୟବାଗୁତା ଦେଖିବାକୁ ସୁଯୋଗ ପାଇବି ବୋଲି ସେମାନଙ୍କୁ ହସି କହୁଥିଲି ଓ ପ୍ରମାଣ ହିସାବରେ ବାଛିବା ପାଇଁ ରଖିଥିବା କାଗଜପତ୍ର ଦେଖାଇଥିଲି। ସେମାନେ ମୁହଁକୁ ବଲ ବଲ କରି ଗୃହିଁ ରହି ଯାଉଥିଲେ।

ଯେ କୌଣସି ଗୋଟିଏ ଅଂଶ ପୂର୍ଣ୍ଣ ହୋଇପାରେ ନାହିଁ। ହିଂସାରେ ପ୍ରତିଷ୍ଠିତ ଯେ କୌଣସି ଶକ୍ତି ବା ଭାବଧାରା ଭିତରେ ତାର ପତନର ବୀଜ ଅନ୍ତର୍ନିହିତ ଥାଏ। ମାର୍କସ୍‌ଙ୍କ ଦ୍ୱାରା ପ୍ରବ-ର୍ତ୍ତିତ ସମାଜବାଦ ହେଉଛି ଏହିପରି ଗୋଟିଏ ଭାବଧାରା ତଥା ଶକ୍ତି। ଯଦ୍ୟପି ସେ ଧର୍ମର ଗୋଟିଏ ଅଙ୍ଗ ନେଇ ଗଠିତ, ତା ଭିତରେ ଅନ୍ତର୍ନିହିତ ମାନବାଧିକ ଧ୍ୱଂସ-ବାଞ୍ଛାକୁ ବାହାର କରିବାକୁ ହେବ। ହିଂସା ପଛକୁ ବୀଜରୂପରେ ଅଛି କ୍ରୂର-କୋଧ। ବଳିଷ୍ଠ କାରଣରୁ ହେଲେ ମଧ୍ୟ ଘୃଣିତ ଲୋକଙ୍କର ଲକ୍ଷ-ବସ୍ତୁ ଯଦି ଏକ ଥାଏ, ସେଗର ଚମୂତ୍କାପୁ ଶକ୍ତି ସେମାନଙ୍କୁ ଟାଣି ଆଣି ଭିଡ଼ ରଖି ଏକପୁଟ୍ କରିଥାଏ। ଅଧର୍ମ ତଥା ସଇତାନ ବ୍ୟୁହ ରଚନା କରି ଅସେ।

ଅଧର୍ମର ଏହି ବ୍ୟୁହ ଭଙ୍ଗିବା ହେଲା ମୋର କର୍ତ୍ତବ୍ୟ ଓ ଉଦ୍ଦେଶ୍ୟ । କ୍ରୋଧଦ୍ୱାରା ବାନ୍ଧି ରହିଥିବା ବିଭିନ୍ନ ସ୍ୱାର୍ଥର ଲୋକଙ୍କୁ ସେମାନଙ୍କର ସ୍ୱାର୍ଥଜନିତ ରାଗଦ୍ୱାରା ସେହିମାନଙ୍କୁ ଭଗ ଭଗ କରିବା ମୋର ଲକ୍ଷ ଥିଲା । ତାଙ୍କର ସେହି କ୍ରୋଧକୁ ଜିତି କରି ତାକୁ ଜୀବନଦାନ କରିବା ପାଇଁ ବେଦ ମନ୍ତ୍ରା ପ୍ରୟୋଗ କଲି ।

ବେଦର ଗୋଟିଏ ଗୋଟିଏ ମନ୍ତ୍ର ହେଲା ଗୋଟିଏ ୨ ସୃଷ୍ଟିକରଣ । ତାର ପ୍ରୟୋଗ ହେଲା ତାକୁ ଇଚ୍ଛା କ୍ରେ ସହିତ ସଂଯୋଗ କରି କାରଣ ଜଗତରେ ଛାଡ଼ିଦେବା । କାରଣ ଜଗ-ତରୁ ତାର ନ୍ୟାୟୋଚିତ ଭାବରେ ଫଳିତ ଜଗତକୁ ଆପେ ଆପେ ଆସି ଫଳ ଦେଖାଇବ । ଫଳର ପରିମାଣଟା ସଂଯୋଜିତ ଇଚ୍ଛା ଶକ୍ତିର ପ୍ରବଳ ପଣର ମାପ ଉପରେ ହୋଇଥାଏ ।

ଯେଉଁ କାଗାରେ ପ୍ରୟୋଗଟା ସୁଅ ସଙ୍କେତରେ ଥାଏ, ସେଠିଣା ପ୍ରବାହକୁ ନିୟନ୍ତ୍ରିତ କରିଥାଏ । ସୁଅ ବିପକ୍ଷରେ ଥିଲେ, ଉକାଣି ପ୍ରବାହ ଟାଣି ଥାଏ, ସ୍ରୋତ ସମ୍ଭାଳିବାକୁ ସକ୍ଷମ ନଥିଲେ ତା ପ୍ରତି ଅନ୍ଧ ଅଟେ । ନିୟନ୍ତ୍ରିତ କରିବା ଥିଲା ମୋର ଉଦ୍ଦେଶ୍ୟ ।

କିନ୍ତୁ ଏହି ଜଗତରେ, ଏ ବିଶ୍ୱବ୍ରହ୍ମାଣ୍ଡର ପ୍ରତ୍ୟେକ ସ୍ତରରେ ଦୁଇଟି ସୁଅ ଯୁଅ ହୋଇ ମୂଳ ବୁଣି ଲଗା ହେଲା ଭଳିଆ ଛଡା ଛନ୍ଦ ଦୋଇ ବୃଲଚକ୍ର — ଗୋଟିଏ ହୁଂସାର ଓ ଅନ୍ୟଟି ଶଙ୍କାର, ହୃଦ ସ୍ପର୍ଶ କରି । ସମାନ୍ତରାଳ ଭାବରେ ଦୁଇଟିଯାକର ନିୟମ କାନୁନ୍, ଜୀବନ ଦର୍ଶନ, ଭାବଧାରା ଓ ସେଗୁଡ଼ିକର ଶାଖାପ୍ରଶାଖା, ଅଙ୍ଗ ପ୍ରତ୍ୟଙ୍ଗ ଓ ଉପାଙ୍ଗ ମଧ୍ୟ ଅଛି ।'ଜନୁଗତ ଓ ସଙ୍ଗଜନିତ ଗୁଣ

ବା ଦୋଷରେ, ବିଷ ଓ ପିୟୂଷର ମାପ ଅନୁପାତ୍ରି, ତାଙ୍କର ଲକ୍ଷିପ୍ରତା
ବାଞ୍ଛିତନା ଅନୁପାତ୍ରେ ମନୁଷ୍ୟ ପ୍ରେମରୁ କିଛି ଓ ହିଂସାରୁ କିଛି
ନେଇ କର୍ମକ୍ଷେତ୍ରରେ ଲାଗି ପଡ଼ନ୍ତି । ଯେଉଁମାନେ ପୂରାପୂରି ହିଂସା
ଦ୍ୱାରା ଚାଳିତ ବା ସ୍ଥଳ ଓ ସମୟ ବିଶେଷରେ ହିଂସାଦ୍ୱାରା ପ୍ରଭା-
ବିତ, ସେମାନେ ଭାବିବା କ୍ଷେତ୍ର ହରାଇ ବସିଥା'ନ୍ତି । ଆଗପଛ ନ
ବିଚାରି ସେମାନେ ଦନ୍ଧବତ୍ କାମ କରନ୍ତି । କି କାର୍ଯ୍ୟରେ କି
ଫଳ ହେବ ସେ ବିଷୟରେ ଭାବିବାର ଶକ୍ତି ନଥାଏ । ମନ ଭିତରେ
ସ୍ଥୂଳ ମାରିକା ଭଳିଆ ଅସିବ ଗୋଟିଏ ଭାବ ଓ ସେଥିରୁ ରକ୍ଷା
ପାଇବା ପାଇଁ ସଙ୍ଗେ ସଙ୍ଗେ ଲାଗି ପଡ଼ିବେ କର୍ମରେ—'କୁ' ଠାରୁ
'ସୁ' ଆଖ୍ୟା ଦେଇ । ଏମାନେ ପୃଥିବୀର ବାତାବରଣକୁ ଦୂଷିତ-
କଳୁଷିତ କରୁଛନ୍ତି । ପୂରା ପାଣ୍ଠୋବଲୀର ମୂଲ୍ୟଙ୍କ ଓ କ୍ଷେତ୍ରଙ୍କ
ଧରି, କି କର୍ମକ୍ଷେତ୍ରରୁ କି ଫଳ ହେବ ଭାବି କର୍ମରେ ଲିପ୍ତ
ହେବା କଥା ।

ବ୍ୟକ୍ତି ବିଶେଷର ସ୍ଥିତି ସମାଜର ବାତାବରଣ ଉପରେ
ଅନେକଟା ନିର୍ଭର କରେ । ସମାଜ କହିଲେ ନିଜ ପରିବାର
ଠାରୁ ଆରମ୍ଭ କରି ସାରାପୃଥିବୀର ମନୁଷ୍ୟ ସମାଜ ପର୍ଯ୍ୟନ୍ତ ବୁଝାଏ ।
ସମାଜର ସେହି ବାତାବରଣରୁ ଏମାନଙ୍କୁ ହଟାଇବା, ବିଶେଷତଃ
ହିଂସାର ପରିସରକୁ ସମ୍ପ୍ରସାରଣ ପାଇଁ ସଙ୍କୁଚିତ ଓ ସୀମିତ କରି
ରଖିବା ଆମର ଲକ୍ଷ୍ୟ । ଯେହେତୁ କର୍ମ ଜଗତରେ ସମସ୍ତେ ନିମିତ୍ତ
ମାତ୍ର, ସୃଷ୍ଟି ଜଗତରେ ବୀଜରୋପଣ ବିନା ଏ କାର୍ଯ୍ୟ ସାଧିତ
ହୋଇପାରେ ନା । କିନ୍ତୁ ସଞ୍ଚିତ ପ୍ରୟୋଗ ଶକ୍ତିର ବଳରେ ବ୍ୟବ-
ହାର ହେଉଥିଲା, ମୋତେ ଏଥିରେ କିଛି କହିବାର ନଥିଲା ।

କିନ୍ତୁ ନକଲ ଦର୍ଶିର ଲଢ଼ିବାର ଦଗାଟାକୁ ସାମାନ୍ୟ କିଛି ଦାବଙ୍ଗରେ ଏପଟ ସେପଟ କରିଯାଇ ପାରେ । ମୋର ହେକ୍‌କଶ୍ରୁତ ପୁଣ୍ୟ ଗୁଣ୍ଡିଚ ପୂଜା ଭଳି ଦାନ କଲି । ଦ୍ୱିବାପୃଷ୍ଠ ଭରି ଯାହଙ୍ଗ ରକ୍ଷି ଆସିଲି ।

ଓ ଅସ୍ତ୍ର ଅଗାରେ ରକ୍ଷିଥିଲି, ବାଁ ପଟେ ରୁପିଆ ଭୂର୍ଣ୍ଣେ ଓ ଡାହାଣ ପଟେ ଚୀନା ଭୂର୍ଣ୍ଣେ ତାଛୁ ଆରମ୍ଭ କରି, ସାରା ମାନବ ସମାଜରେ ଖେଳି ବଢ଼ିଛି ହୋଇଥିବା 'ତେଲ' ପର୍ଯ୍ୟନ୍ତ ଯେତେ ପ୍ରକାର ସୃଷ୍ଟ ଓ ଅସୃଷ୍ଟ ଭିନ୍ନ ଭିନ୍ନ ଆଳରେ ଥିବା ଅନୁଭୂତ ସଂଗଠନ ଏବଂ ମାନବ ସମାଜର ପ୍ରଗତି ସୁଖ ବନ୍ଧୁକରେ ଥିବା ଯାବତୀୟ ଚଳନ୍ତ ପ୍ରତିରୋଧ ଶକ୍ତି, ଯେଉଁମାନେ ଜୀବନର ନ୍ୟାୟ ପଥରେ ଆଗେଇବାକୁ ଗଲେ ପ୍ରତିବନ୍ଧକ ସୃଷ୍ଟି କରିଆ ହୋଇ ନ୍ୟାୟକୁ ଅନ୍ୟାୟ ଓ ଅନ୍ୟାୟକୁ ନ୍ୟାୟ ଦର୍ଶାଇ, ପଟୋଳୀର ସାମାନ୍ୟ ଅଂଶକୁ ପୂର୍ଣ୍ଣ ସତ ବୋଲି ଉଦ୍ଘୋଷ କରୁଛି ସତ୍ୟ ଓ ସୁନ୍ଦରକୁ କାରଣ ବୋଲି ଠେଲି, ଖାମ ଖିଆଲ ଅନୁସାରେ ଅଣ-ପ୍ରଗତିଶୀଳ ଲୋକଙ୍କୁ ବାଛି ସେମାନଙ୍କ ଚରିତ୍ର ସଂସ୍କାର ଓ ପତନ ଭରଇ, ବ୍ୟକ୍ତିବିଶେଷ, ସମାଜ ଓ ସରକାରଙ୍କର ପ୍ରକୃତ ଦୁଃଖ-ପ୍ରତିଚ୍ଛିନ୍ନକୁ ଭୁଷ୍ଟ ଓ ପଣ୍ଡ କରି, ସବୁ ପ୍ରକାର ପ୍ରକୃତ ପ୍ରଗତିଶୀଳ ଶକ୍ତିକୁ ପଛକୁ ଠେଲି, ଧ୍ୱଂସାଭିମୁଖେ ମାନବ ସମାଜକୁ ନେବାକୁ ଦୃଢ଼ ସଂକଳ୍ପ ।

ତାଙ୍କର ଦ୍ୱାରା ପ୍ରସ୍ତୁତ ଧ୍ୱଂସ ଗହ୍ୱର ତାଙ୍କୁ ହିଁ ଗ୍ରାସ କରୁ ।

ପଟୋଳୀର ସୁଖ ବଦଳିବ । ଆପେ ସଜାଡ଼ି ହୋଇ ସୁଅର ବାଟ ସର୍ଗ ଆଡ଼େ ମୋଡ଼ିବ ।

ଘଣ୍ଟାସ୍ପନ୍ଦନ ଶାନ୍ତ ହେଲା । ନାଡ଼ୀ ହେଲା ସ୍ଥିର ।

ଯାହା ସଫଳ ହୋଇଛି, ଯେହେତୁ ଏ ସବୁ ନିୟନ୍ତ୍ରାଙ୍କ ଦ୍ୱାରା ଚାଳିତ ହୋଇଛି । ନିଜ ଚେଷ୍ଟାରେ ଏହାଠାରୁ ବେଶୀ ବଡ଼ କିଛି କରିପାରି ନଥାନ୍ତି । ଯାହା ଘଟିଛି ବା ଏପରି ସେପରି ହୋଇଛି ତାହା ମଧ୍ୟ ସେ ଗୋପାଳଙ୍କ ଇଚ୍ଛା ।

ବାଳକ ନାଡ଼ୀ ଉଠାଇ ନେଲା ।

ଚରମଶାନ୍ତିରେ ରାତ୍ରି ଯାପନ କଲି ।

## ଶପଚେଟକ ଛାଡ଼ିଲୁ
## ଜୁଲାଇ ୪ ତାରିଖ ମଙ୍ଗଳବାର

ତା ପରଦିନ ଥିଲା ଜୁଲାଇ ୪ ତାରିଖ ମଙ୍ଗଳବାର । ସେ ଦିନ ଷୋଳ ମାଇଲ ଚାଲି ଆମର ପରିକ୍ରମା ଶେଷ କଲୁ । ବାଟ ନଦୀର କଡ଼େ କଡ଼େ, ଡାହାଣପଟେ, ଉତ୍ତରକୁ କୈଲାସ ଓ ତାକୁ ଘେରି ରହିଥିବା ପାଦ ପର୍ବତମାଳା । ବାଟଟା ସମତଳ । ଉଚ୍ଚଥାନ ପତନ କିଛି ନାହିଁ । ନଦୀ ନାଳ ମଧ୍ୟ କିଛି ନାହିଁ ।

ବାଟରେ ଦୁଇ ଜଣଙ୍କୁ ଦେଖିଲି । ମନେ ହୋଇଥିଲା ଯେ ଦୁଇ ଜଣଯାକ ତିବ୍ବତୀୟ । କିନ୍ତୁ ଜଣେ ଥିଲା ନେପାଳୀ । ସେ ହିନ୍ଦିରେ କଥା କହି ନେପାଳୀ ବୋଲି ପରିଚୟ ଦେଲା । ତାର କଥାରେ ଶ୍ରଦ୍ଧା ଓ ସହାନୁଭୂତି ଥିଲା । ଢଙ୍ଗ ଥିଲା ସହଜ, ସରଳ । ତାର ନିଷ୍କପଟ ହସ ଟିକିକ କ୍ଲାନ୍ତ ଭଗ୍ନ ଶ୍ରାନ୍ତ ବିଷଣ୍ଣ ସ୍ନାୟୁ ଦଳକୁ ଅଲଟ ମାରି ଦେହରେ ନୂତନ ପ୍ରାଣ ସଞ୍ଚାର କରିଥିଲା ।

କ୍ଲବ୍‌ପ୍ରରେ ବନ୍ଧୁବାକୁ ଗଲେ ତାହାର ବ୍ୟବହାର 'ପଡୋଶୀକୁ ନିଜ ଭଳିଆ ଭଲ ପାଅ' ର ଦୃଷ୍ଟାନ୍ତ ଥିଲା । ସେମାନଙ୍କର ଲକ୍ଷ ଥିଲା ଗୌରୀ କୁଣ୍ଡ ର ଅନ୍ୟମତର ଗୋମ୍ପା । ଶୁଣିଲି ଯେ ଭାରତ ସୀମାନ୍ତରେ ନେପାଳୀମାନେ ଭାରତୀୟ ଢଙ୍ଗରେ ଚଳନ୍ତି ।

ସେଠାରୁ କିଛି ଦୂର ଗଲା ପରେ ରାସ୍ତାର ଡାହାଣପଟକୁ ଗୋଟାଏ ଗୋମ୍ପା ପଡ଼ିଲା । ଦତ୍ତବିଦ୍ୟାନନ୍ଦଜୀ ସେଠାରେ ଆଗରୁ ପହଞ୍ଚି ସାରିଥିଲେ । ସେଠାରୁ ଫେରି ମୋତେ ରାସ୍ତାରେ ଭେଟିଲେ । ସାଥିରେ କିଛି ଶୁଖିଲା ଲଙ୍କାଶୀ ଖଣ୍ଡ ଆଣିଥିଲେ । ମୋତେ କିଛିଟା ଦେଲେ । ଗୁଆ ନଥିବାରୁ ଗୁଆର କାମ ଦେଲା ।

ସ୍ୱାମୀଜୀ ଅନୁମତି ନେଇ ଆଗେଇ ଗଲେ । ଚାଲିବାରେ ପ୍ରତ୍ୟେକ ଲୋକର ଅଲଗା ଅଲଗା ତାଳ ଓ ବେଗ ଥାଏ । ଯେତେ ମୁଣ୍ଡ ସେତେ ମତ, କିନ୍ତୁ ଅପଢ଼ା ନଥାଏ । ସହାନୁଭୂତି ଓ ଅପରକୁ ବୁଝିବାକୁ ଚେଷ୍ଟା ଥାଏ । 'ମୋର ମତ ଏଇ, ମୋର ବାଟ ଅଲଗା, ମୋର ତାଳ ଓ ବେଗ ଭିନ୍ନ, ମୁଁ ଯାଏ'— ଇଏ ହେଲା ସହାବସ୍ଥାନ ନୀତି । ଅନୁମତି ନେଇ ଆଗେଇବା ହେଉଛି ପାରସ୍ପରିକତା—ଶିଷ୍ଟାଚାର ।

ନଦୀଟି ସାତକୋଶିଆ ଗଣ୍ଡ ଭଳି ଗୋଟିଏ ଠାରୁ ଜାଗାରେ ଦୁଇଟି ଗ୍ଲେଟ ଦୁଇକୁ କାଟି ରାସ୍ତାର ତାଲ ଯାଇଛଟେ ସମତଳ ଜାଗାରେ ଖେଳେଇ ହୋଇଛି । ପାହାଡ଼ ଉପରେ ଚାଲି ରାସ୍ତାଟି ବେଢେଇଗୁଡ଼ିଏ ତଳ ଉପର ସମାନ୍ତରାଳ ହୁଡ ରାସ୍ତା, ଠିକ୍ କାଟି ଯାଇଥିବା ପାହାଡ଼ ଜାନୁର ବଡ଼େ ବଡ଼େ ଓ ଡାହାଣ ପଟରୁ

ବାଁ ପଟକୁ ନୁଆଁଣିଆ । ଟ୍ରେସହେତୁ ଭାବେ ଗୋଡ଼ରେ ଗୋଡ଼ ଖସିପିବ ବୋଲି ଭୟ ଲାଗୁଥିଲା । ସତର୍କତା ସହିତ ଚାଲିବାକୁ ପଡ଼ୁଥିଲା । ସେଠାରେ ରାସ୍ତାଟା ଅଧା ଡାହାଣପଟକୁ ମୋଡ଼ୁଥିଲା ।

ମୋଟା ପାରି ହେବା ସଙ୍ଗେ ୨ ଆଖି ଆଗରେ ଖୋଲିଗଲା— ଗୁଡ଼ସତାଲ୍‌ର ଉତ୍ତରାର୍ଦ୍ଧ ଓ ତାକୁ ଲାଗିଥିବା ସମତଳ ଚାରଭୂମି । ମୁଁ ଚାଲିଛୁ ପୂର୍ବରୁ ପଶ୍ଚିମକୁ ଓ ଦୂରେ ଦୂରେ, ବହୁତ ଦୂରରେ ଦେଖିବାକୁ ପାଇଲି ପଶ୍ଚିମରୁ ପୂର୍ବକୁ ଆସୁଥାନ୍ତି ଗୋଟିକ ପରେ ଗୋଟିଏ ଚୀନା ଟ୍ରକ । ଛଅଗୋଟି ଟ୍ରକ ପରେ ଆସିଲା ଗୋଟିଏ ତେଲବାହୀ ଟ୍ରକ୍ । ପରେ ପରେ ବୃହତ୍‌କାୟାବ ଘନସବୁଜ ଅଞ୍ଚଳରେ ପଶିଗଲେ । ମନେ ହେଲା, ବୋଧହୁଏ ମାଟି ଉଲେ ଫେଗରଳ୍ ତିଆରି କରିଛନ୍ତି ଓ ଉପର ପଟରେ ପାସ୍‌ପୋର୍ଟ ସହିତ ମିଶିଲା ଭଳିଆ ସବୁଜ ରଙ୍ଗ ଦେଇଛନ୍ତି ।

ଦାରଚେନ୍‌କୁ ମାଇଲିଏ ଖଣ୍ଡେ ଥିବ ପଡ଼ିଲା ଗୋଟିଏ ଝରଣା । ଦନ ପ୍ରାପ୍ତ ତନାଟା ହେବ । ବେଶୀ ଗଭୀର ନ ଥିବାରୁ ପାଣିରୁ ଥଣ୍ଡାଟା କଟି ଯାଇଥିଲା । ମୋ ପଛେ ପଛେ ଆସି ଭେଟିଲେ ସ୍ୱାମୀଦାସ ବାବା ଓ କଯନ୍ତ ଭାଇ । ମନ ଇଚ୍ଛା ଗାଧୋ-ଇଲେ । ମୁ ବିଶ୍ରାମ ନେଲି ।

ତନି ଜଣ ମିଶିକରି ଅଗେଇଲୁ । ବାଟରେ ଦେଖିଲୁ ଦୁଇ ଜଣ ମହିଳାଙ୍କ ସଙ୍ଗେ ଜଣେ ତୀର୍ଥଯାତ୍ରୀ ଦଣ୍ଡପ୍ରଣାମ କରି ପରିକ୍ରମା ଶେଷ କରିବା ଉପରେ । ଏହିପରି ପରିକ୍ରମା କରିବାକୁ ସେମାନଙ୍କୁ ପ୍ରାୟ ସାତ ଦିନ ଲାଗିଲା । ସେମାନେ ପ୍ରଫୁଲ୍ଲ ଓ

ସଠେକ ଦେଖା ଯାଉଥିଲେ । ସେମାନେ ଘଡକୁ ଓ ପେଟକୁ ଲଗାଇ ଗୋଟିଏ ଦେକା ଘଲ ବାନ୍ଧଥାନ୍ତି ପଡର ପରେ ଦାରଚେନ୍‌ରେ ପଡନ୍ତି ପରିକ୍ରମା ଶେଷ ହଲ୍ଲ ।

ବାଇଶ ମାଇଲକୁ ଲାଗିଲା ସାଢ଼େ ଛଅ ଦିନ ।

**ଦାରଚେନ୍ (୨ୟ ଥର) ଗ୍ଲଲଛି**

**୧୭୯+୧୭=୮୪ ମାଇଲ**

**ପରିକ୍ରମା ୧୭+୧୭=୩୨ ମାଇଲ**

ପରିକ୍ରମା ସଫଳ । ଜୀବନର ସର୍ବପ୍ରଧାନ ଲକ୍ଷ ଓ ଅଭିଳାଷ ପୂର୍ଣ୍ଣହେଲା । ମନରେ ଥାଏ କେତେଟା ଆଶା ଓ ସଫଳତାର ସନ୍ତୋଷ କେତେଟା ନିରାଶା ଓ ତତ୍‌ଜନିତ ଦୁଃଖ ଦୁଇଟାକୁ ହରି ନିଏ ସନ୍ୟାସ ଭାବ, ଏବଂ ନିର୍ବିକାର ନିର୍ଲିପ୍ତ ଶାନ୍ତି ଆଣି ଦେଇ । ମନକୁ ଅଶ୍ୱାସନା ଦିଏ—ମୁଁ ନିମିତ୍ତ ମାତ୍ର ।

ଯେଉଁଠାରେ ମଣିଷର ଇଚ୍ଛା ମଧ୍ୟ ଭଗବାନଙ୍କ ଆୟତ୍ତରେ ସେଠାରେ କୁମ୍ଭକର୍ଣ୍ଣ ଓ ମଧ୍ୟ କୈଠଭଙ୍କ ଭଳିଆ ଠକ ଦେଇଯିବା କଥା । ସବୁ ଭଗବାନଙ୍କ ଇଚ୍ଛା କରି ନିଶ୍ଚିନ୍ତ ହେବାକୁ ମଧ୍ୟ ଗ୍ଲସ ନାହିଁ । ବେଗ୍ ନ ରଖିଲେ ଚେଷ୍ଟରୁ ଧକ୍କା ଅସିବ । ବେଗ ରଖିବାକୁ ହେବ, ଇଚ୍ଛାକରି କାମ କରିବାକୁ ହେବ, ଇଚ୍ଛାଟା ଏବଂ ବୃହତ୍ତର ଇଚ୍ଛା ସହିତ ତାଳ ଦେଇ ରଖିବାକୁ ବା ମିଳେଇ ନେବାକୁ ହେବ ।

ଇଚ୍ଛା ବାଟ ଦେଖାଇ ଥାଏ, ବାଟରେ ଚଳାଇ ଥାଏ ଓ ଫଳ ଦିଆଇ ଥାଏ । ସେହେତୁ ସତ୍ ହେଉ ବା ଅସତ୍ ହେଉ ସାବଧାନତା ସହକାରେ ମନରେ ଇଚ୍ଛା ପୋଷଣ କରିବା କଥା । ଯାହାହେଉ ବୃଦ୍ଧଙ୍କର ଇଚ୍ଛା ଓ ବାଳର ସୂତର ଗତ ଜାଣିବା ପରେ ସେହି ବୈଜ୍ଞାନିକର ବାଞ୍ଛା ହେବ ନିଜକୁ ସେଥିପେ ଯୋଡ଼ି ଦେବା ।

ସେଠାରେ ପହଞ୍ଚିଲ ପରେ ପରେ ପୂର୍ବଦିନର ମନ୍ଦ ଢଙ୍ଗରେ ଆଉ କଣ୍ଟକ ଅନୁଭୂତ ହେଲି । କିନ୍ତୁ ପୂର୍ବ ଦିନର ଇଚ୍ଛା ଶକ୍ତିର ପ୍ରବଳପଣ ନଥିଲା । କର୍ତ୍ତବ୍ୟବୋଧ ଜ୍ଞାନରେ କାମ ଯେପରି ଅଧୁରା ନ ରହେ ସେଥିପାଇଁ ସେଠରେ ବସିଥିଲି । ମୋର ସ୍ୱାର୍ଥ 'ଚେତକ ଚେତନ' ।

ପରିକ୍ରମା ସରିଛି ବୋଲି ଅନେକ ତଥ୍ୟ ଅବଗତ କରାଇଲେ । କେତେକ ନିଗ୍ରହ ବୃଦ୍ଧ ଓ ବାଳକ ବାଳିକା ଭିକ୍ଷା ବୃତ୍ତିଥିଲେ । ସବୁଠୁ ଏକ ଅସହାୟ ଅବସ୍ଥା ।

ଦାରକେଶ ମନ୍ଦିରରେ ଥିଲା ଏକ ଝରଣା । ସ୍ତ୍ରୀ ଲୋକମାନେ ସେଠାରୁ ପାଣି ନେବା ପାଇଁ ଆସନ୍ତି । ପାଣି ନେବା ପାଇଁ ଗରା ବା ମାଠିଆ କିଛି ବ୍ୟବହାର ହେଉ ନଥିଲା । ବ୍ୟବହାର ହେଉଥିବା ପେଟ୍ରୋଲ୍ ଟିଣ ଓ ସେହି କାଟିପ୍ଲ କିଛି । ବାଉଁଶ ନଳୀ ମଧ୍ୟ ବ୍ୟବହାର ହେଉଥିଲା ।

ଆ-ହା ! ସୁନ୍ଦର କମନୀୟ ଗୋଲଗାଲ ଢ଼ଉଳ ଢ଼ାଉଳ ମୁହଁଟି । କେଶ ବଦନ । ନୀରବ ଠାଣି ।

ଭିକ୍ଷା ଅଭିଳାଷୀ ଜନତାର ଦୃଷ୍ଟି ଗୁଜସ୍ତ ଦଳ ଉପରେ ଟିକିଏ ବେଶୀ ପଡ଼େ । କିନ୍ତୁ ସେହି ଯୌବନପ୍ରାପ୍ତ ବାଳିକାଟି ମାଗୁଥିବା ଦଳ ଠାରୁ ଟିକିଏ ଦୂରେଇ ଥାଇ ମିନତି ଭରା ଦୃଷ୍ଟିରେ ଚାହୁଁଥିଲା । ତଥାପି ଟିକିଏ ଅଲଗା ଜଣା ଯିବାରୁ ମୁଁ ପଧ ତାକୁ ନିରୀକ୍ଷଣ କରୁଥିଲି । କଣ ବୁଝିକି ପାରି ହେଲା କେଜାଣି, ତାର ଡାହାଣ ହାତ ପାପୁଲିକୁ ଥରେ ଦୁଇ ଥର ତାର ଗୋଲଗାଲ ମୁହଁଟି ଉପରେ ବୁଲାଇ ବୁଢ଼ା ଅଙ୍ଗୁଠିକୁ ମୋ ଆଡ଼କୁ ଟେକି ଦେଖାଇଲା । ଏ କଥା କର୍ଷମାର ନଜରରେ ପଡ଼ିଲା । ଦୁଇ ଜଣ କଣ କଥାବାର୍ତ୍ତା ହେଲେ । ମୁଁ ପଚାରିଲି—କଥା କଣ ? ସେ କହିଲା—'ଏ ତୁମ ସାଙ୍ଗରେ ତୁମ ଦେଶକୁ ଯିବାକୁ ଚାହେଁ । ମୁଁ କହିଲି "ଏ ଘର ଭଲ ଲୋକ" । କଣ ନେବ ?' ବୁଢ଼ାଟା ଥଟ୍ଟା କରୁଛି ଭାବି ମୁଁ ହସିଦେଲି ।

କିନ୍ତୁ ମୋର ମନେ ହେଲା ଯେ ସେ ମୋର ଉତ୍ତରର ଅପେକ୍ଷାରେ ମୋତେ ଆବେଗପୂର୍ଣ୍ଣ ଚାହାଣିରେ ନିରୀକ୍ଷଣ କରୁଛି ।

ବୁଢ଼ା ଫେର ପଚାରିଲା । ହସି ଏଡ଼େଇ ଗଲି ।

କିଛି ସମୟ ପରେ ସେ ବାଳିକାଟି ଗୋଟିଏ ମୋଟଲି ଟିଣ ଧରି ଆସି ଝରଣାରୁ ଚଟୁଏ ଚଟୁଏ କରି ଧୀରେ ଧୀରେ ପାଣି

ଭରିବାକୁ ଲଗିଲ । ଅନ୍ୟମାନଙ୍କ ଅବସ୍ଥା ତାର ଚିଣଟି ବେଶ୍
ସୌଖୀନ ଓ ନୂତନ । ତାର ମନେ ମନେ ଯେ ସ୍ତ୍ରୀ ପୁରୁଷ ଢଙ୍ଗରେ
ପାଣି ନେଉଛନ୍ତି । ଅଥବାପୁ ବାଜନା ସାହାଯ୍ୟ ଗୃହସ୍ଥଙ୍କୁ— ଅଣା
ଖୋଜୁଛନ୍ତି ।

ସ୍ୱବଲ—ଦାସ୍ୟୀ କଏ ? ଦାସ୍ୟୀ କଣ ?

ନାସ୍ତିଶାସ୍ତ୍ରାଂ ଜଗଦୀଶ ରକ୍ଷ ।

ସନ୍ଧ୍ୟାବେଳେ ସ୍ୱାମୀ ସଦାନନ୍ଦ ସହିତ ସେଠାର ଗୋମ୍ଫା
ଦେଖିବାକୁ ଗଲି । ଗୋମ୍ଫାର ଚୌକିଦାର ସେଠାରେ ଥିଲା । ଘର
ଭୁଟାନରେ । ଡର୍ମଯୋଗାଶ ଭୁଟାନ ରକ୍ଷାପାଇଁ ଚୀନାମାନେ
ଆସିବା ପୂର୍ବରୁ ଦାର୍ଜିଲିଂ ଭୁଟାନ ଶାସିତ ହଉଥିଲା ।
ଚୌକିଦାରଟା କୁଅଡ଼େ କଲିକତା, ବୁଦ୍ଧଗୟା, ଲକ୍ଷ୍ନୌ ଇତ୍ୟାଦି
ଦେଖିଛି । ସହଜ ସ୍ୱଭାବରେ ସ୍ପଷ୍ଟ ହିନ୍ଦି କହେ ।

ବୁଦ୍ଧ ମୂର୍ତ୍ତିକୁ ପରିକ୍ରମା କରି ବୁଲି ଦେଖୁଛୁ, ଛେପଟେ
ବାହାରର ଗୋଟିଏ କନାର ପର୍ଦ୍ଦା ଦୃଷ୍ଟିରେ ପଡ଼ିଲା । ତାକୁ ଉଠାଇ
ତା ପଛରେ କଣ ଅଛି ଦେଖିବାକୁ ସଦାନନ୍ଦଜୀ କହିଲେ । ମନେ
ହେଉଥିଲା ଯେ ସେ କୌଣସି କୌତୂହଳ ସୃଷ୍ଟି କରିବାକୁ
ଚାହୁଁଛନ୍ତି । କୈଳାସ ଭ୍ରମଣ କରିସାରିଥିବା ହେତୁ ଗର୍ବଜନିତ
ବେଖିଆଲରେ ଝପଟ୍ଟିଆ ହୋଇ ପର୍ଦ୍ଦାଟା ଯେମିତି ଉଠାଇଛି
ଦେଖି ଚମକି ପଡ଼ିଲି । କି ଭୟଙ୍କର ଜୀବନ୍ତ ମୂର୍ତ୍ତି ସେ । ଲେଲ-
ଜିହ୍ୱା, ତୀକ୍ଷ୍ଣ ଦୃଷ୍ଟି, ଖଡ଼୍‌ଗହସ୍ତା, ବିକଟାଳ ଦେବୀ ମୂର୍ତ୍ତି ।
ପର୍ଦ୍ଦାଟା ପାଖେ ପାଖେ ଛାଡ଼ି ଦେଇ ସଂଯତ ହେଲି ।

ପରକମା ଯାଉଥିବା ହେତୁ ସମସ୍ତଙ୍କୁ ଡାକର୍ ଦେବା ପାଇଁ ଅନ୍ୟ ସନ୍ନ୍ୟାସୀମାନେ ମନସ୍ଥ କଲେ । ସଇସମାନଙ୍କ ଭିତରୁ ଜଣେ ଆସି ପ୍ରସ୍ତାବଟା ବାଢ଼ିଲା । 'ପର୍ବୃବଳ—ଆପଣଙ୍କର ଟାଇ-ବାରେ କିଛି ଆପତ୍ତି ଅଛି କି ? ବୁଝାଇ ଦେଲା ଯେ ସେମାନଙ୍କ ପାଖରେ କିଛି ଅଳ୍ପ ବଳକା ରଙ୍ଗୀ ପାଇଛି । ସେଥିରୁ ଓ ଅକ୍ରୁଦମ୍ ହେବ । ଦକ୍ଷିଣାପାଞ୍ଚଟି ତାଙ୍କ ତରଫରୁ ମିଳଇବେ । ସଦ୍ଧାନନ୍ଦ ସ୍ୱାମୀ କହିଲେ—ଆମରତ ଅଛି ଅଛି, ଆମର ଅଛି ତାଙ୍କର ଅଛି ଅନ୍ନର ମିଶାଇ ଦିଅ । କିଛି ଆପତ୍ତି ନାହିଁ । କିନ୍ତୁ ଆମେ ତାଙ୍କର ଟାଉବୁ ନାହିଁ ।

ସେ ଧନ ଗୁର ଗୃମଚ ଅକ୍ରୁଦମ୍ ଦେଇ ତୃପ୍ତିଟା ଲୁଚି ଖାଇଥିଲି । ଅକ୍ରୁଦମ୍ ନିଅଣ୍ଟ ପଡ଼ିଲା । ଥିଲେ ଦଶ ଜଣରେ ଦଶ ବାର ପଡ଼ ଖାଇଥାନ୍ତେ । ମାହାଦେଜ ଗର୍ବସ୍ୱାଙ୍ଗ ଛାଡ଼ିବା ପରେ, ଏ ହେଲା ଏକ ଭୋଜନ—ଆଜଣୁ ନ ହେଲେ ବା କଣ ହେଲା ?

ସେଦିନ ଘଟିଲା ଘଟଣା । ତମ୍ବୁ ଭିତରେ ଗଣ୍ଡୁ, ସଦ୍ଧାନନ୍ଦ ସ୍ୱାମୀଙ୍କ ସନ୍ଧ୍ୟା କଥାବାର୍ତ୍ତା ହେଉଛି, କଥା ଲହରରେ 'ମିଷ୍ଟର' ବୋଲି ସମ୍ବୋଧନ କରିଦେଲି । ଏପରି ସମୟ ସମୟରେ କରିଥାଏ ।

ସେ ସମୟର ବୟସ୍କଟା ଥିଲା ପରର ନିନ୍ଦା । ପର ନିନ୍ଦା ଖଜାଣିଆ ଭଣ୍ଡ ଜଳଗ୍ର ମନର କଣ୍ଡୁ ନିବାରଣକାର୍ଯ୍ୟ—ଅବସର ସମୟରେ । ଜମୁକାଇବା ଥିଲା ମୋର ଉଦ୍ଦେଶ୍ୟ । ସେ ବୟସ୍କଟା ପ୍ରତି ମୋର ବିଶେଷ ଆଗ୍ରହ ନଥିଲା କି ଘୃଣା ନଥିଲା । ଜୀବନର

କିଛି ସମୟ ଯା ସମ୍ବନ୍ଧ ଯୋଡ଼ ହୋଇ ଆସିଛି ତାକୁ ସ୍ୱାଗତ ଭଳି ଆଦର ଦ୍ୱାରା ଭିତରେ 'ଶାନ୍ତ ବନାଏ ରଖିବା ଥିଲା ମୋର ଉଦ୍ଦେଶ୍ୟ । କିନ୍ତୁ ଯେମିତି 'ମିଷ୍ଟର' ବୋଲି ସମ୍ବୋଧନ କରିଛି, ଅନ୍ୟ ଭାବରେ ଥିବା ଦ୍ୱେଷଟା ମୋ ଉପରକୁ ଝାମ୍ପ ଦେଲା । ଦଶ ଓଲଟି ଗଲା । ଗୁଡ୍‌ମ୍, ଗୁଡ୍‌ମ୍ ତୋପ ଫୁଟିଲା । ଥିଲା ଅଗ୍ନିକ୍ ଓ ଉଷ୍ଣ ମେଗାଟନ୍‌ର, ଓ ତାର ପାନ୍ତସମ ପ୍ରଚଣ୍ଡ ଧକ୍କା ଓ ବେଗରେ କହିଲେ—କୈଲାସ ଭ୍ରମଣ କରି ଆସିଛ, ସାଧୁଙ୍କୁ କପରି ସମ୍ବୋଧନ କରିବା କଥା ଜାଣି ନାହଁ ? ଯଦ୍ୟପି ସେ ସେମିତି ଜଣେ ଛୋଟିଆ ନୁହେଁ ବା ନିଜ ଅପେକ୍ଷା ବଡ଼ ବୋଲି ନ ଭାବୁଛ, ଗୃହୀ ମାନଙ୍କେ ଗେରୁଆଧାରୀ ସନ୍ୟାସୀଙ୍କୁ ନମସ୍କାର କରିବା ଶାସ୍ତ୍ରାନୁମୋଦିତ । ମନୁ ସଂହିତା ପଢ଼ିଛ ?

ମୁଁ କହିଲି—ନାଁ, 'ନୂଆ କଥା ଶୁଣୁଛି ।'

ସେ—ହଁ ମନୁ ସଂହିତା ପଢ଼ ଜାଣିବ । ଏତେ ଡମ୍ଭର ଅଛି ବୋଲି ମୁଁ ଟିକିଏ ମିଶା ମିଶି କରୁଛି ବୋଲି ଯେଚ୍ଛା ତା କହିବ ?

ମୁଁ—ମୋର ଆଉ କଣ କହିବାର ଥିଲା ?

ସେ—କାହିଁ, 'ସ୍ୱାମୀଜୀ' ବୋଲି ଡାକୁନ ? ଏହା କହି ସେ ପୂର୍ବୋକ୍ତ ବକ୍ତବ୍ୟର ସାରାଂଶର ପୁନରାବୃତ୍ତି କଲେ ।

ମୁଁ ତାଙ୍କର ବଜ୍ରାଳି ବେଗ ସମ ଧକ୍କାରେ ଧସି ନଯାଇ, ଯାହା ସାମାନ୍ୟ ବିଚଳିତ ହୋଇଥିଲି ତାକୁ ସଜାଡ଼ି, ପ୍ରକୃତିସ୍ଥ ହୋଇ, କ୍ଷିପ୍ର ଗତିରେ ଭାବିବାକୁ ଲାଗିଲି —

ମୁଁ ମଧ୍ୟ ସାଧୁ ଅଖ୍ୟା ପାଇଛୁ । ଓ, ସାଧୁ ହିସାବରେ ପରିଗଣିତ ହୋଇଛୁ । ଅଧିକାଂଶ ସାଧୁ ମୋଠାରୁ ଅଧିକ ବିଷୟ—ବାସନାରେ ଜଡ଼ିତ ।

ସେଦିନ ହିମାଳୟର ପ୍ରଥମ ଯାତ୍ରାର ପ୍ରାରମ୍ଭରେ, ହିମାଳୟର ଦ୍ୱାରଦେଶ, ହରିଦ୍ୱାରଠି ପହଞ୍ଚି, ପ୍ରଥମ ଦିନ ନିକଟସ୍ଥ ଜଙ୍ଗଲରେ ଥିବା ଚଣ୍ଡି ମନ୍ଦିରକୁ ଗଲି । ସାଙ୍ଗରେ ଗୋଟିଏ ବନ୍ଧୁ ବି ଚାଲିବାର ଥିଲେ । ରାସ୍ତାରେ ଜଙ୍ଗଲର ପ୍ରାରମ୍ଭରେ ଗୋଟିଏ କାଳୀ ମନ୍ଦିର ପଡ଼ିଲା । ଦଳଗତ ଶୃଙ୍ଖଳା ଜ୍ଞାନର ଆଧିକ୍ୟ ହେତୁ ମୁଁ ସମସ୍ତେ ଯୋତା କାଢ଼ି ଭିତରକୁ ପଶିଲେ ପର୍ଯ୍ୟନ୍ତ ମୁଁ ବାହାରେ ରହିଲି । ଭିତରେ ଜଣେ ବଙ୍ଗାଳି ଭଦ୍ରଲୋକ ଚଣ୍ଡିପାଠ କରୁଥାଏ । ପିନ୍ଧିଥାନ୍ତି ଧୋତି ଓ ପଞ୍ଜାବି । ମୋର ଧାରଣାରେ ବ୍ରାହ୍ମଣର ଉପବୀତ ତାଙ୍କଠାରେ ନଥିଲା ।

ବୁଝିଲି—ଏ ମଧ୍ୟ ମୋ ପରି ଜଣେ ଲୋକ ଯେକି ପୌରାଣିକ କାଳୀଙ୍କୁ ଶକ୍ତି ଦେବୀରୂପେ ଜାଣିବାରେ ସଚେଷ୍ଟ । ଏହି ବ୍ରହ୍ମାଣ୍ଡର ସୃଷ୍ଟି ତଥା ସୃଷ୍ଟି ସ୍ଥିତି ଓ ସଂହାର ଚକ୍ରର ପ୍ରବର୍ତ୍ତନକାରିଣୀ ଶକ୍ତିର ଉପାସନା ଏଠାରେ ଅନେକ ଲୋକ ମନର ଅଭାବ ମେଣ୍ଟାଇବା ପାଇଁ କରନ୍ତି । ସେହି ଶକ୍ତି ସାହାଯ୍ୟରେ କାମନା ସୃଷ୍ଟି କରାଇ ମନର ଅଭାବ ପୂରଣ କରିବାକୁ ଚାହାଁନ୍ତି, କିନ୍ତୁ ଚକ୍ରରୁ ବାହାରେ ରହିବାକୁ ଚାହାନ୍ତି ନାହିଁ ଓ ସେହି ସୃଷ୍ଟିଟାକୁ ଟିକେ ସମୟ ପର୍ଯ୍ୟନ୍ତ ସ୍ଥିର ରଖିବାରେ ଭୋଗ କଲା ପରେ ଅନିବାର୍ଯ୍ୟ ସଂହାର ଅବସ୍ଥା ପ୍ରତି ପ୍ରସ୍ତୁତ ନଥାଇ ଦୁଃଖ ଭୋଗ କରନ୍ତି । ତେବେ ଦୂରରହି । ତେବେ ଉପାୟେ ନ ବସି ଦଣ୍ଡା ଉପରେ ବସିବା ଉଚିତ ।

ଇଂରେଜୀ ପାଠ ଆଉ ସଂସ୍କାର ନେଇ, ବହୁ ଚେଷ୍ଟି ଭକ୍ତା-ଜ୍ଞାନ କଳୀତ ଭେଖାଡ଼ରରେ ଭଗବାନଙ୍କୁ 'ସର୍ବଂ ଖଲ୍ୱିଦଂ ବ୍ରହ୍ମ' ଜ୍ଞାନ କରି ଓ ପ୍ରକୃତ ଶୃଙ୍ଖଳା ଜ୍ଞାନର ଅଭାବ ହେତୁ, ଗୋଡ଼ରେ ଯୋତା ଥାଇ ମନ୍ଦିର ଭିତରକୁ ପାଦ ମାଡ଼ିଲି । ମୋର ନଜର ଥାଏ ସେହି ପାଠୀଙ୍କ ଉପରେ । ଯେମିତି ଗୋଟେ ଗୋଡ଼ ଏହୁଣ୍ଡି ଆରପଟେ ପଡ଼ୁଛି, ଆଘାତପ୍ରାପ୍ତ ସାପ ଭଳିଆ ଫେଣା ବୁଲଇ ମୋ ଆଡ଼କୁ ମୁହଁ କଲା । ବୃଦ୍ଧ ରଷ୍ଟ ହେଲା । ଫେଣା ସାଙ୍କୁଡ଼ି ଗଲା । ଭାଉଁଳ ଗଳାରେ କହିଲା—

ଯୁତା ନିକାଲ ଦିଜିଏ ।

ସହପାଠୀଙ୍କ ପ୍ରତି ହମଦର୍ଦ୍ଦି ଥିବାରୁ ଯୋତା ବାହାର କରି, ଭିତରକୁ ଗଲି । ଭାବିଲି—ଲୋକଟାର କୁସଂସ୍କାର ଯାଇ ନାହିଁ । ନିଷ୍ଫଳରେ ପାଠ ପଢୁଛି ।

ଆମେ ଚଣ୍ଡୀ ମନ୍ଦିର ଦେଖିବାକୁ ଆଗେଇଲୁ । ମନ୍ଦିରଟି ଗୋଟିଏ ପାହାଡ଼ ଉପରେ ଅବସ୍ଥିତ । ବାଟ ଥାଏ, କିନ୍ତୁ ଉଠା-ଣିଆ । ଖରାଦିନ । ପ୍ରଚଣ୍ଡ ତାପ । ଖୁବ୍ ଶୋଷ ହେଉଥାଏ । ହେଲେ ଭଲ ହେଲା, ଅନେକ ଜଳଛତ୍ର ମଧ୍ୟ ଖୋଲା ଯାଇଥାଏ । ପ୍ରତ୍ୟେକ ଜାଗାରେ ପାଣି ପିଇ ପିଇ ଚାଲିଲୁ ।

ଓ, ପ୍ରତ୍ୟେକ ଜଗାରେ ଶୁଣିବାକୁ ପାଇଲୁ —

ଦେଖନ୍ତୁ ଏ ଗୋଟିଏ ଦାତବ୍ୟ ଅନୁଷ୍ଠାନ । କି କଷ୍ଟ ଦେଖ-ନ୍ତୁ ତ, ପାଣି ଟିକକ ପ୍ରାଣ ରଖେ । ଘୋଡ଼ା ପିଠିରେ ଏତିକି ଜେତିକି ଦେଇ ପାଣି ବୁହାଇ ଏଠାକୁ ଅଣାଯାଉଛି । ଆପଣଙ୍କର

ବଦାନ୍ୟତାରେ ହିଁ ଏ ଅନୁଷ୍ଠାନ ଜୀଇଁ ରହିବ । ଆପଣ ଯେତେ ଇଚ୍ଛା ବ୍ୟବହାର କରିପାରନ୍ତି । ଯେତିକି ପାରିବେ ଦେଇ ଯାଆନ୍ତୁ । ସେହି ପତ୍ରିକାଟି ଓ ମୋ ଭିତରେ ଅନେକ ଲେଖା ଗୁଡ଼ା କରି ଦେଇ ଥାନ୍ତି । ଜଳଯୋଗାଣ ଅପେକ୍ଷା ଗୁଡ଼ା ସଂଗ୍ରହର ଗୃପଟା ଟିକିଏ ବେଶୀ ଭଲଆ ଲାଗିଲା ।

ପାହାଡ଼ ଉପରେ ଶ୍ଳେଟ ଗୋଟିଏ ମନ୍ଦିର । କାନ୍ଥ ବାଡ଼ ଗୃହପଟରେ ଅଙ୍ଗାରରେ ନାମ ଲେଖା । ମନ ପ୍ରସନ୍ନ ଲାଗିଲା । କଷ୍ଟର ଫଳ ପାଇଲି ନାହିଁ । ଫେରିଲି ।

ଜଙ୍ଗଲ ଶେଷରେ ନଦୀ ପାର ହେବା ପାଇଁ ଡଙ୍ଗାକୁ ଅପେକ୍ଷା କଲି । ମୁଁ ଟିକିଏ ଜଙ୍ଗଲ ଭିତରକୁ ପଶି ବୁଲୁଥିଲି, ଠାଏଁ ଠାଏଁ ଗୁଡ଼ାଏ ବେଲଗଛ ଦେଖିବାକୁ ପାଇଲି । ସୁବର୍ଣ୍ଣ ଫଳରେ ଗଛ-ଗୁଡ଼ିକ ପରିପୂର୍ଣ୍ଣ । ଜଳ ଝକ୍ ଝକ୍ । ଦୁଇ ତିନୋଟି ପାଚିଲା ବେଲ ଦେଖି ଲୋଭ ଲାଗିଲା । ହାତରେ କାଠ ଖଣ୍ଡେ ଦେଖି ତାର ସଦ୍ ବ୍ୟବହାର କଲି । ସୁବର୍ଣ୍ଣ ଫଳରେ ଅମୃତର ସ୍ୱାଦୁ ପାଇଲି । ଏହା ପରେ ଆଉ ଟିକିଏ କଣ୍ଟାଳିଆ ବେଲ ଉପରେ ଆକ୍ରମଣ କଲି ।

ଏପରି ସମୟରେ ଅଦୂରରେ ଦେଖିବାକୁ ପାଇଲି, କେତେ ଜଣ ଦୀର୍ଘକାୟ, ଗୌରବର୍ଣ୍ଣ, ହୃଷ୍ଟପୁଷ୍ଟ, ଗୌରିକଧାରୀ, ଜଟା-ଶ୍ମଶ୍ରୁକୁ ତଳେ ଛାଡ଼ି ଗଛମୂଳେ ଗଡ଼ ବିଶ୍ରାମ କରୁଛନ୍ତି ।

ସେତେବେଳେ ମୋର ଧାରଣା ଥିଲା ଯେ, ଗେରୁଆଧାରୀ ମାନେହିଁ ସାଧୁ ନ, ଅଧିକାଂଶରେ ଚୋର ଓ ଭଣ୍ଡ । ସତ ସାଧକ,

ବହୁତର ଅଧିକାଂଶ ହୋଇ ନଗ୍ନପ୍ରାୟ ଲୋକ ଉପରେ ନିଷ୍ଠୁର ପରୀକ୍ଷା କରନ୍ତି ଓ ଥୋକେ ଦୁର୍ବାସା ଭଳିଆ ଅନାସ୍ଥା କରନ୍ତି । ସେମାନଙ୍କ ଠାରୁ ଦୂରରେ ରହେ । କାଁ ଭାଁ ଗୋଟେ ଦୁଇଟା ଡ଼ଇଢୋଠୀର ଥାଇ ଧାରନ୍ତି, କିନ୍ତୁ ଲୋକବସତିରେ ଅଡୁଆଳରେ ।

ସେମାନଙ୍କର କଥାବାର୍ତ୍ତାର ଆବାଜ ଶୁଣି ସେଆଡ଼କୁ ଦୃଷ୍ଟି ନିକ୍ଷେପ କରିବା ମାତ୍ରେ, ସେମାନଙ୍କ ଭିତରୁ ଜଣେ ପଚାରିଲା—

ଆପ ସାଧୁ ହେଁ କ୍ୟା ?

ମୁଁ—ନେହିଁ ଜୀ

ସେ—ଆପ୍‌କୋ କୈସେ ମାଲୁମ୍ ?

ମୁଁ—ହମ୍ ଗେରୁଆ ନହିଁ ପହନ୍‌ତେ

ସେ—କ୍ୟା ଗେରୁଆ ପହନ୍‌ନେ ବାଲେ ସାଧୁ ହୋତେ ହେଁ ।

ମୁଁ— ନହିଁ ତୋ ଔର କ୍ୟା ?

ବେଉସା ନଥାଇ ମଣିଷର ବଳ ଓ ରକ୍ତର ତେଜ ଥିବା ହେତୁ ଭାବିଥିଲି ଯେ ଏମାନେ ବୋଧହୁଏ ଡକାଇତ ବା ଚୋରି କରି ପେଟ ପୋଷୁଥିବେ । ପାଖକୁ ଯାଇନି ।

ପ୍ରଶ୍ନ ହେଲା—ଆପ କାହାଁକେ ରହନେ ବାଲେ ?

ମୁଁ—ଭୁବନେଶ୍ୱର କେ ।

ସେ—କ୍ୟା ପୁରୀକେ ପାସ !

ମୁଁ—ଜୀ ହାଁ ।

ସେ—କ୍ୟା, କାମ୍ କରତେ ହେଁ ?

ମୁଁ—ଜୀ-ହାଁ, (କାମ ବତାଇଲି, ବୁଝିଲେ)

ସେ—ସାଦ କବେଁ ହେଁ ?

ମୁଁ—ଜୀ

ସେ—କ୍ୟା ଭଗବାନ୍ କୋ ବିଶ୍ୱାସ କରତେ ହେଁ ?

ମୁଁ—ବିଶ୍ୱାସ କା ସବାଲ ନହିଁ ଉଠ୍‌ତା, କେଁୟାକି ଭଗବାନ ତୋ ହେ ହି ।

ସେ—ଈଶ୍ୱର କ୍ୟାଁ ଅ ?

ମୁଁ—ପ୍ରେମ୍ ହେ ।

ସେ (ସିଦ୍ଧାନ୍ତ ଶୁଣାଇଁ)—ଆପ୍ ସାଧୁ ହେଁ ।

ମୁଁ—ଆପ୍‌କୋ କୈସେ ମାଲୁମ୍ ?

ସେ—ଆପ୍ ବେଲ୍ ଖାତେ ଥେ ।

ମୁଁ—ହମାରି ତରଫ ସଭି ଲୋଗ୍ ବେଲ୍‌ଖାନେ ପସନ୍ଦ କରତେ ହେଁ ।

ସେ—ଆପ୍‌କା ଶିରପର ଟୀକା ହାବଲ୍ ହେଁ । ଉସ୍‌ସେ ମାଲୁମ୍ ହୁଆ ।

ମୋ ମୁଣ୍ଡ ଉପରେ ଟିକା ଚିହ୍ନ ହଳଦିଆ ଚନ୍ଦନର ଗୋଟିଏ ଟୋପା ଥାଏ । ବୁଝିଲି ଯେ ହଳଦିଆ ରଙ୍ଗ ପ୍ରତି ଶ୍ରଦ୍ଧା ଥିବା ହେତୁ ମୁଁ ହେଲି ସାଧୁ ।

ମୁଁ—ଆପଲୋଗ୍ ଈଶ୍ୱର୍ କ୍ୟାଁ ଅ ।

ସେ—ଶୁନା ହେ କି ଈଶ୍ୱର୍ ଏକ ମହାତ୍ମା ହେଁ । ଉନ୍‌କେ ମିଲନେ ଆଏ ହେଁ ।

ମୁଁ—ମୈଁ ତୋ ନହିଁ ଶୁନା ହେ ।

ସେ—ଓହୋ, ଉସ୍ ମନ୍ଦର ମେ ରହତେ ହେଁ ।

ମୁଁ—ଉଧର ଏକ ବେଙ୍ଗାଲି ଗୃହସ୍ଥ ହେ ।

ସେ— ଓ୍ୱାହ ହେଁ ।

ଭୁବନ— ହୋଇଥିବ, ଏମାନଙ୍କ ବିଶ୍ୱାସରେ ଏମାନେ ଥାନ୍ତୁ । ଅଳସୁଆ ଗଣରେ ସାଧନା ଛାଡ଼ି ସହଜରେ କିଛି ପାଇଯିବେ ବୋଲି ଛଳବ ଖାଇ ବୁଲୁଛନ୍ତି ।

ଟିକିଏ ଉଆଁ ଓକ୍‌ନ୍ତ କରି ସେମାନଙ୍କୁ ଦୂରରୁ ଅଡ଼େଇ ହୋଇ ଚାଲିଗଲେ ।

ଯାହାକୁ ଫେରି ଘଟଣାଗୁଡ଼ିକୁ ମନେ ପକାଇ ସେଠାନ୍ତ କାହିଁ ହଜମ କରୁଛନ୍ତି, ମନରେ ବିଦ୍ରୂପର୍ ଖେଳିଗଲା ।

ସତେ ତ ! ମୁଁ ହେଲି ସାଧୁ । ଯେ ଭଗବାନଙ୍କ ଅସ୍ତିତ୍ୱ ଉପରେ ବିଶ୍ୱାସ କରେ ସେ ହେଲା ସାଧୁ । ଅବ କେଉଁଟି ମହାତ୍ମା କିପରି ହେଲା ? ତାର ଶତ୍ରୁ, ତାର ପରିବେଷ୍ଟନୀ ଓ କର୍ମକ୍ଷେତ୍ରର ପରସ୍ପର ଭିତରେ ଖେଳେଇ ହୋଇଥିଲା— ପରିବ୍ୟାପ୍ତ ଥିଲା ।

ଏ ପୃଥିବୀ ରଙ୍ଗମଞ୍ଚରେ ଗେରୁଆ ପିନ୍ଧି ନାଟକର ଅଭିନୟ କଲେ ଯେ ସେ ସାଧୁ ହୋଇଯିବ ଏ କଥା କେବେ ହୋଇ ପାରେ ନାହିଁ । ସାଧୁର ସଜ୍ଜା ଭିନ୍ନ । କିନ୍ତୁ ଏଠି ଯୁକ୍ତିର ସ୍ଥାନ ନାହିଁ । ସେହେତୁ ସଦାନନ୍ଦ ମହାଶୟଙ୍କର ବିତର୍କକୁ ଖଣ୍ଡନ କରିବାକୁ ଯାଇ ତର୍କ ଛଳରେ ବିତର୍କ ବାଢ଼ିଲି— "ସବୁର ଗୋଟିଏ ମର୍ଯ୍ୟାଦା ଅଛି ।" ଇଂରେଜୀରେ କହିଲେ

ମିଷ୍ଟର କୁହାଯାଏ, ହିନ୍ଦରେ କହିଲେ ସ୍ୱାମୀଜୀ କୁହାଯିବ । କ୍ରମେ ପଡ଼ ସ୍ୱାମୀଜୀ ଡାକ ଶୁଣିବାକୁ ମୁଁ ତାହା ହେଲେ ହୃଦରେ କଥାବାର୍ତ୍ତା କର ।

(ଯବନିକା ପତନ)

## ବାହୁଡ଼ା ଯାତ୍ରା, ଜୁଲାଇ ପାଞ୍ଚ

ନିଦ ଭାଙ୍ଗିଲା । ହୋସ ଆସିଲା । ଘମାଘୋଟ ଅନ୍ଧକାରକୁ ଛିନ୍ନ ଭିନ୍ନ କରି ଆଲୋକ ରଶ୍ମି ମାଡ଼ି ଆସିଲା । ସକାଳ ହେଲା । ସୂର୍ଯ୍ୟ ଉଦୟ ହେଲେ । ମନରେ ଉଦୟ ହେଲା—ଯାତ୍ରା ଶେଷ, ଏଠାରୁ ବାହୁଡ଼ା ଆରମ୍ଭ ।

ଯାହାର ନ ଜାଣିବା ନାହିଁ । ଅଜଣାର ଆଶଙ୍କା ନାହିଁ । ଘର ଗାଁ ପାଣି ପ୍ରତି ଡ଼ର ନାହିଁ ।

କାମ ଶେଷ । ଥିଲା ବଡ ଶକ୍ତ ଗୋଟେ ଧଡ଼ସରେ ମାଡ଼ି ଆସିଥିଲା । ଗୋଟିଏ ଗୋଟିଏ ଫେରିଲା ।

ଗୁଡ଼ାଏ ଆଶା ଅଭିଳାଷ ଧରି ଆସିଥିଲି । କେତୁଟା ପାଇଛି । ଅନେକଟା ହୋଇନାହିଁ ପାଇଛି ଅସୀମ କଷ୍ଟ । ଯାତ୍ରା ହୋଇଛି ନିରର୍ଥକ—କେବଳ ଯାତ୍ରାଟା ହୋଇଛି ସଫଳ, ଉଦ୍ଦେଶ୍ୟଟା ହୋଇଛି ନିରର୍ଥକ ।

ସହଜାନନ୍ଦ ସ୍ୱାମୀଙ୍କୁ କହିଲି । ସେ କହିଲେ—ହାଃ ହାଃ, କଣ ଭାବିଥିଲ, ସାଙ୍ଗେ ସାଙ୍ଗେ କଣ ଗୋଟିଏ ବଡ ଧରଣର କଥା ହୋଇଯିବ ? ନା, ନା,—ଏ ଶିବ କ ନା—ଧୀରେ ଧୀରେ ଭିତର ଓ ବାହାର ବଦଳାଇବାକୁ ଲାଗିବ । ଜଣା ପଡ଼ିବ ଅନେକ ଦିନ ପରେ । ବୁଝିଲ—ସତେ ?

ତପସ୍ୟାନନ୍ଦଜୀ ସାଙ୍ଗରେ ଜଣକୁ ଧରି ମାନସରୋବରର ପରି-କ୍ରମା କରିବେ ବୋଲି ଗଲେ । ତାଙ୍କର ଫଳାଫଳ ପ୍ରତି ଭ୍ରୂକ୍ଷେପ ନ ଥିଲା ଓ, ଆମେ ସେ ଦିନ ଆଠ ମାଇଲ ଚାଲି ବିନା ଅଭ୍ୟାସରେ ବରଖା ନାମକ ଯାଗାରେ ପହଞ୍ଚିଥିଲୁ ।

## ହରଖା

## ଗ୍ଲୁକଲରୁ ୧୮୫+୮=୧୯୩ ମାଇଲ୍

ଏହାକୁ ଭଦ୍ରୁ ପଡପାର । ଜଡାଦ୍ଧରଣ ପଦ ଭୁଲ ହୁଏ, ବହନ୍ତୁ ଛଦପାର । ଚେଁଲାସର ମନୋମୁଗ୍ଧକର ଐଶ୍ବର୍ଯ୍ୟ ନୈସର୍ଗିକ ଦୃଶ୍ୟ ଦେଖିବା ପରେ, ଦେଖିବାକୁ ପାଇଲ ମଶାଣି ଭୂଇଁ । ଗୃହ ପାଞ୍ଚଟା ଘରର କେବଳ ଭାନ୍ତୁ ରହିଛି । ଭାନ୍ତୁର ଉପର ପଟରେ ଗୃଖଣ୍ଡେ ଖଣ୍ଡେର ଭଲାର ଏକି ଧୋଇ ଯାଇଛି । ଶୁଣିବାକୁ ପାଇଲ 'ଯେ ଏଠାରେ ବାସିନ୍ଦା ଚୀନାଙ୍କ ସହିତ ଯୁଦ୍ଧ (ବା ଶତ୍ରୁତା) କରିଥିବାରୁ ଚୀନାମାନେ ଏମାନଙ୍କର ଘର ପୋଡ଼ି ଦେଇଛନ୍ତି । ସେଠାର ବାସିନ୍ଦା ଯଥେଷ୍ଟ ପ୍ରଭାବଶାଳୀ ଓ ସମ୍ଭ୍ରାନ୍ତ ଥିଲେ ବୋଲି ଶୁଣିଲି ।

ଆଃ ! ଦେଖି ଭୂଇଁ ଯୁଗ ଯୁଗ ଧରି ପାଞ୍ଚଟି ପରିବାରର ପିଲା ଛୁଆଙ୍କ କୋଳାହଳରେ ପରିପୂର୍ଣ୍ଣ ହୋଇଥିଲା ଓ ପାହାଡ଼ ବକ୍ଷରେ ଗାଈ ଗୋରୁ, ଛେଳି, ମେଣ୍ଢା ଅନବରତ ଚରିବୁଲି କରୁଥିଲେ, ସେଇ ଭୂଇଁ ଆଜି ପିଲ୍ଲୁଲାଟକି ଯୁଦ୍ଧ ଭୂଇଁ ଓ ପରେ ପରେ ମଶାଣି ଭୂଇଁରେ ପରିଣତ ହୋଇଛି । ମୋତେ ଦେଖାଗଲା ଯେପରି ଶବରୂପି ଭୂଇଁ ଉପରେ କାଳୀରୂପି ଭାନ୍ତୁ ଦଣ୍ଡାୟମାନ, ଏକ ଅବର୍ତ୍ତନର ନିୟମ ସୂଚାଇ । ଜଗତ ପରିବର୍ତ୍ତନ ଶୀଳ, ସୃଷ୍ଟି-ସ୍ଥିତି-ସଂହାରର ଖେଳ ଓ ଶେଷରେ ଲୟ । ସଂହାର ହେଉଛି ମାର ଗେଲ ଓ ଲୟ ହେଉଛି ମାର ଭୋଡ଼ ।

ମନର ବେଗ ଅନେକକୁ ଟପି ଗତି କରେ ।

ମନା ରଷ୍ଟ୍ରରେ ଦେଖିବାକୁ ପାଇଲି ଅଷ୍ଟସ୍ୱସ୍ୱ ବାଳକ ବାଳିକା ପ୍ରଶାନ୍ତ ମୁଖରେ ଏପଟ ସେପଟ ହେଉଛନ୍ତି, ଗୃହିଣୀମାନେ ଘର ଧନ୍ଦାରେ ଲାଗିଛନ୍ତି, କେତେ ଜଣ ଝୋଲ ଭିତରେ ବସି ଲୁଗା ବୁଣୁଛନ୍ତି ଓ ଆଉ କେତେ ଜଣର ସୂତା କାଟୁଛନ୍ତି । ଗାଁ ଗାଁ ଏଠି ସେଠି ଚମକ ଗାଈ ଚରୁଛନ୍ତି । ବୁଢ଼ା ବୁଢ଼ୀ ଜଣେ ଦୁଇ ଜଣ ମାଳା ଗଡ଼ାଉଛନ୍ତି । ଧରମୁଣ୍ଡା ହୋଇ ଦୁଇପଟରୁ ଦୁଇ ଦଳ ଟୋକା ଆସୁଛନ୍ତି । ସାଥିରେ ଗୃହକର୍ତ୍ତାମାନେ ଅଛନ୍ତି, ମୁଣ୍ଡରେ ହାତ ଦବାଇ ଚାଲିଛନ୍ତି । ଉତ୍ତର ପଟରୁ ନୁଣ ବୋଝେଇ ଆଣିଛନ୍ତି ଓ ଦକ୍ଷିଣ ପଟବାଲା ଅନାଜ ଓ ଶର୍କରା ଆଣିଛନ୍ତି ଓ ରାହାଣି ମୁହଁର ହସ ଟିକକ ଦେଖିବା ପାଇଁ ବ୍ୟଗ୍ର ପଦକ୍ଷେପ ନେଉଛନ୍ତି ।

ଜବେଇରଙ୍କ ଦୃଶ୍ୟଟି । ମନେହେଲା ନେପାଳର ଭୂଦ୍ଧିଗର ପ୍ରଶାନ୍ତ ଓ ନିଷ୍ଠର, ସବୁଜ ଓ ଜଙ୍ଗଲୀ ନଦୀଗୁଡ଼ିକ ଉପରେ ଗୋଟିଏ ବଂଶିର ରାଗିଣି ଛୁଟୁଛି ।

ନେପାଳୀ ବାବାଙ୍କୁ ପଚାରିଲି— ଏଠାରେ ଥିବା ଲୋକେ କେବେ କୁଆଡ଼େ ଗଲେ ?

ସେ— 'କ୍ୟା ପତା ?'

ଓ, ହଠେ ନା ଧକେ ନ ଏଡ଼ୁ ଅସ୍ଥି ମାଂସ ଧାରୀ ଚର୍ ସମ୍ପର୍କ ଚର୍ମ ସମ୍ଭୂତ ସମସ୍ତେ ହେବେ 'ନାପତା' ।

## ବରଷା ଛାଡ଼ିଲୁ—ଛ ତାରିଖ

ସବୁ ଦିନ ଯେପରି ଆସେ' ତା'ପରି ଦିନଟା ସେପରି ଆସିଥିଲା । ପ୍ରତ୍ୟେକ ଦିନକୁ ଯେପରି ସମ୍ମୁଖୀନ ହେଉ, ଯୁଦ୍ଧକୁ ମଧ୍ୟ ସେହିପରି ସମ୍ମୁଖୀନ ହେବାକୁ ବାହାରି ପଡ଼ିଲୁ ।

ମୁଁ ଓ ରାମଦାସ ବାବାଜୀ ବାହାରି ପଡ଼ିଲୁ ।

କଚଷମ! ରାସ୍ତା ଦେଖାଇ ଦେଲା—ଏତକ ଟପି, ରାସ୍ତାସଢାଲ କଡ଼େ କଡ଼େ ଯାଇ ସେହି ଚିହ୍ନିତ ଯାଗା ପାଖରେ ପାହାଡ଼ ଉପରକୁ ଉଠି, ତାକୁ ପାର ହୋଇ ହ୍ରଦର କୂଳରେ ପହଞ୍ଚିବାକୁ ହେବ । ପାହାଡ଼ଟା ପାର ହେଲେ ହେଲା । ସେମାନେ ପରେ ବାହାରିବେ ।

ରାମଦାସ ବାବାଜୀ ଉଲ୍‌ର ନଳି ପେଣ୍ଟ ଓ କୋଟ ପିନ୍ଧିଥାନ୍ତି । ତାକୁ ଧରି ଦେଖାଇ କହୁଥିଲେ— 'ବାଃରେ କୈଳାସ-ପତି, ତୁମ୍ହେଂ ଦର୍ଶନ୍ କର୍‌ନେକେ ଲିୟେ କ୍ୟା କ୍ୟା ନ କର୍‌ନା ପଡ଼ା !' ମୁଁ ବୁଝିଁ ନ ପାରି ଅର୍ଥ ପଚାରିଥିଲି । ସେ କହୁଥିଲେ ଯେ ସେ ପିଲା ଦିନରୁ କୌପିନ ଓ ସନ୍ୟାସୀର ସାଜ ଛଡ଼ା ଅନ୍ୟ କିଛି ପିନ୍ଧି ନଥିଲେ । ସବୁ ତୀର୍ଥ ସେ କରିଛନ୍ତି, କେବଳ କୈଳାସ ଦର୍ଶନ ବାକି ଥିଲା । ସେଥିପାଇଁ ତାଙ୍କୁ କେବେ ପିନ୍ଧି ନଥିବା ଏହି ସୌଖିନ ପରିଚ୍ଛଦ ଧାରଣ କରିବାକୁ ପଡ଼ିଲା ।

ମାୟାର ଆକର୍ଷଣ ଏତେ ଟାଣ ଯେ ଆବାଲ ସନ୍ୟାସୀ ହେଲେ ମଧ୍ୟ, ଆଜନ୍ମ ଭଗବାନଙ୍କ ନାମ ନେଇ ବୈରାଗ୍ୟ ଅଭ୍ୟାସ କଲେ ମଧ୍ୟ, ସରଳ ଭାବରେ ନ ହେଉ, ବଙ୍କା ହଙ୍କା

ସ୍ୱପ୍ନରେ ମଧ୍ୟ ନିଜର ବୈଭବକୁ ଦେଖାଇ ଦେବା ଗୁଣ ଛାଡ଼ି ପାରି ନଥାନ୍ତି । ଏ ସନ୍ୟାସୀଙ୍କ ବିଶେଷତ୍ୱ ଏତିକି ଯେ ସେ ବାହ୍ୟ ପ୍ରବୃତ୍ତିକୁ ଦବାଇବା ଚେଷ୍ଟାରେ ମଧ୍ୟ ଥାନ୍ତି ।

ଦାସଭାଟିଆଠାରୁ ପିଠଲ ନୂଲ୍ ଓ ମୃଦ ଭଙ୍ଗା ଶୁଣିଥିବେ ।

କଥାଟା ଅବଶ୍ୟ ଅପେକ୍ଷିତ । ମାନେ, ସମସ୍ତଙ୍କ ପାଖରେ ଜଣା ଅଧିକଭ ଥାଏ । କୃତ୍ରିମତାଟା ଏହି ଦେଖେଇ ଦେବା ଗୁଣଟୁ ବାହାରି ଯାଏ ।

ପ୍ରଥମେ ବାଟଟା ଅଖୁ କିଆରି ଭିଳିଆ ଘାସ ବଣ ଭିତର ଦେଇ ଯାଇଥିଲା । ତାକୁ ପାର ହୋଇ ଆମେ ସ୍ୱଷସଛାଲ୍ ଭିତରେ ପ୍ରବେଶ କଲୁ । ନାକ ସଳଖା ଚାଲିଲୁ । ଆଖି ଥାଏ ଆଗରେ ଥିବା ପାହାଡ଼ ଉପରକୁ ଉଠିବାକୁ ଯାଇ ରାସ୍ତାଟା ଯେଉଁଠି ବୁଲିଛି । ରାବଣ ହ୍ରଦ ପାଏ ଡାହାଣ ପଟେ । ଗୋଡ଼ ଦେଖାଏ ଦର ଶୃଙ୍ଖଳ କାଦୁଅ ଉପରେ ଓ କାଦୁଅ ବୋଳା ହଂସ ଉମ୍ଭକୁ ଆଡ଼େଇ ଚାଲିବାକୁ ପଡ଼ୁଥାଏ । କାଦୁଅରେ ମଜ୍ଜି ଚାଲେ, କିନ୍ତୁ ଯେପରି ମାଡ଼ି ନ ଚାଲେ ସେଥିପାଇଁ ସତର୍କ ଥାଏ ଓ ଭଗବାନଙ୍କ ନାମ ନେଉଥାଏ ।

ଶୁଣିଥିଲି ଯେ ହଂସଗୁଡ଼ିକ ମାନସରୋବରରେ ହେଉଁଚନ୍ତି ଓ ରାବଣ ହ୍ରଦରେ ଉମ୍ଭ ପକାନ୍ତି । ଏ କଥାର ପ୍ରତ୍ୟକ୍ଷ ପ୍ରମାଣ ପାଇଲି । ଏହି ଜଳ ଓ ବ୍ରହ୍ମାଣ୍ଡରେ ଆଧ୍ୟାତ୍ମିକ ଶକ୍ତି ନିହିତ ଥିଲା ଭଳି ଜଣାଯାଏ ।

ପ୍ରକୃତ ଦେହରେ ସତ୍ୟର ଉପସର୍ଗ ସବୁ ଫୁଟି ଥାଏ। ଦୃଷ୍ଟାନ୍ତକୁ ଧର ତୀର୍ଥର ଅଭିକଳ୍ପନା।

କିଛି ସମୟ ପରେ ଦେଖିଲି ଯେ ଆମର ଢାଁ ଘଟେ, ଦାଏ ଝଣ୍ଡେ ଦୂରରେ ଅନ୍ୱାଶେଷୀ ଓ ସଇସମାନେ ସଦଳବଳେ ସାଭ ଚାଲିଛନ୍ତି। ସେମାନେ ଚାଲୁଥାନ୍ତି ସବଣ ହ୍ରଦର କଡ଼ରେ କଡ଼ରେ, ବାଟେର ବାଟରେ, ଧନୁ ଆକାରରେ ଓ ଆମେ ଚାଲି ଆଉଁ, ହ୍ରଦ ବକ୍ଷରେ, ନାବ ଚଳାଚରେ, ଧନୁ ଗୁଣ ପରଭାରେ।

ପାହାଡର ପାଦଦେଶରେ ସମସ୍ତେ ଏକା ସାଥିରେ ମିଶିଲୁ।

ବୁଢା ବାବାଜିର ଅବସ୍ଥା ଟିକିଏ ବା ବେଶି ଖରାପ ଥିଲା। ସେଠ୍‌ଜୀ ତାଙ୍କର ସେ ଅବସ୍ଥା ଦେଖି, କରଖମାକୁ ଗୋଟିଏ ଘୋଡ଼ା ଦେବାକୁ ଅନୁରୋଧ କଲେ। ବାବାଜି ପ୍ରଥମେ ମଙ୍ଗ ନଥିଲେ। ତାଙ୍କୁ କୁହାଗଲା ଯେ—'ଦେଜିମା ତ ସଙ୍କେ, ବାହୁଡ଼ିବା ଘୋଡ଼ାରେ ହେଲେ କିଛି ଯାଏ ଆସେ ନାହିଁ।' ସେଠାରୁ ସେ ଗର୍ବପୁଙ୍ଗବର ପହଞ୍ଚିବା ପର୍ଯ୍ୟନ୍ତ ଘୋଡ଼ାରେ ବସି ଯାତ୍ରା କରିଥିଲେ। ତାଙ୍କର ଲୁଗା ଉକ୍ଷର ପରିପାଟିରେ ସେହି ଦଳଟା କୌଣସି କଷ୍ଟ ଅନୁଭବ କରି ନଥିଲେ, ବିଶେଷ ଭାବରେ ସୁଖରେ ଥିଲେ। ସେହି ହେତୁ ସେହି କୃତଜ୍ଞତା।

ମୁଁ ପଡ଼ିଗଲି ସବା ପଛରେ ଓ ଏକଲା।

ଏକଲା ଯିବାରେ ମଜା ଅଛି—ଦେହ ପେଟ ଥିବ ଥଣ୍ଡା, ମନ ଥିବ ହାଲୁକା ଓ ଦୃଶ୍ୟ ଥିବ ମନୋରମ। ଯଦି ଦୃଶ୍ୟ ଥିବ ମନ ମୁଗ୍ଧକାରକ, ମନ ହାଲୁକା ହେବ ଓ ପେଟ ବା ଦେହର କଷ୍ଟ

ଭୁଲିଯାଇ ପାରିବ । ପଥ ବିପଦର ଅପେକ୍ଷା ଆସେ ଛୁଣ୍ଡିଥିବା ଗୃହ ତହଳ ଗଣ୍ଠି ବାନ୍ଧି ହୋଇଯିବ ଓ ରହିବ କେବଳ ମନ, ବିପଦ ଓ ତାର ସମ୍ମୁଖୀନ ହେବାଟା । ତୀର୍ଥରେ ବିପଦ ସେତିକି ଆସେ ଯେତିକି ସମ୍ମୁଖୀନ ହୋଇପାରିବ । ବାପା ମା ପୁଅକୁ ଖେଳାଇଲା ଭଳି ଭଗବାନ ଯାତ୍ରୀଙ୍କୁ ବିପଦର ସମ୍ମୁଖୀନ କରାଇଥାନ୍ତି । ସମ୍ପର୍କ ଯଦି ଠିକ୍ ଥାଏ, ଖେଳ କାଳ ହେବ ନାହିଁ ।

ପାହାଡ଼ଟି ଥିଲା ଝାଙ୍କର ଓ ଖାଲ ଢିପ । ବାଟ ଥିଲା ଉଠାଣିଆ ଓ ଠାଏଁ ଠାଏଁ ଢ଼ଲମାଳ । କୋଉଠି ତିରିଶି ଫୁଟ ଓସାର ଭିତରେ, ସମାନ୍ତରାଳରେ, ତଳ ଉପର ହୋଇ, ଲମ୍ବି ଯାଇଥିବା ପାହାଡ଼ ପାହାଡ଼ ମଝି ଅନେକ ଛେଳି ଚଲା ରାସ୍ତା ଥାଏ । ସେଥିରୁ ଗୋଟିଏ ରାସ୍ତା ଦେଇ ଦେହଟାକୁ ଟାଣି ଟାଣି ଗୋଟିଏ ଗୋଟିଏ ଚାଲିଲି ।

ପାହାଡ଼ ଉଠିବା ପରେ ରାସ୍ତାଟା ଦୁଇ ଫାଙ୍କ ହେବା ଦେଖିଲି । ଗୋଟିଏ ଯାଇଥାଏ ଡାହାଣ ପଟକୁ, ଦକ୍ଷିଣ ପଟକୁ— ରାବଣ ହ୍ରଦ ଭିତରକୁ ପଶିଯାଇ ତାକୁ ଦୁଇ ଖଣ୍ଡ କରୁଥିବା ପାହାଡ଼ ପିଠିର ଧାରେ ଧାରେ, ଓ ଅନ୍ୟଟି ଅଗକୁ (ଉତ୍ତର ବାଁ ପଟକୁ) ସାମନାରେ ଖୋଲି ଯାଇଥିବା ହ୍ରଦର କୂଳକୁ । ସନ୍ଦେହରେ ପଡ଼ିଲି ଓ ଠିଆହେଲି ।

ଯାତ୍ରୀଙ୍କର ଦର୍ଶନ ନାହିଁ । ଗଲେ କୁଆଡ଼େ ? ମାଇଲ ମାଇଲ ବ୍ୟାପି ସାମନାଟା ଖୋଲା । ଲୁଚିଗଲା ଭଳି ଆଡ଼ୁଆଳ ଭଳି ଏର କିଛି ଦେଖୁ ନାହିଁ । ଡାହାଣ ପାହାଡର ମୂଳଟା ତଳ ବା ଦୃଷ୍ଟିର ଅନ୍ତରାଳରେ । ସମୟର ବ୍ୟବଧାନ ତ ବେଶି ନଥିଲା । ପାଖରେ ଥିବା କଥା ।

ହସିଲି—ଠିକ୍ ଅଛୁ । ତିବ୍ବତ ଡାଉନ୍‌ମାନେ କିଛି ଅଜଣା ରାଇଜ ନୁହେଁ । ପଥ ଓ ଭୂଗୋଳ ତ ଜଣା ଅଛି । ମୋଟେ ତିନି ଚାରି ଦିନ ଚାଲିଲେ ଭାରତ ପଡ଼ିବ । ବର୍ମା ବା ଚୀନରେ ବିଶେଷ ତଫାତ ପଡ଼ିବନି । ଅସହାୟ ଅବସ୍ଥାର ସାହାଯ୍ୟ ନେଇ ସାମାନ୍ୟ କିଛି ପଇସା ଖର୍ଚ୍ଚ କରି ବରଂ ଅଧିକ ସୁବିଧାରେ ଚାଲିପାରିବ । ଯାଇ ଦେଖେ କଚେଣମାଙ୍କୁ ।

ଅଡ଼୍‌ଖା ଥିବା ପଥରେ ଲୁଚି ଯାଉଥିବେ ଭାବି ସେହି ପଥକୁ ଗୋଡ଼ ଚଳାଇବାକୁ ଯାଉଛି, ଅକସ୍ମାତ ଆଉ ପଥରେ ଦେଖିଲି ନଗ୍ନ ପାଦଚିହ୍ନ । ଆଶ୍ଚର୍ଯ୍ୟ ଲାଗିଲା । ଏଠି ଖୋଲା ପାଦରେ ଚାଲିବା ଲୋକ କିଏ ? ଗୋଇଠି ଆଙ୍ଗୁଠି ଅଲଗା ଥିବା ଓ ଖଣ୍ଡିଆ, ବା କଂକାଳର ଗଣ୍ଡି ଭଳିଆ ପାଦ ଚିହ୍ନ ନୁହେଁ । ମାଂସିଆ ସୁଗଠିତ ପୁଷ୍ଟ ଗୁପଥିବା ବଳିଷ୍ଠ ଲୋକର ପାଦ ଚିହ୍ନ । କଣେ ଏଇସବୁ ଗୋଡକୁ ସାମାନ୍ୟ ମାଡ଼ ବାଜି ଥିଲା । ଭାବିଲି, ବୋଧହୁଏ ସେହି-ଦେହରୁ ଯୋଡ଼ା ଛାଡ଼ି ଚାଲିଛି ।

ଦେଖିଲି ଦୁଇ ଚାରିଟି ପାଦଚିହ୍ନ ପରେ ପରେ ପଡ଼ିଛି । କ୍ରମେ ଉଭେଇ ଯାଉଛି । ସେହି ଦିଗକୁ ଅର୍ଥାତ୍ ଉତ୍ତର ବାଁ ପଟକୁ ଆଗେଇଲି । ରାସ୍ତା ଖୋଲି ଗଲା । ପାଖରେ, ଆଗକୁ ଅଛି ପାହାଡ଼ର ଖୋଲ ।

ଆଉ ଟିକିଏ ଆଗେଇବା ପରେ ସେହି ପାହାଡ଼ ଖୋଲରେ ଥିବା ପାଣିଧାର ବାଟ ଖୋଲା ଦେହର ଖାଲ ଭିତର ଦେଇ ଯୋଡ଼ା ଧାଡ଼ିଏ ହଲେଇ ଡେଇଁ ଡେଇଁବା ଚାଲିଥିବା ଦେଖିଲି ।

ଓହ୍ଲାଇବାରେ ଅଭ୍ୟସ୍ତ ନ ଥିବାରୁ, ସେମାନେ ଖୁବ୍ ସତର୍କତା ସହକାରେ ଚାଲୁଥିବାରୁ ତାଙ୍କର ଗତି ଧୀରମଇ ଯାଉଥିଲା ଓ ଓହ୍ଲାଇବାରେ ଶ୍ରମ ଜଣା ପଡୁ ନଥିବାରୁ, ଅଭ୍ୟାସରୁ କାଇଦା ଜାଣି ଥିବାରୁ, ସେମାନଙ୍କୁ ଖୋଲ ଶେଷରେ ଭେଟିଲି । ଖୋଲ ଶେଷରେ ଥିଲା ଗୋଲାପ ସଦୃଶ ଫୁଟ ଓସାରର ଖଣ୍ଡ ଖଣ୍ଡିଆ ମାଳ ଭୂମି ଓ ତାକୁ ଲାଗି ଥିଲା ରାବଣ ହ୍ରଦର ଚକ୍‌ଚକ ଶଚାଚ ଭାବରେ ଚକଚକ ଜଳ ପୂର୍ଣ୍ଣ ହ୍ରଦ । ହ୍ରଦ ଧାରକୁ ଥିଲା ମଣି ମୁକ୍ତାରେ ଖଞ୍ଜେଇ ହୋଇଥିବା କୂଳ । ତାର ଓସାର, ମୋର ମନେ ହେଲା, ଥିଲା ଗୋଲାପ ସଦୃଶ ଫୁଟ ଓ ଦୌଡ଼ ପ୍ରତିଯୋଗିତା ପାଇଁ ଉପଯୁକ୍ତ । ଗାର ଭଳିଆ ପାଣି ଉପରେ ବାଙ୍କେଇ ସ୍ୱଚ୍ଛ ନିର୍ମଳ ଉର୍ମିଳ ଭରପୂର ଜଳରାଶିର ଚେଷ୍ଟାନ ସାଜ ଥିଲା । ଜଣା ପଡୁଥିଲା ସତେକି ଯେପରି ସେହି ଜଳରାଶିଟି ସ୍ୱର୍ଣ୍ଣ ଲଙ୍କାର ଅଧୀଶ୍ବରର ଭାବନା-ବାସନା-କାମନାର ଅଚଳ୍ଚି ଓ ଅନନ୍ତ ଭାବରାଶିକୁ ଧାରଣ କରି ଓ କୂଳକୁ ଠେଲି ନେଇ ସହଜରେ ସ୍ୱ ପ୍ରବୃତ୍ତିରେ ସ୍ୱଲଭରେ ଭର୍ତ୍ତି ଦେଉଛି । ତେବେ ତ ତାର ଶେଷ ନାହିଁ ।

ସେହି ଜଳରାଶିର ନାମ ରଖା ଯାଇଛି ରାବଣ ହ୍ରଦ ବା ରାକ୍ଷସ୍ ତାଲ୍ ।

ତାଲ୍ ମାନେ ହ୍ରଦ । ରାକ୍ଷସ ମାନେ ଦୁର୍ବାର ଲାଳସା ମାନ ଧାରଣ କରି ଯିଏ ବିଷୟ ଭୋଗରେ ପ୍ରବୃତ୍ତ ଥାଏ ଓ ସେହି ବସ୍ତୁ, ବିଷୟ ଓ ଭୋଗକୁ ନିଜର ସ୍ୱାର୍ଥ ସଦାଶେ ସତତ ରକ୍ଷା କରିବାରେ ସଚେଷ୍ଟ ଥାଏ । ରାବଣ କିଏ ? ରାବଣ ସିଏ ଯାର ଉଚ୍ଛୁଳା କାମନା

ଆବେଗ ବାଟ ନ ପାଇ ରୁଦ୍ଧ ହୋଇଥିବା ହେତୁ ବେଗ ବଢ଼ିବାକୁ ପ୍ରବଳ ଇଚ୍ଛା କରି ଗୀତ ଭିତରେ ବା ମନ୍ଥନ କରେ ।

ଏପାଟରେ ଡ଼ମ୍ବୁ ଦେବା ଓ ସେହି ଡ଼ମ୍ବୁ ଫୁଙ୍କି ବଡ ହୋଇ ମାନସରୋବରରେ ପହଁଚିବା ସ୍ୱାଭାବିକ ।

ସେମାନଙ୍କୁ ଦେଖିବା ସମୟରେ ଭୀଷଣ ଶୋଷ ହେଉଥାଏ ଓ ପଟାଙ୍ଗ ଜଳୁଥାଏ । ଜିଭଟା ବାହାରି ପଡୁଥିଲା । ଆଉ ମାତ୍ର ଗୋଟିଏ ଫର୍ଲଙ୍ଗ ବାଟ ଗଲେ ତମ୍ବୁଠାରେ ପହଞ୍ଚି ପାରିବ । କିନ୍ତୁ ସେତକ ଯିବା ପାଇଁ ଆଉ ଦମ ନ ଥାଏ । ସେଠ୍‌ଜୀ ପାଖରେ ତାପରୋଧକ ପାନପାତ୍ର ଥିଲା ।

କହିଲି—ଟିକିଏ ପାଣି ଦିଅନ୍ତୁ ।

ଜୟନ୍ତ ଭାଇ ହାତକୁ ଦେଖାଇ ବଡ଼କୁ ସୂଚାଇ କହିଲେ—ଏଇ କଥାତ, ସେଠିକି ଯାଇ ପିଅ ନାହିଁ ।

ସେଠ୍‌ଜୀ କହିଲେ—ଜରୁରୀ ସମୟ ପାଇଁ ଏ ପାଣି ରଖା-ଯାଇଛି । କହିଲି—ଭୀଷଣ ଶୋଷ ହେଉଛି, ସେଠିକି ଯିବ, ସେଠାକୁ ଯିବାପାଇଁ ଟୋପେ ଦରକାର । ତୁମର ଏ ଭିତରେ ପାଣି ଦରକାର ହେବ ନାହିଁ ବୋଲି ମାଗି ଥିଲି । ସେଠ୍‌ଜୀ—'ତାହା-ହେଲେ ନେଇ ପାର' କହି ଫ୍ଲାସ୍କର ଉପର ଢାଙ୍କଣରେ ଇଞ୍ଚେ ହେବ ପାଣି ବଢ଼ାଇ ଦେଲେ । ଜୟନ୍ତ ଭାଇ 'ତାହାହେଲେ ନେଇପାର' ଭଳି ଦେଖାଇ ବନ୍ଧୁତା ଛଳରେ ମୁଣ୍ଡ ନଡ଼ା ହସିଲେ ।

ପାଣି ଟିକକ ପ୍ରାଣ ରଖିଲା । କୁଳଟି ହେଉଟି ପରି ଲାଗୁଥ । ଗୋଡ଼ ଠେସି ଠେସି କୂଳକୁ ଗଲି । ଗୋଟିଏ ଯୁଗ ପରି ଲାଗୁଥିଲା ।

ବାଃ ! କି ସ୍ୱଚ୍ଛ ନିର୍ମଳ ଜଳ । ବିଜୁଳି ଝଲକୁଛି । ଅଗ୍ନି-କଣା ଝଟକୁଛି । ଢ଼'ଣ ପିଇବି ?

ମନରେ ସନ୍ଦେହ ହେବାର କାରଣ ଅଛି । ଗ୍ରାମ ବାସୀ ବାବାଜି କହୁଥିଲେ—ପିଇବା କଥା ତ ଛାଡ଼ ସେ ପାଣି ଛୁଇଁବ ନାହିଁ, ଓ ସଦାନନ୍ଦ ସ୍ୱାମୀ କହୁଥିଲେ—ଗ୍ରବଣ ଶିବଙ୍କର ବଡ଼ ଭକ୍ତ ଥିଲା । ଭଗବାନଙ୍କୁ ପାଇବାକୁ ହେଲେ ଭକ୍ତକୁ ପୂଜା ଶ୍ରଦ୍ଧା କରିବାକୁ ହେବ । ମୁଁ ସେଠି ବୁଡ଼ ପକାଇବି ଓ ସେଠାରୁ ଜଳ ନେଇ ତୀର୍ଥ ଜଳ କରି ରଖିବି । ମୁଁ ଅଟ୍ଟହାସ କରି ହସିଥିଲି । ସେ କହୁଥିଲେ—ମୋର କେତେକ ଭକ୍ତ ଅଛନ୍ତି, ସେମାନେ ଅତି ଶ୍ରଦ୍ଧା ସହକାରେ ସେ ଜଳକୁ ତୀର୍ଥ ଜଳ ବୋଲି ମାନନ୍ତେବେ ।' ହସ ଚପାଇ ରଖିଥିଲି ।

ମୋ ପାଖରେ ସନ୍ଦେହ ଓ ଦ୍ୱିଧାର ସମୟ ନଥିଲା । ଜହ୍ନ ଶୋଷରେ ମ୍ରିୟମାଣ ହୋଇ ପଡ଼ୁଥିଲି । ଜିହ୍ୱା ମୋର କେଳାୟମାନ, ଶରୀର ଦୋଳାୟମାନ । ଶରୀରଂ ଆଦ୍ୟଂ ଖଲୁ ଧର୍ମ ସାଧନଂ । ଜଳ ଭିତରେ ଚକ୍ ଚକ୍ କରି ସୁନ୍ଦର ଛିକ ଛିକ ମାଛ ଦଳ ଦଳ ହୋଇ ଧାଉଁଛୁ ଥିଲେ । ଉଲଟା ଚକ୍ଷଣ ମାର୍ଜିଛି ଇନ୍ଦ୍ରଧନୁ ରଙ୍ଗର ନାନା ଧନୁ—ରଙ୍ଗ ପାଣିର ଛଟା ଥିବା, ଜପଲ ଖଣ୍ଡ ଦ୍ୱାରା ଆଚ୍ଛାଦିତ । ସ୍ୱଚ୍ଛ ନିର୍ମଳ ଜୁଳୁ ଜୁଳିଆ ଜଳରେ ବିଜୁଳିର ଝଲକ ଓ ଅଗ୍ନି କଣାର ଝଟକ ମୋତେ ଆହ୍ୱାନ କରୁଥିଲା । ଦପ୍ ଦପ୍ ହେଉଥିବା ସ୍ଫଟିକ ସମ ପାମାସ୍ଥ ଜଳରୁ ଅସଂଖ୍ୟ ଜ୍ୱଳନ୍ତ କଣିକା ହଜାର ସଂଖ୍ୟାର ହାରେଇ ଭଲିଆ ଉଛୁଳି ଆସୁଥିଲେ । ସେ ଥିଲା କେତେଟା ଅଦ୍ଭୁତ ମୃଦୁଳି ଓ ମୃଦୁଙ୍କି ସୁନ୍ଦା ସମ୍ଭାଳିବାକୁ

ସନ୍ତପ ନଥିଲି । ସବୁ ଜଳରେ ନାଗପୂଣ ଅଛନ୍ତି ଭାବ ବସିପଡ଼ି ଅଞ୍ଜୁଳା ପରେ ଅଞ୍ଜୁଳା 'ଭରି ପିଇନେଲି ।

ଶୋଷ ମରୁନି !

ଅଣ୍ଟୁ ପାଣି, ମୁହଁ ପାଣି ଚବର୍ ଚବର୍ ପିଇନେଲି । ଶୋଷ ବଢ଼ୁଥେ । ହାଲିଆ ହୋଇ ଅଣ ନିଃଶ୍ୱାସିଆ ହେଲି । ଦମ୍ ନେଲି । ଫେର ପିଇଲି । ତେବେ ବି ଶୋଷ ମରୁନି ।

ଚିନ୍ତା ହେଲା । କାରଣ କ'ଣ ? ଦେହରେ ଜଳୀୟ ଅଂଶର ଅଭାବ ହଠାତ୍ ପରିଲକ୍ଷିତ ହେଲେ ଶୋଷ ନିର୍ଦ୍ଦେଶକ ଯନ୍ତ୍ରଟି ଶୋଷର ଭାବ ଆଣି ଅଭାବର ସୂଚନା ଦେଇଥାଏ । ଜଳର ଅଭାବ ପୂରଣ ହେଲେ ଶୋଷ ଛାଡ଼େ । ଏତେ ଗୁଡ଼ାଏ ପାଣି ପିଇଲା ପରେ ଜଳର ଅଭାବ ନିଶ୍ଚୟ ତୁଟି ଯାଇଥିବ । ଶୋଷ ନିର୍ଦ୍ଦେଶକ ଯନ୍ତ୍ରଟି ବୋଧହୁଏ ଅତି ବିସ୍ତାରିତ ରବର ଭଳିଆ ତାର ପୂର୍ବ ଅବସ୍ଥାକୁ ଫେରି ଆସିପାରୁ ନାହିଁ । 'ଶୋଷ ହେଉଥାଉ ଯାଏ' — ଏହା ଭାବି ମୁଁ ପାଣି ମଙ୍ଗି ଦୋହଲି ଝୁଲି ତମ୍ବୁ ଉଦ୍ଦେଶ୍ୟରେ ଚାଲିଲି ।

ସେ ଦିନ ଷୋଳ ମାଇଲ୍ ଚାଲିଥିଲି ।

## ରାକ୍ଷାସ ତାଲ ବା ରାବଣ ହ୍ରଦ
## ଚାଲିଛି—୧୯୩+୧୬=୨୦୯ ମାଇଲ

ତମ୍ବୁରେ ପହଞ୍ଚିଲା ସରିକି ଫେର ତଣ୍ଟି ଶୁଖି ଗଲା ।

ତମ୍ବୁ ଭିତରେ ପଶି ଗୋଡ଼ ଲମ୍ବେଇ ବସି ପଡ଼ିଲି । ପର୍ଦ୍ଦା ଅଡ଼େଇ ବାହାରକୁ ଦେଖିତ ସାମନାରେ ଜଣେ ସାଧୁ ବସିଛି ।

ହାତରେ ଏକ ତାରକଶିଷ୍ଟ ବେତଗ୍ । ପାଖରେ ମୋ ପଟକୁ କମଣ୍ଡଳୁ । ଦେହ ଖୋଲା । ଫଳକଟା ସାଥେ ଆସିଛନ୍ତି । ହସ ହସ ପ୍ରଫୁଲ୍ଲ ବଦନ୍ । ଗୀତ ଗାଉଛନ୍ତି । ମୋତେ ଦେଖି ହସ ହସ ବଦନରେ ସନ୍ଦେହସୂଚକ ଇଙ୍ଗିତ କଲେ । ମୁଁ ପ୍ରତ୍ୟୁତ୍ତରରେ ମୁଣ୍ଡ ନାଡ଼ି, କମଣ୍ଡଳକୁ ଆଙ୍ଗୁଠି ଦେଖାଇ କହିଲି—ଆପଣଙ୍କର କମଣ୍ଡଳୁରେ ଜଳ ଅଛି ?

ଜୟନ୍ତ ଭାଇ ରାଗି ଉଠିଲେ । କହିଲେ—ସେଠି ତ ଏତେ ପିଇଲ, ପୁଣି ପିଇବ ନାହିଁ ? ସେ ଝରଣ ପାଣି ଅଣିଛି, ତାକୁ କାହିଁକି ନେଉଛ ?' କଥାଟା ତୃତୀୟ ବ୍ୟକ୍ତିକୁ କହିଲା ଭଳିଆ କହୁଥିଲେ । ତୃତୀୟ ବ୍ୟକ୍ତି ଥିଲା ତାଙ୍କ ତମ୍ବୁ ମୁହଁର ବାନ୍ଧୁବାଡ଼ ।

ସମ୍ପର୍କଟା ଥିଲା ମୋର ଓ ସାଧୁର । ଜୟନ୍ତ ଭାଇର ଏ ଥିଲା ଅନଧିକାର ଚର୍ଚ୍ଚା—ପାହାଦ୍ୱାରା ଛଳିର ସୁଦପାନ ହେବା କଥା । ତୁଙ୍ଗ ମୁହଁରେ ହାତ ଗୃହଯିବ କିନ୍ତୁ ଧନ ଓ ଗର୍ବି ଲୋକର ଘର ଆସିବ ନାହିଁ । ରାଗ ଚଣ୍ଡାଳ । ସ୍ୱାର୍ଥରେ ସତର୍କ ରହିବା କଥା । ତା କଥାରେ କାନ ଦେଇ ନଥିଲି । ତାର ମୋର କୌଣସି ସମ୍ପର୍କ ପ୍ରତିଷ୍ଠିତ ହୋଇ ନଥିଲା । ଏବଂ ମୁଁ ସେତେବେଳେ ପ୍ରାପ୍ତ ଶୂନ ହୋଇ ଯାଉଥିଲି ।

ସାଧୁ ହସି ମୁଣ୍ଡ ହଲାଇ ଇଙ୍ଗିତ ଦେଲେ ନେବାକୁ । ଦୁଇ ହୋଟ ପିଇଛି ଶୋଷ ପୂରାପୂରି ଛାଡ଼ିଗଲା । ଥୋଇଦେଇ କହିଲି—'ସାଧୁଜୀ ଆପ୍କା ପାନୀ ମେ ମେରା ପ୍ୟାସ ବୁଝା ହୈ' ।

ବୁଝିଲା ଭଳିଆ ହସି ମୁଣ୍ଡ ନାଡ଼ି ଅଳ୍ପର ପିଇବାକୁ କହିଲେ ।
କହିଲି—ମୋର ତୃଷ୍ଣା ହୋଇଛି ।

ସେଦିନର ସେହି ବାଠି ଟଙ୍କର ଦୁଃସାହସିକତା ମନରେ ପଡ଼ି ରୋମାଞ୍ଚ ଆସିଲା, ମନ ପୁଲକିତ ହେଲା । ବାଠି ଭୁଲିବା, ସେଠାର ଯାତ୍ରା ଓ ନଗ୍ନ ପାଦ ଚିହ୍ନ ମନେ ପଡ଼ିଲା ।

ଅଭିଭାବକ ଭଳିଆ ଘୋଡ଼ାବାଲାଙ୍କୁ ଉଦ୍ଦେଶ୍ୟ କରି ଧମକାଇ ପଚାରିଲି—'କଣ ଆଜି ଖାଲି ଗୋଡ଼ରେ ଚାଲିଥିଲ ?'

ସାଧୁ ଉତ୍ତର ହସି ଗୋଡ଼ ଟେକି ପାଦ ଦେଖାଇ ଦେଲେ । ଆଶ୍ଚର୍ଯ୍ୟ ହୋଇ ପଚାରିଲି—ଆପଣ କ'ଣ ପହେଲା ମଧ୍ୟ ଖାଲି ଗୋଡ଼ରେ ଚାଲନ୍ତି ?

ସାଧୁ ହସି ଶିରରେ ସମ୍ମତି ସୂଚକ ସଂକେତ ଦେଲେ । କୃତଜ୍ଞତା ଜଣାଇଲି—ଆପଙ୍କା ଦେରିର ମୁହିଁ ରାସ୍ତା ଦେଖାଇଥା । ସାଧୁ ମୋର ଭକ୍ତିକୁ ସ୍ୱୀକାର୍ଯ୍ୟ କରି ହସିଲେ, ଓ ସେହି ପଦ ସାହାଯ୍ୟରେ ଗାଇବାକୁ ଆରମ୍ଭ କଲେ—

'ନାଚେ ରାଧା ନାଚେ କୃଷ୍ଣ—ନାଚେ ରାଧା ନାଚେ କୃଷ୍ଣ ।'

ଭାବିଥିଲି ଯେ ସେ କ'ଣ ଗୋଟାଏ ଗୀତ ଗାଇବେ, ରାଧା ଓ କୃଷ୍ଣର ପ୍ରେମର ମାହାତ୍ମ୍ୟ ନେଇ । ଅପେକ୍ଷା କଲି । କେବଳ ସେହି ଦୁଇପଦ—'ନାଚେ ରାଧା ନାଚେ କୃଷ୍ଣ'—ଅବିଚ୍ଛିନ୍ନ ସୁଅରେ ଓ ନିରବଚ୍ଛିନ୍ନ ସ୍ୱରରେ ।

କ ମଧୁର ସେହ୍ନ ସ୍ୱର । ଈଶ୍ୱରର ସର୍ବାଙ୍ଗ ଜଳୁଥିଲ ଓ ପୋଡ଼ୁଥିଲ । ଶେଷକୁ ବରଫ ଦିଅ ସର୍ବତ୍ର ଭଲିଆ ସେ ଜଳାପୋଡ଼ାକୁ ଥଣ୍ଡା କରିଦେଲ । ସାଧାରଣ ଅବସ୍ଥାକୁ ଫେରି ଆସିଲ ।

ଧିରେ ଧିରେ ବୁଝିଲ ଯେ ସେ ଦୁନିଆଁଟା ଯାତ୍ରାରେ ଝାଲ ଦେଖୁଛନ୍ତି କୃଷ୍ଣର ନାଚ ଓ ରାଧାର ନାଚ—ଜଡ଼ ଭରତ ଯାତ୍ରା-ଖେଳି ମୂକ ରହି ଯାଇଥିଲ । ତପ ଦୁଇ ଜଣଙ୍କର ପ୍ରେମର ନାମଗନ୍ଧ ନାହିଁ । ବୁଝିଲ—ରାଧା କ'ଣ, କୃଷ୍ଣ କ'ଣ ଓ ନାଚ କ'ଣ ? ଏ ନୁହେ କେତେକ ଲୋକଙ୍କ ମୁଣ୍ଡରେ ଥିବା ବ୍ୟକ୍ତିବୃତ୍ତିଣି ରାଧା ଓ ଲମ୍ପଟ କୃଷ୍ଣ । ତାହା ଯଦି ହୋଇଥାନ୍ତା ପଞ୍ଚପାଣ୍ଡବଙ୍କୁ ଉଦ୍ଧାର କରିବା ପାଇଁ କେବଳ ଜଣେ ମାତ୍ର ପାରିବାବାଲ ବାହାରି ନଥାନ୍ତା । ବାହାରି ଥାନ୍ତେ ଅନେକ । ଭଗବାନଙ୍କୁ ଯିଏ ଯେଉଁ ରୂପରେ ଦେଖେ ତାଙ୍କୁ ସେପରି ପାଏ ଓ ଭଗବାନ ଭକ୍ତର ଇଚ୍ଛା ପୂରଣ କରନ୍ତି ମାତ୍ର ।

ସେଥିରେ ବକୃତ ଦୃଷ୍ଟିଭଙ୍ଗି ବିଷାକ୍ତ ଲୋକଙ୍କର ଥାଏ, ଯେଉଁମାନଙ୍କର କ ଉପୃତ୍ତ ସେହ୍ନଚରି ବିଷାକ୍ତ ବାତାବରଣରୁ । ନିର୍ମଳ ଲୋକ ଦର୍ପଣ ପରି । ତା ଭିତରେ ମାଙ୍କଡ଼ ଦେଖିବ ମାଙ୍କଡ଼ର ପ୍ରତିଛବି ଓ ଖତେଇ ହେବା, କୁକୁର କୁକୁରର ପ୍ରତିଛବି ଦେଖି ଭୁକିବ, ଓ ପଶୁଟି ଦେଖିବ ବସ୍ତା କଡ଼ାର ଜନ୍ମୁକ୍ତ ମୁଖ ଓ ଏକ ସାର୍ଦ ଅଧାଣ କରି ପାଣ୍ଠି ଚଳିଚି ଶୋଷଢ଼ ଆଗେଇଯିବ । ଏବଂ ଶାନ୍ତ ଲୋକ ଦେଖିବ ସୌମ୍ୟ ମୂର୍ତ୍ତି । ଯଦି କଳେ ଦର୍ପଣ ହୋଇଥିବ ଦେଖିବ ଆଲୋକର ଅଭିନବ ଖେଳ—ଅନନ୍ତର ସୃଷ୍ଟି ।

ସେହି ଖେଳ ଥିଲା ରାଧାଙ୍କର ଓ କୃଷ୍ଣଙ୍କର । ଏବେ ମଧ୍ୟ ଚାଲିଛି । ଏହି ମାୟାର ସଂସାରକୁ ଯେଉଁ ଶକ୍ତି ରଙ୍ଗ ବିରଙ୍ଗ କରିଛି ଭାବ, ସୃଷ୍ଟି ଭାର ଧାରଣ କରନ୍ତି ସେ ହେଲେ ରାଧା ଓ ଏହି ମାୟାର କାଳରୁ ଜୀବକୁ ରକ୍ଷା କରିବାକୁ ଯାଇ ଯେଉଁ ଶକ୍ତି ସତତ ଆକର୍ଷଣ କରୁଛନ୍ତି ସେ ହେଲେ କୃଷ୍ଣ । କୃଷ୍ଣ ସିଏ କାଳୀ ସିଏ । ଏ ଦୁଇ ଶକ୍ତି ନାନା ନାଚର ଓ ପରସ୍ପରର ଅଭିନବ ଖେଳରେ ତନ୍ମୟ ହୋଇ ଅନବରତ ତାଳେ ତାଳେ ନାଚୁଛନ୍ତି । ସଂହାର ଓ ସୃଷ୍ଟିର ଖେଳ ଅନବରତ ଚାଲିଛି ।

ରାଧାର ନାଚର ତାଳେକୁ ପଡ଼େ କୃଷ୍ଣର ନାଚର ତାଳେ ।

ସେହି ହେଲା ତାଙ୍କ ଗୀତର ଥୀମ୍, ସଂଗୀତର ଧୂନ ଓ ଭାବନାର ଆବେଗ ।

କେବଳ ତାଙ୍କର ଜଳରେ ଶୋଷ ମେଣ୍ଟିବ । ତୁଚ୍ଛ କାମନା ହେତୁ ଉଦ୍‌ବେଳିତ ହୋଇ ଛୁଟି ଆସୁଥିବା ଊର୍ମିରେ ଭରପୂର କଲସୀର ଜଳରେ ବା ତାମସିକ ଦାନରେ ପାଇଥିବା ଜଳରେ ଶୋଷ ମରିବ ନାହିଁ । କିନ୍ତୁ ଛଟୋଟି ଯାଇ ବିପରୀତ ଦିଗରେ ଆସିଥାଏ ।

ପିତ୍ୱା ପିତ୍ୱା ପୁନଃ ପିତ୍ୱା ପିତ୍ୱା ପତତି ଭୂତଳେ,
ଉତ୍ଥାୟ ଚ ପୁନଃ ପିତ୍ୱା ପୁନର୍ଜନ୍ମ ନ ବିଦ୍ୟତେ ।

ଏବଂ ଯେତେବେଳେ ତୃଷ୍ଣା ଆସିବ, ପ୍ରଥମରେ ଚାଖିବ, ପରେ ଧାଣ୍ଡିବ ଓ ଶେଷରେ ଦୟାଳୁ ଅପୃ ନିସୃତ ବାଣୀରେ ଶାନ୍ତି ପାଇବ । କର୍ମ ଓ ବେଗ ପ୍ରଥମରେ ଥିବ ତାମସିକ, ପରେ ରାଜସିକ

ଓ ଈଶ୍ୱରରେ ଆସ୍ତିକ । ତା ପରେ ମୁକ୍ତି । ମୁକ୍ତି ପାଇବ କେବଳ ସେହି ଅଭିନବ ନାଟର ଦର୍ଶନରେ ।

ଶାନ୍ତି ପାଇବ ସେହି ସାଧୁଙ୍କ ପଦାନୁ-ସରଣରେ ।

ସାଧୁ ବାବାଙ୍କର ଜନ୍ମ ନେପାଳରେ । ଦୀକ୍ଷା ଓ ରହଣି ବୃନ୍ଦାବନରେ । ସେଠାରୁ ସେ ବୁଲି ବୁଲି କୈଳାସ ଦର୍ଶନ କରି ଆସିଥିଲେ । ହାଗଧନ ଚର୍ମକାର କୁଆଡ଼େ ତାଙ୍କ ସହିତ ମିଶିକରି ଆସୁଥିଲେ । ବାଟରେ ସେ ସାଧୁ ହଠାତ୍ ଅଦୃଶ୍ୟ ହୋଇ ଯାଉଥିଲେ । ସେହେତୁ ଏ ଏକଳା ପଡ଼ି ଯାଇଥିଲେ । ସେ ଦୁହେଁ ମିଶି ମଠଦଳ ସହିତ ବୁଲିଗଲେ । ସାଧୁ ସ୍ୱପ୍ନରେ ତାହାରଣ୍ଠାରେ ଶୋଇଥିଲେ । ମୋର ବିଶ୍ୱାସ ସେ ମୋତେ ବାଟ ଦେଖାଇବା ପାଇଁ ସାଧୁବାବା ତାଙ୍କର ପାଦଚିହ୍ନ ମଡ଼ାଇ ଥିଲେ ।

ଗୃହସ୍ଥି ଦଳକି ପାଞ୍ଚ ପାଞ୍ଚ ଟଙ୍କା କରି ସେ ସାଧୁଙ୍କୁ ଦାନ କରିଥିଲେ । ସେ ତାହା ଗ୍ରହଣ କରିଥିଲେ । ମୁଁ ବିସ୍ମିତ ହୋଇଥିଲି । ସେ ମନା କଲେ, କହିଲେ—

'ଯାହାକୁ ମୁଁ କେବେ ଚିହ୍ନିନି, ତାକୁ ଖାଇବାକୁ ଦେବ କହିଁକି ?'

ସାଧକ ସାବଧାନ ! ଯାହାକୁ କେବେ ଚିହ୍ନି ନାହାନ୍ତି ତାକୁ ଖାଇବାକୁ ମନ ବଳାନ୍ତୁ ନାହିଁ, ସେ ଜଳଷ୍ଠା ଯେତେ ନିର୍ଦ୍ଦୋଷ ଜଣା ପଡ଼ନା କାହିଁକି ; ନୂଆଁ ଜଳକୁ ଚିହ୍ନିବେ ନାହିଁ, କାଳେ ସେଠା ଭୂମି ମନକୁ ସୁଖ ତୁଷ୍ଟି ଦେଇପାରେ । ଏପରି ଜଳକୁ ପିଇବେ ନାହିଁ ଯେଉଁଥିରେ କି ଶୋଷ ବଢ଼ିପାରେ ।

କିନ୍ତୁ, ସଚ୍ଚିଦାନନ୍ଦ ସ୍ୱାମୀ କହିଲେ—ଏ ପ୍ରକୃତ ସନ୍ୟାସ ନୁହେଁ । ପ୍ରକୃତ ସନ୍ୟାସୀ ହେବା ଜିନିଷ ମଜା କେନ୍ତୁ ନାହିଁ । ଲଥାନ୍ତି ପରେ । ହେଲେ, ସ୍ଥୂଳ ବିଶେଷରେ ଗୋଟିଏ ହନ ହେଲେ ଥାଉନ୍ତି ମିଛ । ସ୍ଥୂଳ ବିଶେଷକୁ ନଜରକୁ ନ ନେଇ ଶାସ୍ତ୍ର ପ୍ରମାଣ ହେବେ, ମିଥ୍ୟାଚାରୀ । ପରେଶ୍ୱରେ ସାଧୁବାବା ଯେମିତି ଉପଦେଶ ଦେଇଥିଲେ ।

ଏ କୌଣସି ଦୁଃସାହସିକ କର୍ମରେ ଲିପ୍ତ ନୁହନ୍ତି । ନିଜର ସାହସିକତା ଦେଖାଇବାକୁ ଆସି ନାହାନ୍ତି । ତାଙ୍କୁ ଆଣି ଅଛି ରାଧାର ନାଚ ଓ କୃଷ୍ଣର ନାଚ ଓ ରାଧା କୃଷ୍ଣର ଯୁଗଳ ନାଚ । ଏହି ନାଚକୁ ସେ ସବୁଦିନ ଦେଖୁଛନ୍ତି । ପାଙ୍କର ଗୋଡ଼ ଫାଟି ନାହିଁ । ଗୋଡ଼ରେ ବରଫ ଘା ହୋଇ ନାହିଁ । ଖାଦ୍ୟର ଯୋଗାଡ଼ ନାହିଁ କି ଖାଇବାର ଚିନ୍ତା ନାହିଁ । କେବଳ ଗୋଟାଏ କମ୍ବଳ ଥିଲା ତାଙ୍କ ସମ୍ବଳ । ନା—ତାଙ୍କର ସମ୍ବଳ ହେଲା ରାଧାକୃଷ୍ଣ ପ୍ରେମ ଓ ସେ ଯୁଗଳ ନାଚ ଦେଖି ସେ ବିଭୋର ।

ଯେ ଯେପରି ଶକ୍ତିର ଅଧିକାରୀ ଈଶ୍ୱର ତାକୁ ସେହି ଅନୁସାରେ ବାଟ ଦେଖାଇ ଯୋଗାଡ଼ କରାଇ ଦେଇଥାନ୍ତି ।

କଟକଣା ପଢ଼ିବାକୁ ଆସିଲା—ଆମର ଲୋକ ମାନ-ସରୋବରକୁ ପାଣି ଆଣିବା ପାଇଁ ଯିବେ, କୁମର ଭାଣ୍ଡାର ଦରକାର କି ? ବୋଧହୁଏ ରାମଦାସ ବାବା ରାବଣ ହ୍ରଦର ପାଣି ନ ଛୁଇଁବା ପାଇଁ ପ୍ରତିଜ୍ଞା କରିଥିବାରୁ ତାଙ୍କର ପିଇବା ପାଇଁ ଓ ସେମାନଙ୍କର ରନ୍ଧାରନ୍ଧି ପାଇଁ ଏ ବ୍ୟବସ୍ଥା । ଆମେ ଦୁଇଜଣ ଦୁଇଟି ପାତ୍ର

ଦେଇଦେଲ । ମୁଁ କିଛି ପାଣି ଧରିଥିଲି, କିନ୍ତୁ ଏ ଭିତରେ ମାନ-ସରୋବର ପ୍ରତି କିଏ ଅଧିକ ଟାଣ ଭାବ ଆସିଥିବାରୁ ଅଧିକ ପାଣି ଧରିବାକୁ ଚାହିଁଥିଲି ।

ଜ୍ଞାନ ଟାଣିଲେ ଭାବ ଆସେ ।

କୈଳାସ ଲିଙ୍ଗଟି ଭୂମି ଦେଶରୁ ପ୍ରାୟ ପାଞ୍ଚ ଛ ହଜାର ଫୁଟ ଉପରକୁ ଉଠିଛି । ଉପରକୁ ଯେତିକି ଉଠିଛି ତଳକୁ ମଧ ତାର ଦଣ୍ଡଟି ନ୍ୟୂନ ପକ୍ଷରେ ସେତିକି ଭେଦ କରିଛି ନ ହେଲେ ସ୍ଥିର ହୋଇ ରହି ନଥାନ୍ତା । ଭୂମି ଉପରେ ଲମ୍ବ ପାତ କରୁଥିବା ତାର ପାର୍ଶ୍ୱରେ ଅସଂଖ୍ୟ ଲମ୍ବିତ କଣ୍ଠ ଭଳିଆ ବରଫ ଖଣ୍ଡ ଦେଖିଥିଲି । ତଳକା କାଗ ଗୁଡ଼ିକ ମଧ୍ୟ ବରଫ ଦ୍ୱାରା ଆଚ୍ଛାଦିତ । ବରଫ ଗଳିତ ହୋଇ ଜଳର ଉତ୍ପତ୍ତି ଓ ତାହା ତଳକୁ ଖସି ଆସୁଥାଏ ।

ଅସଂଖ୍ୟ ଜଳକଣାରୁ ଅନନ୍ତ ଜଳରାଶିର ଉତ୍ପତ୍ତି ।

ଲିଙ୍ଗ ମୂଳର ଧାରକୁ ଲାଗି ଗୋଟିଏ ନଦୀ ଥିବା ଦୁଇ ସନ୍ୟାସୀ ଦେଖି ଆସିଛନ୍ତି । ଏତେ ଦୂର ପ୍ରଦେଶ ଯେ ତାକୁ ଅତିକ୍ରମ କରିପାରି ନଥିଲେ । କିନ୍ତୁ ସେ ପାଣି ବାହାରକୁ ଯିବା ଦେଖି ନାହିଁ । ସେ ପାଣି ତେବେ ଗଲା କୁଆଡେ ?

ବାଷ୍ପୀଭୂତ ହେବା କଥା ଉଠୁ ନାହିଁ ଯେହେତୁ ସେପରି ଉତ୍ତାପ ନାହିଁ ଓ ଜଳ ମଧ୍ୟ ଯଥେଷ୍ଟ ।

ଜଳ ଝରେ । ଝରି ଝରି ଖାଇଯାଏ । ଭୂରି-ଅଣୁ ଚାଣି ବସ୍ତୁରେ ନିର୍ମିତ ଦଣ୍ଡ ପାର୍ଶ୍ୱ ଦେଇ ଖାଇ ଗଲାବେଳେ ସୁଡଙ୍ଗର

ଉତ୍ପତ୍ତି ହୁଏ । ତାହା ଭୂଗର୍ଭ ଭେଦା ଦଣ୍ଡର ପାର୍ଶ୍ୱ ଦେଇ ରସାତଳକୁ ଯାଏ । ରସାତଳରେ ତପ୍ତ ତରଳ ପଦାର୍ଥର ଅବସ୍ଥିତି । ଉଚ୍ଛ୍ୱାସ ଥିବା ପାଣି ସେହି ତରଳ ପଦାର୍ଥ ଉପରେ ଓ ପୃଥିବୀର ଉପର ଭାଗରୁ ମାଟିର ଆବରଣ ତଳେ ଖେଳେଇ ଯାଇଥାଏ । ଉତ୍ତାପ ନଏ ଓ ଠଣ୍ଡା କରେ । ତାର ତଳ ଭାଗର ତରଳ ପଦାର୍ଥର କିଛି ଅଂଶ ଘନୀଭୂତ ହୋଇ ସେହି ଜଳକୁ ଧାରଣ କରେ । ଭୂମି ତଳେ ସମୁଦ୍ର ପତ୍ତନର ସମାନ୍ତରାଳରେ ଏକ ସୁଡ଼ଙ୍ଗ ଜଳାଶୟ ସୃଷ୍ଟି କରେ । ସେଥିରୁ ବାଟ ପାଇ ଜଳ ଆସେ ମାନସରୋବରକୁ ଓ ଗଙ୍ଗା ଯମୁନା ଭଳି କେତୋଟି ନଦୀର ମଧ୍ୟ ଉତ୍ପତ୍ତି ହୁଏ । ସରସ୍ୱତୀ ଅନ୍ତଃସ୍ରୋତା ହୋଇ ବହିଯାଏ ।

ଏହାର ପ୍ରମାଣ ହେଲା ମାନସରୋବରର ପାଣି ଶୀତଦିନେ ବରଫ ନ ପାଲଟିବା ଓ ତାର ମଝି ଭାଗଟା ଧୂଆଁ ଦେଖା ଯାଉଥିବା । ମାନସରୋବରର ପାଣିରେ ପର୍ଯ୍ୟାପ୍ତ ଭାବରେ ଯୋବାକ୍ଷାର ଥିବା ମଧ୍ୟ ତାର ପ୍ରମାଣ । ଯେହେତୁ ତାହା ବା ତାହା ତଳରେ ଥିବା ଧାତୁ ଅଧିକାଂଶ ଲବଣ ବା ଧାତୁ ଅପେକ୍ଷା ପ୍ରଚୁର ବା ହାଲୁକା ତାହା ଭୂମଧ୍ୟ ତରଳ ପଦାର୍ଥର ଉପରି ସ୍ତରରେ ଥିବା କଥା ।

ବିଜ୍ଞାନର ତଥ୍ୟ ଓ ଗଣିତର ସୂତ୍ର କାଳଗର୍ଭରେ ଲୀନ ହୋଇ ପୁଣି ଆବିଷ୍କୃତ ହୋଇ ଚାଲିଛି । ନୂତନ ତଥ୍ୟ ବା ସୂତ୍ର କେବଳ ହେଲେ ଆବିଷ୍କାର କହିବା ଭ୍ରାନ୍ତ । ଜ୍ଞାନ ଓ ପ୍ରମାଣ ଲୁପ୍ତ ହୋଇଗଲେ କିମ୍ବଦନ୍ତୀ ସ୍ୱରୂପରେ କେତୋଟି ତଥ୍ୟ ବା ସିଦ୍ଧାନ୍ତ ରହିଯାଇ ଥାଏ ।

ସେହି ଝିଅଟିକୁ ବରଷା ମଇଦାନଠାରେ ଭଲ ଲଗାଯାଇ ଥିଲା, ତାର ଅଭିଭାବକ ଆସି ସଦାନନ୍ଦ ସ୍ୱାମୀଙ୍କୁ ହାତେ ଦହି ଦେଇଦେଲା । ସେ ଦିନ ରାତିରେ ଆମ ପାଇଁ ଖେଚୁଡ଼ି ହେବାର ଥିଲା । ସଦାନନ୍ଦ ସ୍ୱାମୀଙ୍କୁ କହିଲି—ମୋତେ ସାମାନ୍ୟ ଟିକିଏ ଦେବେ ମୁଁ ଖେଚୁଡ଼ିରେ ମିଶାଇବି । ସେ ମନା କଲେ । କହିଲେ ଯେ ସେ ଜଣେ ମାନ୍ଦ୍ରାଜୀ, ଦହି ନଥିଲେ ଚଳିପାରିବେ ନାହିଁ । ସେ ତାକୁ ଚାରି ପାଞ୍ଚ ଦିନ ଧରି ଖାଇବେ । ମୁଁ କହିଲି—'ମୋର ଘିଅ ଓ ଚିନି ଖାଅ ଯେ ।' ସେ ମୋତେ ନ କହି ମଧ୍ୟ ଦରକାର ଅନୁଯାୟୀ ନେଇଥାନ୍ତି ଓ ପରେ କହି ଦିଅନ୍ତି ।

ସେ —ଦିଅ ନାଆରେ ମୋର ଜିନିଷ ମଧ୍ୟ ତୁମେ ଖାଇଛ ।

ସେ ବେଳେ ବେଳେ ଲହିଁଯାଇ ଥିବା ଭଜା ମୁଗ ଓ ଶୁଖିଲା ଖଜୁରି ଦେଇଥାନ୍ତି । ବେଶି ଭାଗରେ ଖେଚୁଡ଼ିଟା ତାଙ୍କ ଗୃହିଲରେ ହେଉଥାଏ । ମୁଁ ଚୁପ ରହିଲି ।

ଯେତେବେଳେ ପଣ୍ଡିଚେରୀର ରାଜା କୈଳାସ ପରିକ୍ରମା କରୁଥିଲେ, ଗୋଟିଏ ପିଆଜ ଫାଳ ଯକାଟେଶ ମନ୍ତ୍ରୀ ଓ ରାଜାଙ୍କର ମନୋମାଳିନ୍ୟ ଘଟିଥିଲା । ଏହି ଉଦାହରଣ ଜନିତ ଚଢ଼ଉ ଚଢ଼ା ଭାବ ଓ ସେଥିରୁ ଉପୁଜୁଥିବା କଳହ ପ୍ରତି ସାବଧାନ ରହିବାପାଇଁ କଚଖମ୍ପା ସତର୍କ କରି ଦେଇଥିଲା ।

ଦୁଇ ଜଣ ତରତ୍ତପୁ ଆସିଲେ । ଜଣକୁ ମାଡ଼ ବାଜି ସେପ୍ଟିକ୍ ହୋଇଥାଏ । କଚଖମ୍ପା ଓ ମୁଁ ଭାଷାନ୍ତରକାରୀ ରହିଲୁ । ସେ କୌଣସି ରାସ୍ତା ତିଆରି କାମରେ ଲାଗିଥିଲା । ଜଣେ ଚୀନା

ଲୋକ ସହିତ ତାର ଝଗଡ଼ା ହୁଏ । ଏ ବିଶେଷ ବାହାଦୁର ସହିତ ମୁକାବିଲା କରି ତାକୁ ବନ୍ଦୀ କରି ଦେଇଥିଲା । ସେ ସମୟରେ ତାକୁ ସେଠୁ ମାଡ଼ ବାଜିଥିଲା ।

ତାର କଥାରେ ଉତ୍ତେଜନା ଥିଲା ।

ଡେଙ୍କାଣ୍ଡି ବାହିନୀ ହେଙ୍କାନନ୍ଦ ସ୍ୱାମୀଙ୍କ ଆଖି ଝଲସି ଉଠିଲା ।

କହିଲେ—ଦେଖ, ମୁଁ ହେଉଛି ସନ୍ୟାସୀ । ଚୀନା, ତିବ୍ବତୀୟ, ଭାରତୀୟ ସମସ୍ତେ ମୋ ଆଖିରେ ସମାନ । ତୁମର କ'ଣ ହୋଇଛି କୁହ ମୁଁ ତୁମକୁ ଭଲ କରିବି । କଥାଟା କଠୋର ଥିଲା । କୋମଳ ନଥିଲା । କିନ୍ତୁ ଆଗନ୍ତୁକମାନେ ସେଥିରେ ସନ୍ତୁଷ୍ଟ ଥିଲେ ।

ଏପରି ସମୟରେ ଜଣେ ତିବ୍ବତୀୟ ଘୋଡା ପିଠିରେ ସବାର ହୋଇ, ସାଙ୍ଗରେ ଗୋଟିଏ ଘୋଡ଼ା ଛୁଆକୁ ଦଉଡ଼ାଇ, ଆମ ତମ୍ବୁ ଭିତରକୁ ତୀକ୍ଷ୍ଣ ନଜର କରି ଆମ ପଟକୁ ଅଗ୍ରସର ହେବା ଦେଖିଲୁ । ସମସ୍ତଙ୍କ ମୁହଁ କଳା ପଡ଼ିଗଲା । ମୋର ମନରେ ଆଶଙ୍କା ଆସିଲା । 'ଜଣେ କହିଲା—'ଏ ଦଲାଲ୍ ହେବ', ଓ କଚଖମା ତମ୍ବୁର ଦୁଆର ମୁହଁ ପର୍ଦ୍ଦା ପକାଇ ଦେଲା ।

ମୁଁ ପଚାରିଲି—ଦଲାଲ୍ ମାନେ କ'ଣ ?

ସେ—ଚୀନା ଦଳୀୟ ଓ ଚୀନା ଲୋକଙ୍କୁ ସାହାଯ୍ୟ କରେ ।

ମୋର ଧାରଣା ଥିଲା ଯେ ଦଲାଲମାନେ ବୁର୍ଜୁଆ ଭଳିଆ ଗୋଟିଏ ପଦ, କମ୍ୟୁନିଷ୍ଟମାନେ ଅଣ କମ୍ୟୁନିଷ୍ଟଙ୍କ ପ୍ରତି ବ୍ୟବହାର

କରିଥାନ୍ତି । ତମଲ ପଦବାଚ୍ୟଂଶ କେଉଁଠା ଅପରେ ଉପଯୁକ୍ତ ଓ କେଉଁଠା ବ୍ୟବହାରକାରୀର ନିଜ ଉପରେ ଉପଯୁକ୍ତ ଓ ପ୍ରଯୁଜ୍ୟ । ମାନେ କେଉଁଠା ଶବ୍ଦର ସାଧାପ୍ୟକାରୀ ପ୍ରତି ଉପଯୁକ୍ତ ପ୍ରୟୋଗ ହୋଇଥାଏ ଓ କେତେକାଂଶରେ ବ୍ୟବହାରକାରୀର ଘୃଣାର ପ୍ରବଳତା ଦର୍ଶାଇ ଥାଏ ।

ଲକ୍ଷ୍ ସା ସେଉଁ ସେହି ବାଟ ଦେଇ ଯାଇଥାଏ ।

ସଚ୍ଚିଦାନନ୍ଦ ସ୍ୱାମୀ ସେଗୀଟିକୁ ପେନ୍‌ସିଲିନ୍ ଦେଇ ବିଦାୟ ଦେଇଥିଲେ ।

ତା ପରେ ସେ ଗାଧୋଇବାକୁ ଗଲେ । ବେଳବୁଡ଼ ଅନ୍ଧାର ହୋଇଯାଇଥିଲା ।

ଇତି ମଧ୍ୟରେ ଖେଚଡ଼ି ଆସିଲା ।

ସଚ୍ଚିଦାନନ୍ଦ ସ୍ୱାମୀଙ୍କ ଠାରୁ ଶିଖିଥିବା ବୁଦ୍ଧି, ଚତୁରତା ଓ ବେଗ ସହିତ; ଡାଲଟୁ ଦହି ବାହାର କରି ଟେବୁଲରେ ଡାଲି ଅଭାବ ଅଂଶଟା ମୋଠାରେ ଥିବା ମାନସସରୋବର ଜଳରେ ପୂରଣ କଲି । ଷୀର ନୀର ଭଳିଆ ଦହି ପାଣି ମିଶିଗଲା । ତାହା ନଦେଖି ଆହୁରି ଡାଲି ଅହୁରି ମିଶାଇଲି ।

ଭବିଲି କମ୍ୟୁନିଷ୍ଟ ପ୍ରତି ଥିଲା ନ ଥିଲା ମୀତ ପ୍ରସ୍ତୁତ୍ୟ ଓ ଅନୁବାଦ କରିଥିବା ହେତୁ ଶ୍ରମିକ ଆଇନ ବଳରେ ହେଉଛି ମୋର ପ୍ରାପ୍ୟ ।

ସେଦିନ ଗୋଟିଏ ପୂର୍ଣ୍ଣ ଭୋଜନ ହେଲା ।

ସଚ୍ଚିଦାନନ୍ଦ ସ୍ୱାମୀ ତୀର୍ଥସ୍ନାନ କରି ଆସିଲେ । ତାଙ୍କ ପୂର୍ବପର ଭକ୍ତିଥିବା, କିନ୍ତୁ ମୋର ଆଜି ଚିକ୍କଣ ଥିବା ଦେଖି କେତେଜଣ ବୁଝିଗଲେ ।

ଅଚଳ୍ପା ଚନ୍ଦ୍ରର ପଣ୍ଡ ଦାନ ଦେଖି, ନସୃପର ବ୍ୟକ୍ତିକିମ କରେଲ ମଧ, ଜଦ ପୂର୍ବ ନସୃପକୁ ପ୍ରତ୍ୟାବର୍ତ୍ତନ କରିଯାଇଥାଏ ତାହାହେଲେ ଦୋଷ ନ ଥାଏ ।

ସେହେତୁ ଅହଲ୍ୟା, ଦ୍ରୌପଦୀ, କୁନ୍ତୀ, ତାରା, ମନ୍ଦୋଦରୀ ଇତ୍ୟାଦିଙ୍କ ନାମ ସ୍ମରଣରେ ମହାପାତକ ନାଶ ହୋଇଥାଏ ।

ଏ ହେଲ ରାକ୍ଷସ ତାଲ ବା ରାବଣ ହ୍ରଦ—ରାକ୍ଷସ ପ୍ରବୃତ୍ତିର ତାଲ ବା ରାବଣ ପ୍ରବୃତ୍ତିର ହ୍ରଦମ୍ଭ ।

ମଣିଷ ହେଉଛନ୍ତି ମାୟାର ଭାଠ ପିତୁଳା । ମାୟା ସୂତା ଟାଣି ଦେଇ ନଚାଏ । ରାବଣ ହ୍ରଦ ହେଲ ମାୟାର ଖେଳର ନମୁନା । ଏଠାରେ ଗୋଟିଏ ହେଲେ ହଂସ ପହଁରିବାର ଦେଖିନାହିଁ । ଏଥିରେ ଆଶ୍ଚର୍ଯ୍ୟ ହେବାର କିଛି ନାହିଁ ।

## ରାବଣହ୍ରଦ ଛାଡ଼ିଲୁ— ଜୁଲାଇ-୭

ତହିଁ ଆରଦିନ ମୁଁ ଏକଲା ଆଗରେ ବାହାରି ପଡ଼ିଲି । ହାରାଧନ ହେଉଛନ୍ତି ଜଟି ସେ ନେପାଳ ସାଧୁ ସହିତ ଚାଲିଯାଇଥିଲେ । ରାମଦାସ ବାବାଜି ଘୋଡା ଉପରେ । ଦତ୍ତାତ୍ରେୟାନନ୍ଦଜୀ ମାନସରୋ-ବର ପରିକ୍ରମାରେ ଯାଇଥାନ୍ତି । ଚାଲିବା ଲୋକ କେବଳ ମୁଁ, ଜଣେ । ନିଜକୁ କପଡ଼ ଖାପଛଡ଼ା ଏକୁଟିଆ ଅନୁଭବ କରୁଥିଲି ।

ଗୋଡ଼ ବାହାରୁ ନ ଥାଏ । ନିରୁତ୍ସାହ ହେଉଥାଏ । ଚାଲିବା କଥା — ଚାଲିଲି ।

ରାସ୍ତା ଥିଲା ଲମ୍ବା ସଡ଼କ । ସଡ଼କ ପଡ଼ିଥାଏ ରାବଣ ହ୍ରଦର କୂଳେ କୂଳେ । କିଛି ଦୂର ଯାଇଛି ଆଗପଟୁ ତମ୍ବୁ ଗୁଡ଼ଇ ହୋଇ କେତେଣ ନେପାଳି ଆସୁଥିବା ଦେଖିଲି । ରାତିରେ ସେ ହ୍ରଦର ଆଗ୍ନେୟ କୋଣର ବାଙ୍କ ପାଖରେ ଥିବା 'ଧର୍ମଶାଳା' ଠାରେ ରହିଥିଲି ।

'ଧର୍ମଶାଳା' ଥିଲା ଗୋଟିଏ ପଥର ଓ ମାଟିର କେତୁଟା ଛୋଟଘର, ଏକ ଭଙ୍ଗା ଦେଉଳର ପରିବେଶ ଭିତରେ, ଯେଉଁ ଯାଗାକୁ ଦେଖିଲେ 'ଭୂତ ଅଛି' ବୋଲି କୁହାଯାଇ ପାରେ ।

ତାକୁ ଟପି ଯାଇଛି, ହଠାତ୍ ଦେଖିଲି, ମୋର ବାଁ ପଟକୁ ଭୂଇଁ ଓ ପାହାଡ଼ ଦେହକୁ ପ୍ରାୟ ଦୁଇ ଫୁଟ ଲେଖାଏଁ ଛାଡ଼ି, ତଳି ଓ ପାହାଡ ଭାଗର ସମାନ୍ତରାଳରେ କଣ ଟେଙ୍ଗାଏ ଦ୍ରୁତ ବେଗରେ ଛୁଟୁଛି । ଗୋଟିଏ ସରଳରେଖା ଟାଣି ଦୂରନ୍ତାକୁ ଗିରି ଭେଦ ଯାଉଛି । ଆଶ୍ଚର୍ଯ୍ୟ ହୋଇ କଥାଟାକୁ ବୁଝିବା ପାଇଁ ଠିଆ ହେଲି । ଯଦି କୌଣସି ବିପଦର ସମ୍ମୁଖୀନ ହେବାକୁ ପଡ଼େ ସେଥିପାଇଁ ପ୍ରସ୍ତୁତ ହେଲି । ଯେମିତି ହଠାତ୍ ଦେଖିଥିଲି ସେମିତି ହଠାତ୍ ବନ୍ଦ ହୋଇଗଲା । ଜନ୍ତୁଟା ଛନ ଛନ ଆଖିରେ ଚାହୁଁଥାଏ । କୁତ୍ସିତ ଭଳିଆ ଦେଖାଯାଉ ଥାଏ । ଚାଲିପଡ଼ି ଖଟ୍ ଖଟ୍ କରି ବିପରୀତ ଦିଗକୁ ଦଉଡ଼ି ଗଲା ।

ମୁକ୍ତ ଲମ୍ଫ ଦେଇ ଦେଇ ଧାଉଁଥିଲି । କିନ୍ତୁ ଏମନ୍ତ ଚଞ୍ଚଳ ଯେ ଊର୍ଦ୍ଧ୍ୱବାଞ୍ଛା ତାର ପ୍ରାୟ ନଥିଲା । କେବଳ ଚେଷ୍ଟାଙ୍କିତ ଗନ୍ତବ୍ୟ ଦୁଇଟି ବୋ.ଟରକୁ ଆସିଥିଲି ଓ ଅପେକ୍ଷାକୃତ ଅତି କ୍ଷିପ୍ର ଥିବାରୁ ସରଳ ରେଖା ଟାଣିଲା ଭଳିଆ ଦିଶୁଥିଲି ।

ଭ୍ରଟଲ ଅନେକର ଗତି ମଧ୍ୟ ସେହିପରି ସରଳ ରେଖାରେ । ବିଶ୍ୱ ବ୍ରହ୍ମାଣ୍ଡରେ ଯେତେ ଗତି ଅଛି ସବୁ ସେହିପରି ଦ୍ରୁତ୍ ଧାଉଁ ଗଲା ଭଳି । ତାଙ୍କର ଗତି ମଧ୍ୟ ସେହିପରି ଓ ସମସ୍ତେ ଗତିର ସମଷ୍ଟି ।

ମୁଁ ଥିଲି ଏକ ପ୍ରକାର କେନ୍ଦ୍ର ସ୍ଥଳରେ । ତାର ଗତିଟା ଥିଲା କକ୍ଷଟା ଚକ୍ର ଆକାରର । ମୋ ଠାରୁ ଦୂରେଇ ଯିବାକୁ ଯାଇ ପଛରୁ ଆସି ଆଗକୁ ଯାଉଥିଲା । ତାଙ୍କ ପାଖରେ, ପ୍ରାୟ କେନ୍ଦ୍ର ସ୍ଥଳରେ ଥିବାରୁ ଦୁହିଁଙ୍କ ଭିତରେ ସମ୍ପର୍କଟାରେ ବିଶେଷ ପରିବର୍ତ୍ତନ ଘଟି ନ ଥିଲା ।

ଭଗବାନ ହେଉଛନ୍ତି କେନ୍ଦ୍ର ସ୍ଥଳରେ ଥାଇ ଆମର ଗତି-ବିଧି ନିୟନ୍ତ୍ରଣ କରି ସାକ୍ଷୀ ରହନ୍ତି । ଆପେ ମାୟାକୁ ସ୍ଥିର- ମାୟାକୁ କେନ୍ଦ୍ର କରି ଧାଉଁ । ତାହା ଅପେକ୍ଷା ସମ୍ମୁଖୀନ ହେବା ଶ୍ରେୟ ଓ ବିଧେୟ ।

ଏହାପରେ ପଡ଼ିଲା ଗୋଟିଏ ବୁଦ୍ବୁଦାପୂର୍ଣ୍ଣ ହ୍ରଦ । ସେଠାରେ ବସି ଅନ୍ୟ ମାନଙ୍କୁ ଅପେକ୍ଷା କଲି । ହ୍ରଦ ପାର ହେବା ପରେ ଗୋଟିଏ ଶୃଙ୍ଖଳ ନଦୀ ଶଯ୍ୟା ପଡ଼ିଲା । ଶଯ୍ୟାଟା ଘରରେ ସ୍ଥିତ ପକାଇବାକୁ ଯାଇ ଇଟା ଖଣ୍ଡ ପିଟିଲେ ଯେପରି ଥାଏ ସେପରି

ଦେଖା ଯାଉଥିଲା । ରଙ୍ଗ କଳ୍ପ ବଚନ ଥିଲା । ମନେ ପଡ଼ିଲା ଅଲ-ବାବା ଗପ କଥା । ସେଠାରୁ ଓଟିଲା ପରେ କରୁ ଅଖାଡ଼୍ୟା ଜାଗା ପଡ଼ିଲା । ପଂର ମରେ ଅନେକ ଗୁଡ଼ାଏ ନଦୀ ଓ ନାଳ ପଡ଼ିଲା । ଅଣ୍ଟୁ ତେଉଁ ପାଣି ଥିଲା ଓ ସୁଅର ବେଗ୍ ଥିଲା । ତାପରେ ଆସିଲା ଜଙ୍ଗଲା ସଡ଼କର ପୂର୍ବ ଦକ୍ଷିଣ ଅଂଶ । ସେଠାରୁ ଗଡ଼ାଣି ଗୋଚର ଭୂଇଁ ଦେଇ ବ୍ରୁଙ୍ଗରେ ଦ୍ୱିତୀୟ ରାତି ଯାପନ କରିବା ପାଇଁ ପହଞ୍ଚିଲୁ ।

ରାସ୍ତାଟା ବେସମରି ମର ପଡ଼ୁଥିଲା । ବନ୍ଧେଇ ଦୁର୍ଗନ୍ଧ ନଥିଲା କ ଖଣ୍ଡିଆ ହୋଇ ନଥିଲା । କେଣ୍ଟୋର ଘୋଡ଼ାଙ୍କି ମରି ଯାଇଥିଲା ।

ସେ ଦିନ ଅଠର ମାଇଲ ଗ୍ଭଲିଥିଲୁ ।

ବ୍ରୁଙ୍ଗ (ବାହୁଡ଼ା) ତାଙ୍କୁ—୨୦୯+୧୮=୨୨୭ ମା

ପହଞ୍ଚିଲା ବେଳକୁ ମୁଣ୍ଡ ଓ ମିଜାଜ ଗରମ ଥିଲା । ଦେହଟା ଶକ୍ତି ହୀନ ହୋଇ ନିସ୍ତେଜ ହୋଇ ଯାଉଥିଲା । ତମ୍ବୁ ଭିତରେ ମଡ଼ା ଭଳିଆ ପଡ଼ିଗଲୁ । କଟଖମ୍ବାକୁ କ୍ଷୀର ଚରାଦ ଦେବା ପାଇଁ କହିଲୁ । ଗଛରେ ଅଦେଶର ଅବାଜ ଥିଲା । ସେହିପରି କଟ-ଖମ୍ବାର ଗଳା ମଧ୍ଧ ରୁକ୍ଷ ଓ ଶାଣ ଥିଲା ।

କହିଲା— ମିଳବ ନାହିଁ ।

ପଗ୍ଭରିଲୁ— କାହିଁକ ?

ବହୁଳ— ସେଠକା ହେବା ଅଗରୁ ବସ୍ତ ଦେଇଛନ୍ତି ।
ତାଙ୍କର ଗୃହା ହେବ ।

ବହୁଲ— ମୋର ଅବସ୍ଥା ଗ୍ରେପ ମୋଟେ ଷୀର ଦରକାର

ସେ— ମୋର ଅବସ୍ଥା କଏ ଦେଖୁଛି ?

ମୁଁ— ତାହିଁକ ଅଠର ମାଇଲ ଚ଼ଲୁଥିଲ । ଅଟେଣ୍ଟ
ଗୋଟେ ଘୋଡ଼ା ଯିବା କଥା ଥିଲ ।

ସେ— ଗୋଟେ ଘୋଡ଼ା ଏବା ଅସିଛନ୍ତି ।

ମୁଁ— ଠକବାକୁ ଚେଷ୍ଟା କରନ । ଘୋଡ଼ାଙ୍କ ନ' ଦଣ
ପାଇଲ । ଆମେ ଅଠର ମାଇଲ ଅସିଛୁ ।
କଥା ଛୁଉଥିଲ ଦନକୁ ଗୋଟେଲେଖା ପଡ଼ାକ ଯିବ
ପାଇଁ । ଘୋଡ଼ାରେ ବସୁଛ ବୋଲି ଦୁଇ ଘୋଡ଼ାକ
ତାହିଁକ ଯିବ ? ଏତେ ଦୂର ଚ଼ଲବାକୁ ମୋତେ
ପଚୃଭ ନଥିଲ ତାହିଁକ ।

ସେ— ନାହିଁ, କେବଳ ଗୋଟିଏ ଘୋଡ଼ା ଏବା ଅସିଛନ୍ତି

ଦେଖିଲ, ଦୁଇ ଦନର ବାଟ ବୋଲି ତାକୁ ପ୍ରମାଣ ଦେବାକୁ ହେବ ଓ ନ ଧମକାଇଲେ ମୁଣ୍ଡରେ ଚଢ଼ିବନ୍ତି ।

ମୁଁ— ମୁଁ, ଏମର କୌଶଳ ଶିକ୍ଷା ପାଇଛୁ ଓ ସେଥିରେ
ବାଟ ଏବଂ କାଗା ଠକସାଇବା ଶିକ୍ଷା ଦଆପାଏ ।
ସାହେବ ତାଲ ଠାରେ ଆମେ ଥିଲେ ଗୁସୁଲ ଗୋମ୍ପାର
ପାଖାପାଖି ।

ସେ— ହଁ ।

ମୁଁ— ସେଠାରୁ ଆସନ୍ତା ଆସିଲେ ଓ ଯେଉଁ ଠାରେ ଗୁଡ଼ାଏ ପାଣି ଧାର ପଡ଼ନ୍ତି ସେ ଥିଲା ସୁବାଟକ୍ଲବ୍‌ର ବସବର ସେଠାରୁ ଏ ଗୋଟିଏ ଚଢ଼ାଉ । ଯିବା ବାଟ ଓ ଫେରିବା ବାଟ ସମାନ୍ତରାଳରେ ଅଛି ।

ବୁଢ଼ା ଭଦ୍ରଲୋକ— ଭୂସ ପାଇଁ ଷୀର ଆସିବ ।

ଅସ୍ତବରେ ସ୍ୱଭାବ ନଷ୍ଟ । କଳି କରିବା ମୋର ପ୍ରକୃତି ନୁହେଁ । କିନ୍ତୁ ଅବସ୍ଥା ଦୃଷ୍ଟିରୁ ଦାବୀ ହାସଲ କରିବାର ପ୍ରବୃତ୍ତି ହୋଇଥିଲା । ବିଚରା ବୁଢ଼ାର ମଧ୍ୟ କିଛି ଦୋଷ ନାହିଁ । ବାହୁଡ଼ି ଦେଖେ ଯେ ଘୋଡ଼ାହିଁ ମରି ଯାଇଛନ୍ତି । ସେହି କୋମାର ଆଉ ଘୋଡ଼ାରେ ବସିଛନ୍ତି ମଧ୍ୟ ଏତେ ବଡ଼ ଦାୟିତ୍ୱ ଭୁଲିଥିବା ଖେଳୁ କମ୍ କଷ୍ଟର କଥା ନୁହେଁ । ଗୁଜରାଟି ଦଳଟି ଘୋଡ଼ାରେ ବସି ଯାତ୍ରା କରୁଛନ୍ତି ବୋଲି, ଖର୍ଚ୍ଚ ଭାଗରେ ବ୍ୟବସ୍ଥା କରି, ଉଧିବା ଯିବା ପାଇଁ ତାଙ୍କ ଉପରେ ଭାର ଦେଇଥିଲେ ।

କିଛି ସମୟ ପରେ ଜୟନ୍ତ ଭାଇ ପଚାରିଲେ— ସତରେ ଆପଣ କଣ ସମର ବିଦ୍ୟାରେ ତାଲିମ ପାଇଛନ୍ତି ?

ଭଦ୍ରଲୋକ— ହଁ ପାଇଛି ।

ଉତ୍ତର ସ୍ପଷ୍ଟ ଥାଏ । ମିଛ କହିବାଟା ଉଦ୍ଦେଶ୍ୟ ବା ଲକ୍ଷ୍ୟ ଉପରେ ନିର୍ଭର କରେ । ତାଲିମଟା ଯେ ସ୍ୱୀକାର ହେବ, ତାହା କଣ ଧରାବନ୍ଧା ? ସେ ସବୁ ଜାଗାରେ ମିଳିଟାରୁ ଶବ୍ଦଟା

ଭିକ୍ଟୋରିଆ ଟାଓ୍ବର ଘର ଅଣିଦଏ । ସେ ସ୍ଥଳରେ ପାହ ଦେଖି ସ୍ୱାସ୍ଥ୍ୟ ରକ୍ଷା କରିବାକୁ ସେପରି କହୁଥିଲି । ବୋଧହୁଏ ଡ଼ଙ୍ଗା ଡ଼ାଙ୍ଗ ହେତୁ ଘଟାଟା ବିଶ୍ୱାସ ଯୋଗ୍ୟ ଥିଲା, କାରଣ ସୀମାନ୍ତରେ ଏକ ପ୍ରକାର ଶୀତଳ ଯୁଦ୍ଧ ଚାଲିଥାଇ ଗୁଜବ ଗୁଡ଼ିକ ଆତଙ୍କ ସୃଷ୍ଟି କରୁଥିଲା ।

କ୍ଷୀର ଆସିଲା, ଡାଲେ । ଦାମ୍ ଥିଲା ଟଙ୍କାଟିଏ । ଶାଶୁ ପାଣି ବୋହୁ ପାଣି ସାଥିକୁ ଆଜ କ ପାଣି ମିଶିଥିଲା କହୁ ହେଉ ନାହିଁ । ଟାଇଟଣ୍ୟ ବା ଦଲାଲ ପାଣି କହୁପାରେ, କିନ୍ତୁ କଟକଣା ସେପରି ଲୋକ ନୁହେଁ । ସ୍ୱ ଯଧ ତା ଯାଗାରେ ଥାନ୍ତି, ବାଧ ହୋଇ ପାଣି ମିଶାଇବାକୁ ଉପଦେଶ ଦେଇ ଥାନ୍ତି ବା ନିଜେ ମିଶାଇ ଥାନ୍ତି । ଗୃହଲ ପିଠଉ ପରି ବହୁବା କଥା, ଥିଲା ଗଜଉନ୍ନ ପାଣି ମିଶା ଗାଈ କ୍ଷୀର କଳଥା ।

ସଚ୍ଚିଦାନନ୍ଦ ସ୍ୱାମୀ କହିଲେ— ଅଳ୍ପ କ୍ଷୀର ରହିଥାଉ । ଟିକିଏ ଦହି ମିଶାଇ ଦେଲେ, ସକାଳୁ ଖେଚେଡ଼ିରେ ପକାଇ ଖାଇବା ।

ଉସ୍ମାନ ହେଲା ଯରେ ସେତକ ଗୋଟେ ଡମ୍‌ବର ପୁରା ଟେକ ନେଇଥିଲି । ମନେ ପଡ଼ିଲା ସହରୀ ପରେ ।

ସଚ୍ଚିଦାନନ୍ଦ ସ୍ୱାମୀ କହିଲେ— ତୁମେ ମାନେ ଏତା ଗୃହସ୍ଥ, ଆମେ ହୋଇଗଲୁ ନିବୁଦ୍ଧିଆ ।

କଟେଣ ଡିଣ୍ଡିକଟା ଠାରୁ ଗୃହସ୍ଥ ଆଖ୍ୟା ପାଇ ଆତ୍ମତୃପ୍ତି ଅନୁଭବ କଲି ।

ଗୃହର କେବଳ ଜଣେ— ମାୟା ବା ଭଗବାନ । ଯିଏ ମଣିଷକୁ ବଳାତ୍ ଆକୃଷ୍ୟ ମୋହାପୁ ରକ୍ତ ନର କୁଣ୍ଡଳ ନାଚ ନଚାନ୍ତି । ମଣିଷର ତୃପ୍ତ ନ ଥାଏ । ବୁଝିଲ ମୁଁ ଦଣ୍ଡ କେଉଁର ଲବ ମାଡ ଲବ ନାହିଁ । ଲବଥିଲେ ସ୍ୱର୍ଗ ଦେଇ ପାଇଥାନ୍ତା । ମୋଠାରୁ କ୍ଷୀର ନେବା ତାର ପ୍ରାପ୍ୟ ନୁହେଁ । ବୁଝିଲ ମଧ୍ୟ ମାନସରୋବର ଜଳ ଦଣ୍ଡ ଠାରୁ ଅଧିକତର ଦାମିକା । ସରଳ ଭାବରେ କହିଲି— ମୋର ମନେ ନଥିଲା ।

ସେ ମୁହଁ ମୋଡ଼ି ଗୋଟେ ହୁଁ ମାରିଥିଲେ ।

ସମସ୍ତ ଗଡ଼ଗଲା ।

କହିଲି ମୋଠି କଣ୍ଟ ସୋନା ଅଛି ତାକୁ ଭଜାଇ ରଖେ ।

ଲଙ୍କା ଲଙ୍କା ଘିଅ ଦେଇ ସୁଗଡଣା କରି ସବୁକୁ ଜଳଖିଆ କଲେ କେମିତି ହେବ ?

ସେ— ଉତ୍ତମ ।

ସୋନାକୁ ଭଜାଇ ଦେଲି । ଦୁଇଜଣଙ୍କ ପାଇଁ ସକାଳର ଜଳଖିଆଟା ଅଶାନ୍ତ ଭାବରେ ତୃପ୍ତିଜନକ ଥିଲା ।

## ବୁଝୁଁ ଛାଡ଼ଲୁ । — ଜୁଲାଇ ଆଠ

ସେଦିନଠାରୁ ବାଟ ଥିଲା ଖୁବ୍ ପରିଚିତ । ହେଇପାରେ ଯେ କୈଳାସର ବାଟ ଥିଲା ଅଦ୍ଭୁତ ବାଟ, ଥରେ ମାଡ଼ିଲେ ହେଲା । ଅଜଣା ବାଟରେ ଯେଉଁ ସତର୍କତାର ଭାବ ଥାଏ, ଚିହ୍ନା ବାଟରେ

ଛାଡ଼ା ନ ଥାଏ । ବେଶି ଭୁଗଠରେ ଗୁଲଞ୍ଚା ଦେଖିଥିଲି ଓ ବେଦ୍ବସି-ଆର ଭାଗରେ ହୋଇଥାଏ । ନିକଟ ଦୂର ଠିକ୍ ଭାବେ ଜଣାଯାଇ ଥାଏ । ଅବଶ୍ୟ ବେଶି ଗଡ଼ାଣିଆ ଓ ବେଶି ଉଠାଣିଆ ବାଟ ଦେଇ ଯେତେବେଳେ କଷ୍ଟଟା ଭୁଲ ଧାରଣା ଥାଏ । ଚଢ଼ା ବାଟରେ ସ୍ବଭାବ କମ ଦେହର ଶକ୍ତି ଖଟା ଯାଇଥାଏ । ଅଜଣା ବାଟରେ ଯେଉଁଠି ସେଉଁଠି ଜାଗାରେ ଶକ୍ତିର ଅପବ୍ୟୟ ଘଟିଥାଏ । ଅଜଣା ଜାଗାରେ ନୂତନ ଜାଗା ଦେଖିବାର ପ୍ରବଳ ଇଚ୍ଛା ବାଟଟାକୁ ଟାଣି ନେଇଥାଏ । କିନ୍ତୁ ପରିଚିତ ଜାଗାରେ ଚଢ଼ା ଜାଗାପ୍ରତି ମୋହ ଓ ମମତା ମଣିଷକୁ ଟାଣି ନେଇଥାଏ । ଯିବା ସମୟରେ ଉତ୍କଣ୍ଠା ଥାଏ ଦେଖି ଜାଣିବା ପାଇଁ ପ୍ରବଳ ଇଚ୍ଛା ଓ ବାହୁଡ଼ା ସମୟରେ ଉତ୍କଣ୍ଠା ଥାଏ 'ଆଜ ଜିକଏ ହୃଖେ ।' ପ୍ରଥମଟିରେ ଥାଏ ଜ୍ଞାନ ମାର୍ଗର ଭକ୍ତି ଓ ଆରଟିରେ ପ୍ରବୃତ୍ତି ମାର୍ଗର ସୁଖ ଥାଏ ।

ବାଟ ଚଢ଼ା ମାନେ ଫେରିବା ବାଟ ସୁଗମ । ମନ ଭାବୁଥା କୈଳାସ ଦର୍ଶନ କରିଛୁ, ଜୀବନ ସାର୍ଥକ ହୋଇଛୁ । ଜୀବନର ଅନ୍ୟ ସବୁ କିଛି ରକ୍ତ ମାଂସର ସ୍ବପ୍ନ ଛତି ସ୍ବଚ୍ଛ ଉଭେଇ ଯିବେ, ମିଳେଇ ଯିବ । ମାନେ, ସବୁ ମାୟା— ମିଛ । ନଜରକୁ ନ ନେବା ନିୟମ । ନିର୍ଲିପ୍ତ ରହିବା କଥା । ପକ୍ଷୀ ପର ଝାଡ଼ିଲା ପରି ଝାଡ଼ି ଦେବା କଥା । କୈଳାସ ଦର୍ଶନ ହେବ ସ୍ବର୍ଗକୁ ଯିବା ପାଇଁ ଗୋଟେ ଲଙ୍ଗୁଡ଼ ।

ମନ ଉତ୍ଫୁଲ୍ଲ ।

ମୁଁ ଅଗରେ ବାହାର ପଡ଼ିଲି । ବାଟରେ ବାଟରେ ବୁଲିଲି । ଠାଏଁ ଠାଏଁ ଘର ଥାଏ । ଝାଁ ଝାଁ ଏଠି ସେଠି ଜଣେ ଦୁଇଜଣ ଯିବା ଆସିବା କରୁଥାନ୍ତି ।

ତିବ୍ବତର ଜନତା ନାହିଁ, ନିର୍ଜନତା ନାହିଁ । ସ୍ଥାନଟି ଅପେକ୍ଷା-କୃତ କର୍ମଚଞ୍ଚଳ । ଦୁଇ ଚାରି ଜଣ ଘୋଡ଼ା ବାଲା, ଘୋଡ଼ାରେ ଚଢ଼ି, ସଙ୍ଗରେ ଦୁଇ ଚାରି ଘୋଡ଼ା ଟାଣି ଯିବା ଆସିବା କରୁଛନ୍ତି । ଘୋଡ଼ା ଓ ମଣିଷ ଦୁହେଁ ଜନ୍ତୁ । ମାନେ ହୃଷ୍ଟାଲକାୟ ଓ ଶ୍ରେମାଡ଼ ଘୋର କଳା । ଜଣେ ଅତି ହୃଷ୍ଟାଲକାୟ ଓ ମାଂସାଧିକ କଳା ଲୋକ ଏକ ବୃହଦାକାର ଘୋଡ଼ାରେ ବସିଥାଇ ସମ୍ଭାଷଣ କଲା । ମୁଁ ପ୍ରତ୍ୟୁତ୍ତର ଦେଲି । ଦ୍ୱନ୍ଦରେ କଥାବାର୍ତ୍ତା କଲା । ତାଭଳଭୋଟରେ ଛୁଡ଼ିଦେବ କହିଲା । ତାର ହସ ହସ କଥା ଗୁଡ଼ିକ ଖରେଇ ହେଲା ଭଲିଆ ଲଗିଲା । ମନ ଭଲ । ଚାଲି ଗଲା । ଅସ୍ୱସ୍ତି ବୋଧ ହେଲି ।

ନଦୀ ଚଢ଼ିଲା । ପାର ହେଲି । ଏଠି ସେଠି ଗୋଟେ ଦୁଇଟା ଘର ପଡ଼ିଲା ଟପି ଚାଲିଲି । ଷୀରର ଅନୁସନ୍ଧାନ କରୁଥାଏ । ତାଙ୍କ ଭୋଟ ସାଖା ପାଖି ହୋଇଛି, ପଛରୁ ଦେଖିଲି ଦୁଇ ଜଣ ଅଶ୍ୱାରୋହୀ ଆସୁଛନ୍ତି । ଜଣେ ଚୀନ ଲୋକ, ଆରଟି ଭାରତୀୟ । ଦୁଇଜଣ ପାଖ ସୈନିକ ପୋଷାକ ଧାରୀ । ଚୀନା ଲୋକଟି ଭାରତର ସତସ୍ୱର ।

ଠିକ୍ ସେହି ସମୟରେ ଜଣେ ବାଳକ ପଇସା ମାଗିଲା । ବାଳକକୁ ଭିକ୍ଷା ଦେଲେ କୁଆଡେ ଏମାନେ ରାଗି ଉଠିବେ ବୋଲି

ଭବ ଯନା ଛଲ । ସେମାନେ ପାଖକୁ ଆସିଲେ । ମୁଁ ପାଖେଇ ଗଲି । ସେମାନେ ଆଗେଇ ଗଲେ ।

ଦେବତାମୂର୍ତ୍ତିର ଚୋଟ୍ ଛୋଟ, । ଅର୍ଥାତ ପିଠିଉପରେ ମୂର୍ତ୍ତି ମୁଣ୍ଡା ଥାଏ । ମୂଳ ମୁଣ୍ଡାରେ ମୂର୍ତ୍ତି ନାହିଁ । ମନେ ହେଲା ଯେ ଏ ଗୁଡ଼ିକ ଗୋଟିଏ ଅସ୍ତ୍ରର ଭିନ୍ନ ଭିନ୍ନ ଅଂଶ ।

ବାଁ ପଟକୁ ପଥର ଦେହରେ ନ' ଦଶ ଜଣ ଦେବତାସ୍ତ୍ରୀ ପୁରୁଷ ଭାବ ଭରୁଥାନ୍ତି । ତୀନ ଲୋକଙ୍କ ସ୍ତ୍ରୀ ଲୋକ ମାନଙ୍କ ପଟକୁ ତାଙ୍କ ମୁହାଣି କରି ଆଗେଇଛନ୍ତି ଏ ଦେବତାମୂର୍ତ୍ତି ମୁଣ୍ଡ ପୋଡ଼ ନାର ଅନୁଗମନ କରୁଛନ୍ତି । ତୀନା ଲୋକଙ୍କର ମନରେ ଅଧ୍ୟାତ୍ମ୍ୟ ଭାବ ଅଛି । ଦେବତାମୂର୍ତ୍ତି ମୁଣ୍ଡକୁ ଲଗିବାରେ ଦେଶାତ୍ମବୋଧ ଜ୍ଞାନ ଓ ସମ୍ମାନ ଶ୍ରଦ୍ଧା ଭାବ ଅଛି । କଥାଟା ମୁଣ୍ଡ ପୋଡ଼ ସହି ନେଇଛନ୍ତି କାହିଁକି ? ହୁଏତ ସୈନିକର ଶୃଙ୍ଖଳା ଜ୍ଞାନ ହେତୁ ମୁଣ୍ଡ ପୋଡ଼ ନେଇଛନ୍ତି, ଅଥବା ପ୍ରଗତିଶୀଳ ଚିନ୍ତାଧାରା ମୁଣ୍ଡରେ ଅଧିକ ପଶିଛି । ଏମାନେ ଭୁଲରେ ମୁହାଁ ମୋ ଆଡ଼କୁ ଦୃଷ୍ଟି ପକାଇ ନାହାନ୍ତି । ଦୂରରୁ ଦେଖି ବୋଧହୁଏ ଆଗରୁ ତାଙ୍କର କର୍ମ ପନ୍ଥା ନିର୍ଣ୍ଣୟ କରି ନେଇଥିଲେ, ଅଥବା ସ୍ତ୍ରୀ ଜାତିଟା ଅଧିକ ଆକର୍ଷଣୀୟ ଥିଲା ।

ଏମାନଙ୍କର ଏତାଦୃଶ୍ୟ କାର୍ଯ୍ୟ ଦେଖି, ସ୍ତ୍ରୀ ଲୋକ ଗୁଡ଼ିକ ଆର ପଟକୁ ମୁହଁ କରିଦେଲେ ଓ ପୁରୁଷ ଲୋକ ଗୁଡ଼ିକ ମୁଣ୍ଡ ପୋଡ଼ ରହିଲେ, ସତେକି ସମସ୍ତେ ପଥର ପାଲଟି ଯାଇଛନ୍ତି । ଦେଖାଗଲା ସତେକି ସମସ୍ତେ ଦେବଗଡ଼ରେ ଥିବା ବଗିଚା ଭିତରର ଜୀବନ୍ତ ପ୍ରତିମୂର୍ତ୍ତି ।

ସେ ଦୃଶ୍ୟଟିର ସ୍ମୃତି ସବୁ ଦିନ ପାଇଁ ମୋ ମନରେ ରହି-ଗଲା । ସୈନିକ ଦୁଇଜଣ ଆଗେଇ ଗଲେ ।

ଜୀବନ୍ତ ଗଡ଼ ମୂର୍ତ୍ତି ଗୁଡ଼ିକ ଚଳନ୍ତ ଜୀବ ହୋଇଗଲେ । ସେଥିରୁ ଜଣେ ମୋତେ ଦେଖି ଜଣାନ୍‌ର ଖୋଲା ହୃଦୟରେ ଡାକିଦେଲା — ଏଇ ବାହାଁରେ ବହିଲେ ଯିବାକଲ ?

ମନରେ ଟିକିଏ ଦୁଷ୍ଟାମି ଆସି ଉତ୍ତର ଦେଲି ।—

'ଭୁବନେଶ୍ୱର ଯେ'

ସେ — ଅନେକମୋଡ଼ା ଭଲହେବା । ନଇକି ଭାଲ୍ ଭଲହେବା, ସମସ୍ତେଗା ଭୁବନେଶ୍ୱର ନାହିଁ ସମ୍ପର୍କଗା ।

ମୁଁ — 'ଅନେକ୍‌ମୋଡ଼ା' କହି ଶିର ଦ୍ୱାରା ଜାଣିକି ବୋଲି ପଚାରିଲି ; ସେ 'ହଁ' କଲା ।

ମୁଁ ସେଠାରୁ ଦୁଇ ଷଷ୍ଠ ଦିନର ଚାଲିବା ବାଟ, ଗାଡ଼ିରେ ଆସିଲି । ସେ ପଟେ ଦୁଇଦ୍ୱାର ମାତ୍ର ସେହି ଭଲିଆ ହୋଇଥାଏ । ସେଠା ଅଗରେ ମାତଥିବା ଅସ୍ଥାଗେହି ଦୁଇ ଜଣକୁ ଦେଖାଇ ମୋ ପଟକୁ ଚାହିଁ ଫୁଟାଇବା ଅନୁନୟ କଲା । ମୁଁ ଉପରକୁ ଭଗବାନଙ୍କ ଉଦ୍ଦେଶ୍ୟରେ ହାତ ଟେକିଲି । କହିଲି—ଉପର ଭଗବାନ ହିଁ ସେ ନାସ୍ତି ପୂର୍ବଜ ମୂର୍ତ୍ତି ହଳଇଲା । ଉଦ୍ଦେଶ୍ୟ ବୁଝିଲେ ଯେ ଭଗବାନ ରକ୍ଷା କରନ୍ତି ନାହିଁ । 'ଭଗବାନ ନିଶ୍ଚୟ ରକ୍ଷା କରନ୍ତି' । ସୂଚାଇ ମୁଁ ମୋର ବାଟ ଧରିଲି । ସେମାନେ ଅସ୍ଥାୟୀ ସ୍ମୃତିର ଓ ହସ ହସ ମୁହଁରେ ମୋତେ ଦେଖି ରହିଥାନ୍ତି ।

ଯୁଗ ଯୁଗ ଧରି ଉଦ୍ଧୃତ ଜନସାଧାରଣ ଅନ୍ଧ ବିଶ୍ୱାସରେ

ଥିବାହେତୁ ଓ ଅନ୍ଧବିଶ୍ୱାସକୁ ଧର୍ମ ସହିତ ମିଶାଇ ଦେଇ ଥିବାରୁ ଚୀନା ଆକ୍ରମଣ ପରେ ଧର୍ମ ବିଶ୍ୱାସରେ ଆଞ୍ଚ ଆସିଛି । କିନ୍ତୁ ଯୁଗ ଯୁଗ ଧରି ଚାଲି ଆସିଥିବା ଅନ୍ଧବିଶ୍ୱାସରେ ପରିପୂର୍ଣ୍ଣ ସଂସ୍କୃତିକୁ ଛାଡ଼ି ପାରୁ ନାହାନ୍ତି । ସେହେତୁ କମ୍ୟୁନିଷ୍ଟକୁ ମଧ୍ୟ ଧରି ପାରୁ ନାହାନ୍ତି । ଅନନ୍ତ ଓ ଅମନ୍ତ୍ର ସକ୍ରିୟ ବାଚକ ସେହି ଇଶ୍ୱରଙ୍କର ଅସ୍ତିତ୍ୱକୁ ନାସ୍ତି କରି ତାର ଚାଲି ରଖିବା ପ୍ରଣାଳୀ କର୍ମ— ଫଳ ଉପରେ ଆସ୍ଥା ରଖିବାରୁ ବୋଧହୁଏ ଏଥି ପରିଣତି—କର୍ମର ଫଳ ।

ଆଉ କିଛିଏ ଆଗେଇବା ପରେ ସେହି ଏକ ବୃଷ ଭାନନ ମଣ୍ଡଳ । ତାକୁ ଟପି ଗଳାପରେ ଦୁଇ ଜଣକୁ ଦେଖିଲି । ସେମାନଙ୍କ ମୁହଁରେ ଗୁପ୍ତ ମନାଣାର ଭାବ ପରିସ୍ଫୁଟ ଓ ଜଣଙ୍କର ମୁହଁରେ ଦଣ୍ଡ ନମିବା ଭାବଭଙ୍ଗୀ ଅନୁଭବ କଲି । ତାକୁ ପଚାରିଲି କ୍ଷୀର ମିଳିବକି ?

ସେ— କଠଷମା କେବେ ଆସିବ ?

ମୋତେ ଚାହିଁଛି ଦେଖି ଖୁସି ଲାଗିଲା । ଉତ୍ତର ଦେଲି — 'ଟେଣ୍ଟରେ ଆସୁଛି' ।

ସେ—କ୍ଷୀର ମିଳିବ ନାହିଁ (ସେବନ୍ତୋକ୍ ଭାବରେ)

ମୋର ମୁହଁ କିଛିଏ ଶୁଖିଗଲା । ତାହା ଦେଖି ଆଉ ଗୋଟେ ଜଣକ ଭଣ ମିଳିବ ବୋଲି କହିଲା । ମୁଁ ବୁଝି ପାରିଲି ନାହିଁ ତା ସାଙ୍ଗରେ ଯିବାକୁ ଠାରିଲା । ତାର ଘରଠାକୁ ନେଲା । ଘରଟା ଥିଲା ସେହି ଏକ କାନନ ତଥା ଯୋଉଁଠାରେ ଦୁଆର ମୁହଁ ଉପରେ ସେହି ଖାସଣ, ଢଉଷ୍ଟ, ବଙ୍କଠାଳ, ଭୟଙ୍କର ବଣାଇ ବସ୍ତୁ, ବଡ଼ ଗୋରୁମୁଣ୍ଡ ଖପୁରିଟେ ଟଙ୍ଗା ହୋଇଥାଏ । ଏତେ ଗୁଡ଼ିଏ ବିଶ୍ଳେଷଣ

ଲଗାଇବାର କାରଣ ହେଉଛି ଯେ କେଉଁଠା ଠିକ ହେବ ଧରି
ପାରୁ ନାହିଁ ଓ କୌଣସିଠା ଟିକ୍ ହେଲେହେଁ ମୋତେ ଜଣା ପଡ଼ୁ
ନାହିଁ । ମୋଡ଼ ମୋଡ଼ ହୋଇ ବଡ ବଡ଼ ଶିଙ୍ଘ ଥାଇ ଓ ଆଖି
ଜାଗାରେ ଦୁଇଟା ଅଙ୍ଗାରୁଆ ଗର୍ତ୍ତ ଥାଇ ମାଉଣା ମଇଁଷି ଠାରୁ
ଭୟଙ୍କର ଦେଖାଯାଉ ଥିଲା । ଯାହା ହେଉ ମୋତେ ସେହି ଦୁଆର
ମୁହଁ ଇଟୁଣ୍ଡି ଉପରେ ବସିବାକୁ କହି, କେହା ଭିତରକୁ ଗଲା ।
ଦୁର୍ଗା, ଅଭୟଙ୍କରୀଙ୍କୁ ସ୍ମରଣ କରି ସେଠି ବସିଲି । ମୋତେ ଭିତରକୁ
ନେବାକୁ ତାର ଯେତିକି ସତର୍କତା ଥିଲା, ମୋତେ ମଧ୍ୟ ତାର ଘର
ଭିତରକୁ ଯିବାକୁ ସେତିକି ସେତିକି ଭୟ ଲାଗୁଥିଲା । ଉପରକୁ
ଦେଖିବାକୁ ମଧ୍ୟ ଭୟ ଲାଗୁଥିଲା । ଘରକୁ ଯାଇ ଗୋଟିଏ ତମ୍ବା
ବେଣ୍ଟ ଲଗିଥିବା, ହେଣ୍ଡି ତମ୍ବାରେ ତିଆରି ଛଟକ ପା ଆକାରର
ଅଣଖରେ କିଛି ଜଳନ୍ତ ଅଣିଲା । ସେଉ ଟୋକ୍ ଉପରେ ଠାରି
କହିଲା—କେବଳ ଏହା ଅଛି । ସେମୁଚି କଣ ଧରି ହେଉନଥିଲା ।
କଣଟି କହିଲା । ଶୁଙ୍ଘିବାରୁ ଧରା ଗଲା ଯେ ସେଟା ଦହି । ତମ୍ବା
ପାତ୍ରରେ ଆଣିଥିବାରୁ ବିଷାକ୍ତ ହୋଇପାରେ ଭାବି, ଗୃହି, ଉଦରସ୍ଥ
କଲି ।

ତହିଁଟାରେ ଅତ୍ୟଧିକ ଅମ୍ଳ ହେତୁ ଆମ୍ବିଲା ଥିଲା ଓ ସେ
ସମୟରେ ତେଢ଼ ହାଢ଼ି ଦହିର ଅତ୍ୟଧିକ ଗୃହିତା ହେତୁ, ଅମ୍ଳଟା
ଅମୃତରେ ପରିଣତ ହୋଇଥିଲା ।

ଏହି ପରି ସମୟରେ ତାର ସ୍ତ୍ରୀ ଓ ଦୁଇଟି ଗୁରି ଛ ବର୍ଷର
ବାଳକ ଆସି ଦଣ୍ଡାୟମାନ ହେଲେ । ତାଙ୍କ ମୁହଁ ହସ ହସ ।

ଦନ୍ଧ ପିଇ ଅଶ୍ୱସ୍ତି-ବୋଧ କଲି । ପଇସା ଯାଚଲି । ସେ ମନା କଲା ।

ମୋ ମୁହଁର ଦଅ ନଅ ଭାବ ବୁଝିଗଲା । ଝିଅର ସ୍ନେହ ଓ ସୌହାର୍ଦ୍ଦ୍ୟରେ ମୁହଁରେ ହସ ଫୁଟିଲା । ସ୍ତ୍ରୀ ଓ ଦୁଇ ପିଲାଙ୍କ ମୁହଁକୁ ଚାହିଁଲି । ପିଲାଙ୍କ ମୁହଁରେ ହସ ଓ କୌତୂହଳ ଫୁଟିଛି । ତାହା ଧର୍ମ କରୁଛି । ସେଥିରେ ସେମାନେ ଆନନ୍ଦ ପାଉଛନ୍ତି । ସ୍ୱାମୀର ସତ୍କର୍ମରେ ସ୍ତ୍ରୀଟିର ମନ ଉତ୍ଫୁଲ୍ଲ-ପ୍ରଫୁଲ୍ଲ । ନିର୍ମଳ ନିଷ୍ଟଳ ମନ ଉପରେ ଆନନ୍ଦର ତେଜରେ ତାର ସଲଜ୍ଜ ମୁହଁଟି ସଦ୍ୟଫୁଟା ପଦ୍ମଫୁଲପରି ହସ ହସ ଓ ମୃଦୁ ଚଞ୍ଚଳା । ସ୍ୱାମୀର ସେହି ସୁକର୍ମରେ ସହଧର୍ମିଣୀ ହିସାବରେ ସେ ଭାଗୀ । ସ୍ୱାମୀର ମନ ଓ ପ୍ରାଣରେ ତାର ମନ ଓ ପ୍ରାଣ ମିଳିଯାଇଛି । ସେ ହେଉଛି ତାର ସେଇଠି ଆନନ୍ଦ ସେହି ସୁଖ ଓ ସେହି ଶାନ୍ତି ।

ମନେ ପଡ଼ିଲା ଭଗବାନଙ୍କ ଗୋଟିଏ ସଂଜ୍ଞା ହେଉଛି—

ଅନବଦ୍ୟା ପତି କୁଟୁମ୍ବ ନାସ୍ୱା ।

ଅର୍ଥାତ୍— ଅକ୍ଷୋଭ୍ୟ ରହିତ ସ୍ୱାମୀ ସୁଭାଗିମା ନାସ୍ୱା ।

ଚଣ୍ଡୀରେ ଅଛି—

ସୌଭାଗ୍ୟାଦ ତ ସତ୍ କଣ୍ଠିତ୍ ଦୃଶ୍ୟତେ ଲଲନାଜନେ ।

ତତ୍ ସର୍ବଂ ତତ୍ ପ୍ରସାଦେନ ତେନ ଯାପ୍ୟଂ ଇଦଂ ଶୁଭଂ ॥

ତାକୁ ଦେଖା ଅଂଶରେ ଭାବ ନମସ୍କାର କଲି । ବୁଝିଲି ତତ୍ତ୍ୱଗାସ୍ତ୍ର ଜାତର ମୂଳପୋଛ ହୋଇପାରିବ ନାହିଁ ।

ଷ୍ଟବଲ— ଏଇ ଘଟଣାର ମୂର୍ତ୍ତ ସ୍ୱରୂପ ଏମାନଙ୍କୁ କିଏ ଦେବ ?

ସେହି ଅନନ୍ତ ବ୍ରହ୍ମର ଯେଉଁ ଅଣୁ କଣାଟି ସ୍ଫୁଲିଙ୍ଗ ହୋଇଛି ତାକୁ କପଟ ଶର ପ୍ରାପ୍ତି କରିବ ? ପକେଟରେ ହାତ ମାରିଲ । ଗୋଟିଏ ଦଶ ପଇସି ଓ ଦୁଇଟି ପାଞ୍ଚ ପଇସି ଥିଲା ।

ବଡ଼ଟି ବଡ଼କୁ ଓ ସାନଟି ଦୁଇ ସାନକୁ ଦେଲ ।

କନଷ୍ଟକୁ ନକରକୁ ନ ନେଇ ସେମାନେ ଗ୍ରହଣ କଲେ ।

ସ୍ନେହଭରା ଆଖି ଚାହିଁଥାଏ ମୋ ଉପରେ ।

ସେକଣି ନେଇ ବାହୁଡ଼ିଲ ।

ଦେଶ ଜଳୁଥିଲେ ମଧ୍ୟ ସେମାନେ ସ୍ୱର୍ଗ-ସୁଖରେ ଅଛନ୍ତି । ପର ଲୋକରେ ସ୍ୱର୍ଗରେ ବାସ କରିବେ, ଏହା ନିଶ୍ଚିତ । ପାହାଣ୍ଡ ପରେ ପାହାଣ୍ଡ ପଡ଼ାଇ ଚାଲିଲ । ଗୋଟିଏ ପରେ ଗୋଟିଏ ଦୃଶ୍ୟ ଆଖି ଆଗକୁ ଚାଲି ଆସିଲା । ଲହରା ସଡ଼କରେ ଚାଲନ୍ତି । ଡାହାଣ ପଟରେ ନଦୀ ଅଛି । ତାର ଆରପଟ କୂଳର ଭିନ୍ନ ଦେହକୁ ଖୋଦିତ ହୋଇ ଠେଙ୍କ ଧାଉଁ ବାଜେ । ରାସ୍ତା ଡାହାଣକୁ ମୋଡ଼ିଲା । ସଡ଼କ ବାଁ ପଟକୁ ମୋଡ଼ ହୋଇ ପାହାଡ଼ ଉପର ଦେଇ ଆର ପଟରେ ଅଦୃଶ୍ୟ ହୋଇଗଲା । ପାହାଡ଼ ପିଠିରେ ଧାରେ ଧାରେ କଣ୍ଟା ତାର ବେଢ଼ା ହୋଇଛି । ଆର ପଟରେ

ଚୀନା ଗ୍ଲାଜ୍ଡ୍ ଥିବାଟା ହେଉଛି ତାର କାରଣ । ନଣ ଜଟେର କାଠର ହୋଇ । ଓପାଲ ପାର କଲ ପରେ କଣ୍ଟା ଜଠାଣି । ଜଠାଣି ଅଢ଼େ ଭଢେ ଧାଡ଼ିଏ ଘର । ପାହାଡ଼ ଦେହରୁ ଗୁମ୍ଫା ବା ଗୁହା ଭଳିଆ କଟା ଗଳ ପରି ଦେଖା ଯାଉଛି । କାରୁକାର୍ଯ୍ୟ ଗୁଡ଼ିକ ବିଚିତ୍ର ଧରଣର ।

ଜଠାଣି ଉପ୍ରେକ୍ଷି, ସେଠି ଚୀନା ଅର୍ଗଳ ଅଧ୍ୟକ୍ଷ ବାହୁଡ଼ୁ ଥିବା ଦେଖିଲି । ତାଙ୍କୁ ନମସ୍କାର କରିବାରୁ ସେ ମୁଣ୍ଡ ବୁଲାଇ ଦେଇ ଗ୍ରହଣ କଲ ନାହିଁ । ଉତ୍ତର ମେଲ୍ୟାନ୍ କମ୍ୟୁନିଷ୍ଟ ଭାଇଦାରେ ହୋଇ ନାହିଁ ବୋଲି ଗ୍ରହଣ କଲ ନାହିଁ । ସଲାମ ଦେବା ଢଙ୍ଗରେ ନା ସଲାମ ନ ନେବା ଅଭିପ୍ରାୟରେ ବର୍ଣ୍ଣିଆ ଢଙ୍ଗ ଅଛି ?

କନ୍ଦୁ ସନ୍ଧ୍ୟାବେଳେ ଅର୍ଗଳ କାର୍ଯ୍ୟାଳୟ ଭିତରେ କାର୍ଡ଼ିଫ ବାହୁଡ଼ାଇବା ପାଇଁ ଯେତେବେଳେ ଯାଏ; ସେତେବେଳେ ଡ଼ାକ୍ତର ଜଣେ ସାମନା କୋଠରିର ଦୁଆର ମୁଣ୍ଡ ପାଖରେ ଖାଇ ବସିଥିଲେ ଓ ମୋତେ ଦେଖି ଆଗରୁ ସଲାମ ଦେଇଥିଲେ । ଖାଇବା ଘର ମଝିରେ ଗୋଟିଏ ଡାକା ପୁରୁ ଚମ ଛଡ଼ା ଗୋରୁ ଟଙ୍ଗା ଯାଇଥିଲା । ସେଟା ଗୋରୁ ଦେଖି ମୁଣ୍ଡ ବୁଲାଇ ଏହାଙ୍କର ସ୍ନେହଭରା ସଲାମ ଗ୍ରହଣ ନ କରି ଚାଲି ଆସିଲି । ମନରେ ଗୋଟିଏ ଦୁଃଖ ରହିଗଲା ।

ମୋର ଓ ସେ ଅଧ୍ୟକ୍ଷଙ୍କର ମନ ଖୋଲାଇ ହେବା କଥା ।

ତଦନନ୍ତର ମହାନ୍ତି ମଧ୍ୟ ଆଦରଂ ସହକାରେ ଅଭିବାଦନ ଦ୍ୱାରା କଥାବାର୍ତ୍ତା କରିଥିଲେ । ନାଗପଦରେ ଘରକୁ ଫେରି ବିଶ୍ରାମ ନେବାକୁ ଚାହୁଁଥିଲେ । କିନ୍ତୁ ସେ ଅର୍ଦ୍ଧରାତ୍ରିର ପୂର୍ବପରି ହୁଡ ହେବ ନାଏ ।

ସେ ମଧ୍ୟ ବାଦ୍ ନ ପଡ଼ିବା କଥା ।

## ଫେରନ୍ତା ବାଟରେ ଡାକଲ୍‌କୋଟ

## ଚାଲିଛି— ୨୨୭+୧୧=୨୩୮ମା

କଟଖମାର ହିଅର ଦୋକାନରେ ପହଞ୍ଚିଲି ।

ସେ କହିଲେ— ମୋହନ ସିଂ ଗଡ଼ୱ୍ୟାଲ ଯାତ୍ରୀମାନଙ୍କର ରହିବାର ବନ୍ଦୋବସ୍ତ କରନ୍ତି ।

ପଚାରିଲି— କଣ ମୋର ମଧ୍ୟ ?

ସେ — ହଁ ।

ମୋହନ ସିଂ ଗଡ଼ୱ୍ୟାଲଙ୍କ ଦୋକାନରେ ପହଞ୍ଚିଲି । ସେତେବେଳେ ସେ ନିଜେ ପସାସ୍ତି ଥିଲେ । ମୋତେ ଦେଖି ତାଙ୍କ ମୁହଁରେ ନିଷ୍କପଟ ଆଦରର ଭାବ ଫୁଟି ଉଠି ଥିଲା । ତାଙ୍କ କଣ୍ଟି-ବାରେ ଶିନାଏ ନମ୍ବର (ଅଠାର ଗଜା) ଓ ପାଣି ମିଳସେ ଆସିଲା । ଅଧେ ଖାଇ ପାଣି ପିଇ ବଳକାଟା ରଖି ଦେଲି ; ସମୁ-ଦାୟଟା ନ ଖାଇବାର କାରଣ ପଚାରିଲେ । ଖେଳ ମରି ଯାଇଥିବା କଥା କହିଲି ।

ସେ— କାହିଁକି ?

ମୁଁ— କିଛି ଖାଇ ହେବନି ନାହିଁ ।

ସେ— ' କଣ ସେମାନଙ୍କ ସାଙ୍ଗରେ ମିଶି ନ ଥିଲ !

ମୁଁ— ନା, ମୋର ଅଲଗା ବନ୍ଦୋବସ୍ତ ଥିଲା ।

ସେ— ହୁଁ, ତୁମର କଣ ଖାଇବାକୁ ଇଚ୍ଛା ହେଉଛି ?

ମୁଁ— ଭାତ ।

ସେ— ଆଉ କିଛି ?

— ଡାଲି ।

ମୁଁ ଜାଣିଥିଲି ଯେ ସେ ତାର ନିଜ ପାଇଁ କିଛି ଚାଉଳ ରଖି-ଥିବ । ତାହାତ ମିଳେ । ସେହେତୁ ବଡ଼ ସଂକୋଚରେ କହି-ଦେଲି । ସେ ସେତେବେଳେ ମୋର 'ଆଉ କିଛି' ବୋଲି ପଚାରିବେ ତାର ସତ୍ୟ ଭଙ୍ଗ ଯେପରି ନ ହୁଏ, ସେଥିପ୍ରତି ଦୃଷ୍ଟି ରଖି କହିଲି-'ପିଲାଙ୍କ ନାହିଁ ଜାଣେନା, ପିଆଜ ଖଣ୍ଡେ ଖାଇବାକୁ ଭାରି ଇଚ୍ଛା ହେଉଛି, ମିଳିଲେ ଭଲ ହୁଅନ୍ତା ।

ସେ ମିଳିବ କହି ଚୁପ ରହିଲେ ।

ଏପରି ସମୟରେ ଜଣେ ତରୁଣ ଯୁବକ ଆସି ସେ ଦୋକାନରେ ପହଞ୍ଚିଲା । ପରିଚ୍ଛଦ ପାଶ୍ଚାତ୍ୟ ଢଙ୍ଗର— ପେଣ୍ଟ ଓ ଶାର୍ଟ ଏକ ପ୍ରକାର ପୋଲିସ ରଙ୍ଗର । ରଙ୍ଗଟା ଥିଲା ହଳଦିଆ, ମାଟିଆ ଓ ଶାଗୁଆ— ଏ ତିନୋଟିର ଫିକା ରଙ୍ଗର ମିଶ୍ରଣ । ତାହାଣ ପିଠି ଉପରକୁ ପିସ୍ତଲ ଅଛି । ଅଭିନୟଟା ଥିଲା ଦୋକାନରୁ ବଡ଼ ବାଛୁବା । ବଡ଼ ବାଛୁବା ସମୟରେ ପିଠିଟା

ମୋ ପଟକୁ ବୁଲାଇ ମୋ ପ୍ରତି ଆଖି କୋଣରେ 'ଟିକେ ଦେଖି ନେବ' ଭାବରେ କଡ଼ା ଦୃଷ୍ଟି ନିକ୍ଷେପ କରି, ପିସ୍ତଲକୁ ଇଙ୍ଗିତ କରୁଥାନ୍ତି । ମାନେ ପିସ୍ତଲକୁ ଦେଖାଇ ଧମକାଇ ଥାଏ ସତେକି ମୋତେ ତାହା ଦ୍ୱାରା ସାଫ୍ କରିଦେବ । ଥରକୁ ଥର କଥା ବାହାର କରି ଛାତି ଫୁଲାଏ । ମୋହନ ସିଂ ଗଡ଼ବାଲ୍ ବେଶ ବୁଝି ଯାଇଥାଏ । ସେ କଥାଟାକୁ ଠଉରାଇ ନେଇଥିଲା ବୋଧହୁଏ । ଲେଙ୍କନିର୍ ପାଣିରେ ଦର୍ପ ଥିଲା । ସେ ଭୁହାଇ ଭୁହାଇ ମୋ ପଟକୁ ଆଖି କୋଣରେ କଡ଼ା ନଜର କରି ପିସ୍ତଲଟାକୁ ଇଙ୍ଗିତ କରୁଥାଏ ।

ଏହାପରେ ଗୋଟିଏ ଘଟଣା ଖରସୁଆଁରେ ଘଟିଥିଲା ।

ଗଣ୍ଡଗୋଳ ପରେ ମୁଁ ଯେତେବେଳେ ସେଠାକୁ ଯାଏ, ଅବସ୍ଥା ଶାନ୍ତ ପଡ଼ିଥିଲେ ମଧ୍ୟ, ସରେଇକଳାରୁ ଖରସୁଆଁ ଦେଇ ଗୃଧବସା ଆସିବା ପର୍ଯ୍ୟନ୍ତ ଗୁଇନ୍ଦା ଲାଗିଥିଲେ । ସରକାରୀ କାମରେ, ରାସ୍ତା କଡ଼ରେ, ହାଟରେ ଚଢ଼ିଥିବା କ୍ଷେତ୍ର କୌତୂହଳ ବଶତଃ ଓହ୍ଲାଇ ଥିଲି ଓ ଜଣେ ନିସ୍ୱ ଦେଖଣାହାରି ବୋଲି ନିଜକୁ ପରିଚୟ ଦେଇଥିଲି । କିନ୍ତୁ ତାଙ୍କ ପକ୍ଷରୁ ମୋତେ ଓଡ଼ିଶା ସରକାର ତରଫର ଗୁଇନ୍ଦା ବୋଲି ଧରିନିଆ ଯାଇ ସେପରି ବ୍ୟବହାର, କାର୍ଯ୍ୟକ୍ରମ ଓ କଥାବାର୍ତ୍ତା କରାଯାଇଥିଲା । ବୁଝାଇଲେ ମଧ୍ୟ ନ ବୁଝିଲା ବଳା । ପରସ୍ପରକୁ ସନ୍ଦେହ କରୁଥିବା ବିଭିନ୍ନ ଦଳରେ ଭାଗ ଭାଗ ହୋଇଥିବା ବାତାବରଣରେ ପଶିଲେ ନିସ୍ୱ ଲୋକ ପ୍ରତି ପ୍ରମାଦ ଥାଏ । ପ୍ରମାଦଟା ହିଂସାର ପ୍ରବଳ ପାଣିଆ ଉପରେ ନିର୍ଭର କରେ ।

ସଜାଡ଼ୁ ଷ୍ଟେସନ ଯିବା ପାଇଁ ବଡ ଅପେକ୍ଷାରେ ଗୋଟିଏ ଛକଟି ଠିଆ ହୋଇଛୁ, ଜଣେଅଧବାସୀ ଜନଷ୍ଟେବଲ୍ ମାଳ ଲୁଙ୍ଗି ଓ ଖାକ ସାର୍ଟ ପିନ୍ଧି ସାମନାରୁ ମୁଣ୍ଡ ତଳକୁ ଆଖି ତରଡ଼ି ଭୟ ଦେଖାଇ ମାରଣା ମେଣ୍ଢା ଭଳିଆ ମୁଣ୍ଡ କରି ମାଡ଼ି ଆସିଲା । ମୁଁ ଗୋଟାଏ ଅପରିଚିତ ଲୋକଠାରୁ ଅପ୍ରତ୍ୟାଶିତ ବ୍ୟବହାରରେ ବିଶେଷ ବିଚଳିତ ହୋଇ ନ ଥିଲି ଯେହେତୁ ପୋଲିସ ଲୋକ ବୋଲି ଠଉରେଇ ଥିଲି ସେ ଅଦେଶ ଅତିରିକ୍ତ, ଭୟ ଦେଖାଇବା ଠାରୁ ଅତିରିକ୍ତ କିଛି କରିବେ ନାହିଁ ବୋଲି ଜାଣିଥିଲି । ନେଳ ଲୁଙ୍ଗି ଥିବାରୁ ପ୍ରଥମରେ ଏଠାକୁ ଓଡ଼ିଶା ପୋଲିସ କପରି ଆସିଲା ? ବୋଲି ଭାବି ଥିଲି । ଭୟ କରିବାର କିଛି ନ ଥିଲା । ଚବିଶ ଘଣ୍ଟା ଶେଷରେ ଗୃହ ମୋକୁ ଫେରିବା ପାଇଁ ଯଥେଷ୍ଟ ଖୋରାକ ମିଳି ଥିଲା । ମୋର ଏକ ଉତ୍କଟ ଦୁଃସ୍ୱପ୍ନ ଭୁଲିଯାଇ ଥିଲା ।

ଏଠି ମଧ ଭୟ କରିବାର ବିଶେଷ କାରଣ ନ ଥିଲା । ଅର୍ଦ୍ଧମତ୍ତା ନିଶା ହେଲେ ମଧ ମଦ ନୁହେଁ ଯାହାକୁ ଭଦ୍ରମାନେ ପିଅନ୍ତି । ଅବଶ୍ୟ ନିଶା ମାତ୍ରକେ ଦୋଷାବହ । କଥାଟା ଯଦିଓ ଅଧିକ ଗୁରୁତର ଥିଲା ପୂର୍ବୋକ୍ତ ଘଟଣାଟି ବିଶେଷ ସାହାଯ୍ୟ କରି ଥିଲା । ମନରେ ଆଦୌ ଭୟ ଆସି ନ ଥିଲା । ମୁଁ ନିର୍ବିକାର ଭାବରେ ପ୍ରତ୍ୟେକ ଗୃହ ଦେଖି ପାଉଥିଲି,ଯେହେତୁ ଗଳ୍ପ ସମୟରେ ଅନୁଷ୍ଠାନକର୍ତ୍ତାଙ୍କର ସ୍ପର୍ଶ ପାଇଥିଲି, ଏହାର କାର୍ଯ୍ୟ ପୂର୍ବ ପରି-କଳ୍ପିତ ବୋଲି ଧରି ପାରି ନ ଥିଲି ।

ଶେଷକୁ ସେ ଲୁଗା କିଣିଲା । ଅଧିପତ୍ୟ ଦେଖାଇ ନିଜର ପସନ୍ଦ କଣାଇଲା । ଗଜ ୯ ଟଙ୍କା ଦରରେ କିଣିଲା । ଚମତ୍କାର

ମୁଦ୍ରା ମୁଣା ଖୋଲି ଟଙ୍କା ବାହାର କଲେ । ଭିନ୍ନ ଭିନ୍ନ ଥାକରେ ବିଭିନ୍ନ ରଙ୍ଗର ଓ ବିଭିନ୍ନ ଆକାରର ଗୁଡ଼ାଏ ନୋଟ ବାହାର କରିବା ସମୟରେ ଓ ବାହାନାରେ ମତେ ଥାକ ଓ ତୋଡ଼ା ଗୁଡ଼ିକ ଦେଖାଇଦେଲେ । ସେ ଦେଖେଇ ହେଉଥିଲେଯେ, ସେ ଜଣେ ପ୍ରଭାବଶାଳୀ, ପ୍ରତିପତ୍ତିଶାଳୀ ଓ ଧନଶାଳୀ । ମୁଁ ନିରବରେ କେବଳ ତାର ଔଦ୍ଧତ୍ୟ ଦେଖୁଥାଏ । ସେ ଦେଖାଇବାକୁ ଚାହୁଁଥାଏ ଯେ ନୂଆ ହରଭାଗ୍ର ଗ୍ରୁପରେ ପ୍ରବୃତ୍ତି ଓ ପ୍ରକୃତି ଅନୁଯାୟୀ ଏବଂ ସ୍ବଚ୍ଛଳ ଓ ସୌଖିନ ଭାବରେ ଜୀବନ ଯାପନ ହୁଏ ।

ଯିବା ସମୟରେ ମୋର ଗୋଟିଏ ପ୍ରକାର ଭୁଲ ବୁଝାବଣାର ମନ ଧୋଲାଇ ହୋଇଥିଲା ଓ ବାହୁଡ଼ିବା ସମୟରେ ଅନ୍ୟ ଭୁଲ ଭାବରେ ମନ ଧୋଲାଇ ହେଲା— ଅବଶ୍ୟ ସେମାନଙ୍କ ଧାରଣାରେ ଓ ସେମାନଙ୍କ ଠାରେ ଥିବା ଖବରର ଭିତ୍ତିରେ ।

ଗଲା ସମୟରେ ଗୋଟିଏ ମସ୍ତ ବଡ଼ କଡ଼ା ଗୃହାଣି ପକାଇ ଗୋଟେ ସର୍ବତୋଭାବେ ଓଜନଦାର ବ୍ୟକ୍ତି ବିଶେଷ (ବଡ଼ ଷଣ୍ଢ ବା ଷଣ୍ଢ କେଳଟେ) ଭଳିଆ ସନ୍ଦର୍ଭରେ ଚାଲିଗଲା । ମୁଁ ଆଖି ମିଟି ମିଟି କରି ବଲ ବଲ ଦେଖୁଥାଏ । ଏହି ଗ୍ରନ୍ଥର ସମାଜ ବାଦର ବ୍ୟକ୍ତି ବିଶେଷର ନମୁନା ଦେଖିଲି, ଚିହ୍ନିଲି, ଉପକୃତ ହେଲି ।

ମୋହନ ସିଂ ଗଡ଼ବ୍ୟାଲଙ୍କୁ ପଚାରିଲି— ଏ କିଏ ?

ସେ ଏକ ତାର୍ଥିକ ରେଖାରେ ମୁଣ୍ଡକୁ ହଲାଇ ବୁଝାଇ ଦେଲେ— ସେ ସିଏ ।

ସତରେ ସେ କଏ ?

ଓଃ ! ସେ ସିଏ ସ ସେ ସିଏ- ସିଏକି, ଯେଉଁଥିରୁ ଭଗବାନ ଅପ୍ରମାଣିତ ସେଥିରୁ ମିଥ୍ୟା, ମଣିଷର ଅସ୍ତିତ୍ୱ ବିଷୟ ଭୋଗ ଦ୍ୱାରା ସୀମିତ, ସମଷ୍ଟିଗତ ଭାବରେ ଭୋଗର ମଜାକୁ ସମାଜ, ଏବଂ ସ୍ୱେଚ୍ଛାଚାରର ଭାବେ ଦାୱା ଭୋଗକୁହି ଶ୍ରେଷ୍ଠ ବୋଲି ଧରି ନେଇଛୁ ।

ମଣିଷର ପରିଚୟ ହ୍ୱଏନା ତାର ନାଁ, ଗାଁ, ଓ ବାପାର ନାଁ ଜାଣିବାରେ । ତାର ପରିଚୟ ଜଣାପଡେ ତାର ଚିନ୍ତାଧାରା ଓ ପ୍ରବୃତ୍ତିର ଅନୁଧ୍ୟାନରେ, ତାର ମନର ବୀଣାରେ କେଉଁ ରାଗର ଝଙ୍କାର ବା ସ୍ପନ୍ଦନଗ୍ଳାନ ପ୍ରତିଧ୍ୱନିର ବାଡ଼ଅପିଷ୍ଟା ଗୃହଳନ୍ତି ଜାଣିବାରେ । ସେଥିରୁ ଜଣାଯାଏ ତାର ବାପା କଏ, ମା କିଏ, ସେମାନଙ୍କର କର୍ମ କଣ ଓ କେଉଁ ଗାଁର ?

ଏହାର ପ୍ରମାଣ କେବଳ ତାର ଚିନ୍ତା ଧାରା ଓ ଗୃହଚଳଣ ।

ଭଗବାନ କେବଳ ସାକ୍ଷୀ । ଭଗବାନ ଯଦି ନ ମାନୁଛ, ନିଭୃତ କୋଣ ବା ଅନ୍ଧାର ଘରେ ଆଜ କେହି ନାହିଁ । 'ଗତ ଗଇ ତୋ ବାତ ଗଇ' ଓ କଏ ତା'ର ନାହିଁ ।

ଭଗବାନ ବିଜ୍ଞାନଘନ । ନିୟମର ବନ୍ଧନରେ ଘଟୁଥିବା ପ୍ରଣାଳୀ ହେଉଛି ବିଜ୍ଞାନ । ଭଗବାନ ହେଉଛନ୍ତି ଜଣା ଅଜଣା ବିଜ୍ଞାନ ଗୁଡ଼ିକର ଅସଂଖ୍ୟ ନିୟମର ଘନୀଭୂତ ସମଷ୍ଟିଗତ ମିଳିତ ପ୍ରଣାଳୀ । ସେହି ନିୟମ ହେଉଛି ଧର୍ମ । ତାକୁ ବୁଝିବା ହେଉଛି ଜ୍ଞାନ । ଯେ ବିଜ୍ଞାନ ଯେ ଜାଣିଛି ସେ ହେଲା ବିଜ୍ଞ । ସେ ବିଜ୍ଞାନ

ସାହାଯ୍ୟରେ ସବୁ ତଥ୍ୟ ଜାଣି ହୁଏ । ଭଗବାନ ନିରାକାର ବା ସାକାର ବ୍ୟକ୍ତି ବିଶେଷ ନୁହନ୍ତି । ସେ ହେଉଛନ୍ତି ଗୋଟିଏ ନିୟମ ନିୟନ୍ତ୍ରଣକାରୀ ଚିରନ୍ତନ ବସ୍ତୁ, ଯାହାର ଆକାର ନାହିଁ, କେବଳ ସ୍ଥିତି ଅଛି । ସ୍ଥିତି କେବଳ ଗୋଟିଏ ଜାଗାରେ ନାହିଁ, ଅଛି ଏହି ବିଶ୍ୱର ସର୍ବତ୍ରରେ । ସେହେତୁ କହନ୍ତି, ଭଗବାନ ସର୍ବବ୍ୟାପିନ୍ ସର୍ବତ୍ର ବିଦ୍ୟମାନ । ଏହା କିପରି ହେଲା ?

ଦୁଇଟି ଦର୍ପଣକୁ ସମାନ୍ତରାଳ ଭାବରେ ରଖି ମଝିରେ ଆଲୋକ ଶିଖାଟେ ରଖିଲେ ଅନନ୍ତ ସଂଖ୍ୟକ ଆଲୋକ ଶିଖାର ସୃଷ୍ଟି ହୁଏ । ସେହିପରି ସେହି ଏକମେବ ଅଦ୍ୱିତୀୟଂ ପରମାତ୍ମାରୁ ଏହି ଅନନ୍ତ ବ୍ରହ୍ମାଣ୍ଡର ସୃଷ୍ଟି । ଦର୍ପଣ ଦୁଇଟି ଓ ସେମାନଙ୍କ ମଧ୍ୟରେ ହେବା ପ୍ରତିଫଳନଟା ହେଉଛି ମାୟା । ମାୟା ହେଉଛି ଈଶ୍ୱରର ବଶବର୍ତ୍ତୀ ଓ ନିୟମ ହେଉଛି ମାୟାର ବଶବର୍ତ୍ତୀ ।

ଯେ ଯେତିକି ନିୟମ ଜାଣିପାରିଛନ୍ତି ସେ ସେତିକି ତଥାକଥିତ ବ୍ରହ୍ମକୁ ଚିହ୍ନି ପାରିଛନ୍ତି । ଯା[illegible] ଭଦ୍ଧେଭଦେବାନଙ୍କୁ ଜାଣିଲେ, ସମସ୍ତ ନିୟମର ଜ୍ଞାତା ହୋଇ ପାରିବ । ମୋ ମତରେ ସବୁ ନିୟମ ଗୁଡ଼ିକୁ ଜାଣିବା ହେଉଛି ଭଗବାନଙ୍କୁ ଜାଣିବା ।

ବସ୍ତୁବାଦୀର କଥା ହେଉ । କେତେକ ଇଂରେଜ ପାଠୁଆ ଜୋର ଦେଇ କହନ୍ତି ଯେ ସେ କେବଳ ମେଟେରିଏଲିଜମ୍ କୁ ହିଁ ବିଶ୍ୱାସ କରନ୍ତି । ଭଗବାନ ମିଛ, ଲୋକେ ମନରୁ ଗଢ଼ିଛନ୍ତି । ଯଦି ଥାଆନ୍ତେ ତେବେ ପାର୍ଥକ୍ୟ ନଥାନ୍ତା । ସଂସାରର ମୂଳରେ ଅଛି ବସ୍ତୁ । ସୃଷ୍ଟି ହେଉଛି ବସ୍ତୁ ଉପରେ ଶକ୍ତିର ପରିଚାଳନାରେ ଓ ଶକ୍ତି ହେଉଛି ବସ୍ତୁ ଭିତରେ ଅନ୍ତର୍ନିହିତ ଥିବା ଗୋଟିଏ ଗୁଣ ।

ହୃଦ, ହେଉଛି ଏବେ । ମାନସିକ, ଉଦାତ୍ତ ନିର୍ଗୁଣ ସତ୍ । ଯେହେତୁ ସତ୍ତାର ମଧ୍ୟ ରୂପ ବାହୁଦାର ସ୍ତର ଅଛି । ହେଲେ, ବିଷୟଙ୍କ ଗୁଣ ହେଉଛି ସୁହାଇଲା ଏପରି ଶିଖି ବଳକାଠକୁ ଛାଡ଼ି ଦେଇଛନ୍ତି ।

ତମ୍ବା ତାର ହେଉଛି ବସ୍ତୁ । ବିଦ୍ୟୁତ ହେଉଛି ଶକ୍ତି । ତା ଭିତରେ ବିଦ୍ୟୁତ ଚାଳିତ ହେଲେ ଦୁର୍ଘଟଣା ହେବ— ଝୋଟ ଧରିବ, ବତୀ ଜଳିବ । ତମ୍ବା ତାରକୁ ଛୁଇଁ ହେବ । ବିଦ୍ୟୁତ ଚାଳିତ ହେଲେ କଣ ଛୁଇଁ ହେବ ? ଛୁଇଁବାଟା ହେବ ପ୍ରମାଦକୁ ଡାକି ଆଣିବା — ଜାଣିବାକୁ ଛୁଇଁ ଥାନ୍ତୁ, ନ ଜାଣିଲେ ଛୁଇଁ ଥାନ୍ତୁ । ତମ୍ବା ତାରକୁ ଛୁଇଁପାରିବେ ବୋଲି ବିଦ୍ୟୁତ ଚାଳିତ ହେଲେ ବି ଛୁଇଁ ପାରିବେ ବୋଲି ଭାବିବାଟା ମୂର୍ଖାମି । ବିଦ୍ୟୁତ ଚାଳିତ ତାରକୁ ଛୁଇଁବା ବା ନ ଛୁଇଁବାର ନିୟମ ହେଉଛି— ଧର୍ମ ।

ଏହି ବିଶ୍ୱରେ ଯାହା ସବୁ ଦେଖାଯାଏ ବା ସ୍ଥୂଳ ଭାବରେ ଅନୁଭବ କରିହୁଏ ସେ ସବୁ ହେଉଛି ବସ୍ତୁ । ଯା ଭିତରେ ଯାହା ସୃଷ୍ଟି-ସ୍ଥିତି-ସଂହାରର ପରିବର୍ତ୍ତନ ଘଟୁଛି ତା ପଛରେ ଅଛି ଗୋଟିଏ ବିରାଟ ଘନୀଭୂତ ଶକ୍ତି । ଦେଖନ୍ତୁ ହେଉଁ ନିର୍ଦ୍ଦେଶିଙ୍କ ପରି ରହନ୍ତୁ ନାହିଁ । ଏହି ଘନୀଭୂତ ଶକ୍ତିକୁ ହିଁ କହନ୍ତି ଭଗବାନ୍ । ପୃଥିବୀ ଘୂରୁଛି, ଚନ୍ଦ୍ର ବୁଲୁଛି, ନକ୍ଷତ୍ର ଓ ତାରାଗଣ ଧାବମାନ ହେଉଛନ୍ତି; ବୀଜ ଅଙ୍କୁରିତ ହେଉଛି, ଗଛ ବଢୁଛି, ଫୁଲ ଫୁଟୁଛି, ଫଳ ହେଉଛି, ଏସବୁ ପଛରେ କୌଣସି ଗୋଟିଏ ଉପସ୍ଥିତ ଶକ୍ତି ଅଛି— ଯାହାର ସମଷ୍ଟି ବା ମିଳିତ ହେବା ହେଉଛି ଏକ

ଘନୀଭୂତ ଶକ୍ତି । ଉପସର୍ଗ ସହିତ ସେହି ଶକ୍ତି ବିଷୟରେ ଜାଣି, ସେଗୁଡ଼ିକର ଗତିର ନିୟମ ବା ନିୟମର ଗତି ବୃଦ୍ଧି ତା ବିଷୟରେ ପରିଚର୍ଯ୍ୟା କରିବା ଉଚିତ । ନ ହେଲେ ବିପଦ । ଅଧାଜ୍ଞାନ ବିପଦର କାରଣ । ବର୍ତ୍ତମାନ ପୃଥିବୀର ବିପଦର କାରଣ ହେଉଛି ସେହି ଅଧାଜ୍ଞାନ । ପୂର୍ଣ୍ଣ ଜ୍ଞାନ ନ ଥିଲେ, ଜାଣିବା ଲୋକଙ୍କଠୁ ଶିଖିବା ବା ନିୟମ ସଂକଳିତ ଶାସ୍ତ୍ର ଅନୁସାରେ ଚଳିବା ଉଚିତ ।

ପୃଥିବୀ ଘୂରିବା, ଚନ୍ଦ୍ର ବୁଲିବା ଇତ୍ୟାଦି ଗୋଟିଏ ଗୋଟିଏ ଚକ୍ର (Cycle), ଜୀବନ ମଧ୍ୟ ଗୋଟିଏ ଚକ୍ର । ଏହି ସବୁ ଚକ୍ର ସାହାଯ୍ୟରେ ସଂସାରକୁ ପରିଚାଳନା କରାଯାଉଛି । ଗୋଟିଏ ବୃହତ୍ କାରଖାନାରେ ଭିନ୍ନ ଭିନ୍ନ କଳ କବ୍‌ଜା ଓ ଯନ୍ତ୍ର ପାତିକୁ ଯେପରି ଗୋଟିଏ ଗୋଟିଏ ବେଲ୍‌ଟ ଘୂରାଏ । ଚକ୍ର ଗୁଡ଼ିକୁ ଘୂରାଉଛନ୍ତି । ଗୋଟିଏ ଗୋଟିଏ ଉପସର୍ଗ ଶକ୍ତି ଓ ସଂସାରକୁ ଘୂରାଉଛି ଗୋଟିଏ ବିରାଟ ଶକ୍ତି—ଅନନ୍ତ ନାଗ, ଏକ ହଜାର ବା ଅସଂଖ୍ୟ ଉପସର୍ଗ ଶକ୍ତିର ସମଷ୍ଟି ବା ମିଳିତ ହେତୁ । ତାର କେନ୍ଦ୍ରରେ ଅଛି ସମସ୍ତ କିୟାମାଣ ଓ ଅନ୍ତର୍ନିହିତ ଶକ୍ତିର ସମଷ୍ଟି ସହିତ ଗୋଟିଏ ଘନୀଭୂତ ଚିତ୍ ଘନ ଶକ୍ତି ବିନ୍ଦୁ— ଭଗବାନ । ତାକୁ ଶକ୍ତି କହନ୍ତୁ ଦୁର୍ଗା, କାଳୀ କୁହନ୍ତୁ, ଅନନ୍ତ ଶୟନ ବିଷ୍ଣୁ କହନ୍ତୁ, ବିପରୀତ ରତିରତ ଶିବ କାଳୀ କହନ୍ତୁ, ବେକରେ ସାପ ଗୁଡ଼ାଇ ହୋଇଥିବା ବ୍ରହ୍ମରୂପୀ ଶିବ କହନ୍ତୁ- ସବୁ ସେହି ଗୋଟେ କଥା । ଓଁ ତାର ସାଙ୍କେତିକ ଓ ବୈଜ୍ଞାନିକ ପ୍ରତୀକ । ଏବଂ ଏ ବିଶ୍ୱ ବ୍ରହ୍ମାଣ୍ଡ ହେଲା ଗାଣିତିକ ସୂକ୍ଷ୍ମତା ଥିବା ଗୋଟିଏ ବିଜ୍ଞାନ ମନ୍ଦିର ।

ବିଜ୍ଞାନରେ ଯାହା ସବୁ ସତ୍ୟତା ପ୍ରମାଣିତ ହୋଇଛି, ସେ ସବୁ ସତ୍ୟ ହୋଇ ଯାଉଛି, ଯେହେତୁ ସେ ସତ୍ୟତା ତତ୍ତ୍ୱ ବ୍ରହ୍ମ ରୂପି ଭଗବତ୍ ସତ୍ତାରେ ଅନ୍ତର୍ନିହିତ ହୋଇଛି ।

ଗୋଟିଏ ବଡ଼ କୁଟୁମ୍ବି ପରିବାରରେ ଗୋଟିଏ ପିଲା ଜନ୍ମ ହେଲେ, ସେ ଅନେକ ଗୁଡ଼ିଏ ନାଁ ପାଇଥାଏ । ସ୍କୁଲରେ ନାମ ଲେଖା ହୁଏ ଗୋଟିଏ, ସେହି ନାମରେ ପ୍ରତିଷ୍ଠା ହୁଏ ଓ ଦେହ ଯେତେବେଳେ ମାଟିରେ ମିଶେ, ସେ ନାମ ମଧ୍ୟ ରହେ ନାହିଁ । ଯଦି ତାର କିଛି ସ୍ମୃତି ରହେ, ସେତିକି ରହେ-ଯେତିକି ପ୍ରେମ,ସ୍ନେହ ଓ ମମତା ପରିବାର ବର୍ଗ ଓ କର୍ମ ପରିସର ଭିତରେ ସେ ଛାଡ଼ିଦେଇ ଯାଉଛି । ଭଗବାନଙ୍କ ନାମ ମଧ୍ୟ ସେହିପରି ଓ ବୁଝିବା ପରେ ଲିଭିଯାଇଥାଏ । ରହେ କେବଳ ଭକ୍ତ ଓ ତାର ପ୍ରେମନିଷ୍ଠା, ଜ୍ଞାନୀ ଓ ତାର ଜ୍ଞାନନିଷ୍ଠା, କର୍ମୀ ଓ ତାର ସମ୍ପର୍କନିଷ୍ଠା । ଯେହେତୁ ଭକ୍ତ, ଜ୍ଞାନୀ ଓ କର୍ମୀ ହେଉଛି ବସ୍ତୁ, ପ୍ରେମ ଜ୍ଞାନ ବା ସମ୍ପର୍କ ହିଁ ଶକ୍ତି; ସଂଯୋଗରେ ଭଗବାନ ।

ଉଚିତ ସମ୍ପର୍କ ରକ୍ଷା କରିବା ହେଲା ଧର୍ମ ।

ପ୍ରେମ ଶବ୍ଦ ଉପରେ ମଧ୍ୟ ଅନର୍ଥ ହୋଇଥାଏ । ଯୌନଲାଳସା, କାମ ପାଇଁ ଭିତରଦେଇ ଫୁଟି ଉଠୁଥିବା ଉଚିତ ସମ୍ପର୍କ ଉପରେ ପ୍ରାଧାନ୍ୟ ମାନିବା ହେଲା ପ୍ରେମ । ମାନେ ଯେଉଁ ସମ୍ପର୍କକୁ ବହୁତ କର୍ମ କରିବା ପାଇଁ ପ୍ରେରଣା ଦେଇଥାଏ । ପ୍ରଥମରେ ଆସେ ସଂଘର୍ଷ ରହିତ ଶୃଙ୍ଖଳା ଜ୍ଞାନ, ପରେ ଶ୍ରଦ୍ଧା, ତାପରେ ପ୍ରେମ ଓ ଶେଷରେ ଐକ୍ୟ ଭାବ ବା ଚୈତନ୍ୟ । ପ୍ରେମ, ଭକ୍ତି, ସ୍ନେହ, ଦୟା ଇତ୍ୟାଦି ପର୍ଯ୍ୟାୟରେ ।

ସୃଷ୍ଟିର ପ୍ରାରମ୍ଭରେ ଜୀବନ ଚକର ପ୍ରବୃତ୍ତିନ ହେଲା । ସୃଷ୍ଟି ପରିବର୍ତ୍ତନଶୀଳ ହୋଇ ସ୍ଥାୟୀ ରହିଛି ଜୀବନ ଚକ୍ର ଚାଲୁ ଥିବାରୁ । ଜୀବନ ଚକ୍ରକୁ ଘୂରାଉ ଥିବା ଜୀବନ ଶକ୍ତିକୁ ଟାଣି ନେଲେ, କାଢ଼ି ନେଲେ ଏହି ଚକ୍ର ଘୂରିବା ବନ୍ଦ ହେବ - ଏହା ସୃଷ୍ଟିର ସଂହାର ବା ପ୍ରଳୟ ହେବ ।

ଆମ୍ଭେ ଆଗରେ ଦେଖିଛନ୍ତି ଯେ ଜୀବନ ସୃଷ୍ଟି ରହିଛି, କେବଳ ଯୌନ କ୍ରିୟା ଦ୍ୱାରା । ଏଥିରୁ ବୁଝାଗଲା ଯେ ଜୀବନ ଶକ୍ତି ଯୌନ କ୍ରିୟା ଦ୍ୱାରା ତାର କାର୍ଯ୍ୟ ସମ୍ପାଦନ କରୁଛି । ସେହେତୁ ଯୌନକ୍ରିୟାର ନିୟନ୍ତ୍ରଣରେ ଜୀବନର ନିୟନ୍ତ୍ରଣ । ଯୌନ କ୍ରିୟାର ଉପଯୁକ୍ତ ପ୍ରୟୋଗରେ ଉପଯୁକ୍ତ ଜୀବନର ଧାରଣ ଓ ଜୀବନ ଧାରଣ । ତାର ଅପଚୟରେ ଯାବତୀୟ ଅଶାନ୍ତି— ବ୍ୟକ୍ତି ବିଶେଷଠି ହେଉ, ପରିବାରରେ ହେଉ ବା ସମାଜରେ ହେଉ; ବ୍ୟଷ୍ଟିଗତ ହେଉ ବା ସମଷ୍ଟିଗତ ହେଉ ।

ସେହେତୁ, ସଇନ୍ଥ୍ୟାନ, ଭକ୍ତ, ପୁସ୍ତଲେଇ ଥିଲେ, ଓ ବୁଦ୍ଧ ସହିତ ଅବତାର ଓ ମହାପୁରୁଷମାନେ କଣ୍ଠା ଗଛ କାଟି ତାର ମୂଳ ଉପାଡ଼ିବା ଓ ଖାଲି ବପନ ନ କରିବା ପାଇଁ କହିଥିଲେ । କିନ୍ତୁ ତା ସାଙ୍ଗକୁ ବିଧିବଦ୍ଧ ଭାବରେ ମଞ୍ଜି ପୋତିବା ଓ ଗଛ ଲଗାଇବା ମଧ୍ୟ ଉଚିତ ଥିଲା । ଶ୍ରୋତୃବୃନ୍ଦ ଏମାନେ ସଇତାନ ଆଗରେ ହାର ମାନି ଥିଲେ । ଜୀବର ଅବତରିନ ପାଇଁ ତାର ଜୀବନରେ ଘାତ ପ୍ରତିଘାତ ସୃଷ୍ଟି କରିବା । ସର୍ବାଶେ ସଇତାନ ଭଗବାନଙ୍କର ଅପରାଧୀ ସୃଷ୍ଟି ବୋଲି ମାନି ନେଇଥିଲେ । ସାମୟିକ ଭାବରେ ଓଳେଇ ଥିଲେ, ସଜାଡ଼ି ନ ଥିଲେ । ଏମନ୍ତ

ଧାରାରେ ହିଁ ସୁଖ ଓ ସ୍ୱର୍ଗର ସୃଷ୍ଟି । ଉପକାରୀ ଗଛ ଯଦ ବଡ଼ ହୋଇ ଫଳ ଦେବାକୁ ଆରମ୍ଭ କରିବେ କଣ୍ଟା ଗଛ ଉଧେଇବ ନାହିଁ ଓ ଗଛାରୁ ବିନଷ୍ଟ ହେବ ।

ଅନେକ ବଡ଼ ବଡ଼ ଉପକାରୀ ଗଛ ଏ କଣ୍ଟା ଜଙ୍ଗଲରେ ସ୍ଥାନ ଅଭାବରୁ ବାଟ ନପାଇ ଉଧେଇ ପାରୁ ନାହାନ୍ତି । ଅନେକ ମହାନ୍ ଆତ୍ମା ଅଛନ୍ତି ସେଉଁମାନେ ପୃଥିବୀକୁ ଆସିବା ପାଇଁ ସୁବିଧା ପାଇ ପାରୁ ନାହାନ୍ତି ।

ପ୍ରତ୍ୟେକ ବାପା ମାଙ୍କୁ ମୋର ନିବେଦନ, ମା ଓ ଭଉଣୀ ମାନଙ୍କୁ ମୋର ପ୍ରାର୍ଥନା ସେମାନେ ନିଜର ଶକ୍ତିଧାରାରେ ସଂଯମ ଆଣନ୍ତୁ । ସଦ୍‌ଭାବ ଆଣନ୍ତୁ ଓ ସଦ୍‌ଭାବକୁ ନୂତନ ଜୀବନ ଦେଇ ବପନ କରନ୍ତୁ । ନୂତନ ବୃକ୍ଷକୁ ସଦ୍‌ଶକ୍ତି ଧାରା ଦ୍ୱାରା ଜଳସିକ୍ତ କରନ୍ତୁ ; ଏ ପୃଥିବୀ ଆନନ୍ଦମୟ ସ୍ୱର୍ଗରେ ପରିଣତ ହେବ, ଅତିଶୟୋକ୍ତି ନୁହେଁ ।

ତୁଳସି ଲଗାନ୍ତୁ, ବିଛୁଆତି ନୁହେଁ । ବେଣ୍ଟିଆଳ ଓ କେପଟୁଆ ଭାବରେ 'ବଳ ଯାର ମୂଳକ ତାର' ଭାବରେ ପଶୁ ଭଳିଆ ରହନ୍ତୁ ନାହିଁ, ରହିବାକୁ ଛାଡ଼ନ୍ତୁ ନାହିଁ ।

ଯଦ ବା ନହୋଇପାରିଛ, ଶକ୍ତି ଧାରାରେ ଥିବା ଦୋଷ ଶକ୍ତିଧାରାର ନିୟନ୍ତ୍ରଣରେ ହିଁ କଟି ଯାଇ ପାରିବ । ନିଜେ କରିବା କର୍ମର ଦୋଷ ତ୍ରୁଟି ପାଇଁ ଅନୁତାପ କର । ଦୋଷ କଟି ଯିବ । ଆମ୍ବଡ଼ା ତାଇଲର ଅସ୍ତିତ୍ୱ ଯିବ । ଆମ୍ବ ଶିମ୍ବ ଫଳ ଉଠିବ । ଅପରକୁ ନିଜ ଭଳିଆ ଭଲ ପାଅ । ନିଜର ଆରାଧ୍ୟ ଦେବତା ଓ

ଶୀର ଭକ୍ତଙ୍କୁ ମନ ପ୍ରାଣ ଦେଇ ଭାଗ୍ୟ ମନ ବାକ୍ୟରେ ଭଲ ପାଅ । ସ୍ୱର୍ଗ ଗଢ଼ି ଉଠିବ ।

ନିଜର ଚିନ୍ତା ଧାରା ଉପରେ, ସଂସ୍କାର ଉପରେ ଅନୁଧ୍ୟାନ କଲେ ନିଜକୁ ଚିହ୍ନି ପାରିବ । ଏହାକୁ କହନ୍ତି ଆତ୍ମ ବିଶ୍ଳେଷଣ ।

ଆଗେ ନିଜକୁ ଚିହ୍ନ ଓ ସଜାଡ଼, ପରେ ଅପରକୁ ଦେଖ । ତେବେ ଯାଇ ଦେଖିବାଟା ଠିକ୍ ଭାବେ ହେବ ନହେଲେ ନିଜଠି ଥିବା ଦୋଷ ଅପରଠି ଦେଖିବ ।

କିନ୍ତୁ ସେହି ଓକିଲଦାର ବ୍ୟକ୍ତି ବିଶେଷ ନିଜକୁ ନ ଚିହ୍ନି ମଣିଷ ଦେଖୁଛନ୍ତି ଓ ମଣିଷ ସଜାଡ଼ିବାକୁ ଚାହୁଁଛନ୍ତି- ବଡ ଭାରି କୌତୁକ ! ବିଷ ପାଚିଲେ ଏପରି ହୁଏ ।

ନା, ସେ ନିଜକୁ ଚିହ୍ନି ପାରିଛନ୍ତି । ସେହେତୁ ସୃଷ୍ଟିର ଗୂଢ଼ ତତ୍ତ୍ୱରେ ସମତା ଥିବା ଦେଖି ଏବେ ଜଗ୍ର ଓ ସମତା ଆଣିବାରେ ଏବେ ବ୍ୟଗ୍ର ।

ଦେବାବାନକୁ ଲାଗି ଗୋଟାଏ ଘରେ ଗୁଡ଼ାଏ 'ଖାଲ୍' (ଛେଳି ଛାଲ) ରଖା ଯାଇଥିଲା । ମୋତେ ସେଠାରେ ଗଡ଼ିବାକୁ କୁହାଗଲା । ଛେଳି ଛାଲ ଗୁଡ଼ିକ ଅତି କୋମଳ । ସେଠାରେ ଗୋଟିକର ଦାମ୍ ତିନି ଟଙ୍କା ଥିଲା ।

ସଂଧ୍ୟାବେଳେ ଡାକରା ଆସିଲା— ଭାରତର ବାଣିଜ୍ୟ ପ୍ରତିନିଧି ଏଠାକୁ ଆସିଛନ୍ତି, ସେ ଆମ୍ଭମାନଙ୍କୁ ଦେଖିବାକୁ ଚାହୁଁଛନ୍ତି । ଇଂରେଜ ଅମଳରୁ ଏହି ପ୍ରଥା ଚାଲିଆସିଛି । ତିବ୍ବତରେ ଥିବା ଗର୍ତ୍ତୋକ ପର୍ଯ୍ୟନ୍ତ ଏମାନେ ଯିବେ । ସେମାନଙ୍କ ସାଥିରେ ଡ଼ାଃ ଏସ୍. ସି ପୋଦ୍ଦାର ଥିଲେ । ସେ ମୋତେ ଖୋଜ ବାହାର

କଲେ । ଅତି ଆପଣାର ଭଳିଆ ବ୍ୟବହାର କଲେ । ମୋର କଣ୍ଣ
ଲୋଡ଼ା ପଡ଼ୁଥିବାରୁ କିଛି ଖାଦ୍ୟ ପ୍ରାଣ-ସି ବଟିକା ମାଗି ଥିଲି ।
ଭଲ ରୂପେ ଦାନ୍ତ ନଦଫି ଥିବାରୁ, ଖାଇବାଟା ଯଥେଷ୍ଟ ନ ହୋଇ
ଥିବାରୁ, କେତେକ ଓଷ୍ଠାର ଆସୁଥିବା ହେତୁ, ବାଟରେ ଶୋଷ
ହେଲେ ଓ ଦେହଟାକୁ ପ୍ରକୃତିର ପ୍ରକୋପରୁ ରକ୍ଷା କରିବା ପାଇଁ
ଖାଦ୍ୟ ପ୍ରାଣ-ଗ ବଟିକା ଉପରେ ଭୃପଣ୍ଠା ଟିକଏ ବେଶି ଯୋରରେ
ପଡ଼ିଥିଲା । ଏବଂ ବର୍ଦ୍ଧ ଠାରେ ସଂରୁଆଇଥିଲା । ଦିନ ଭିତରେ ପ୍ରାୟ
ଲାଗନ୍ତି ଦରକାର ପଡ଼ିଲା ।

ସମସ୍ତେ ବାଣିଜ୍ୟ ପ୍ରତିନିଧି (ଟ୍ରେଡ଼ ଏଜେଣ୍ଟ) ପାଖକୁ ଗଲି ।
ସେମାନେ ତମ୍ବୁରେ ରହୁଥିଲେ । ଆମ ମାନଙ୍କୁ ଗାଲିଚା ଉପରେ
ବସାଇ ତପୃସ୍ତ ଫଳ ଓ ରସରେ ଆପ୍ୟାୟିତ କରୁଥିଲେ ।
ଅବଶ୍ୟ କାହାର କିଛି ଦରକାର ଅଛି କି ବୋଲି ପଚାରୁଥିଲେ ।
କେତେଜଣ ଆମ ସମସ୍ତଙ୍କ ତରଫରୁ କିଛି ଲୋଡ଼ା ନଥିବା କହୁଥିଲେ ।
ସେହି ବାଣିଜ୍ୟ ପ୍ରତିନିଧିଙ୍କର ଦୁଇ ଜଣ ସହକାରୀ ଥିଲେ—ଜଣେ
ମୁସଲମାନ ଓ ଜଣେ ଶିଖ । ସେ ନିଜେ ହିନ୍ଦୁ ଥିଲେ ।

କେତେଜଣ ଭାରତର ଖବର କଥା ପଚାରୁଥିଲେ । ଏ ଭିତରେ
ଭାରତରେ ଅନେକ ଜାଗାରେ ନାଳି ନଥିବା ବଢ଼ି ହୋଇଥିବା ଓ
ସେ ସମୟକୁ ମାନ୍ଦ୍ରାଜରେ ଭୀଷଣ ବଢ଼ି ହେଉଥିବା କଥା ଶୁଣିଲୁ ।
ମୁଁ ସେଠୁ ଓଡ଼ିଶା କଥା ପଚାରିଥିଲି । ଅଳ୍ପ ଦିନ ତଳେ ଅତି
ଭୀଷଣ ବଢ଼ି ହେବା କଥା ଓ ସେ ଅବସ୍ଥାକୁ ନୂତନ ସରକାର
ଦକ୍ଷତା ସହିତ ସମ୍ଭାଳି ଥିବା କଥା କହୁଥିଲେ ।

କହିଲି ନିଶ୍ଚୟ ହୋଇଥିବ । ତାହା ହେଲେ ଔଷଧ ଧରିଛି
ସାହାସ ଓ ଦକ୍ଷତା ଥିଲେ ମଧ୍ୟ, ପ୍ରାକୃତିକ ବିପର୍ଯ୍ୟୟ ତ୍ରୈସକୁ

ଆସିବ ନେତଳ ଅବସ୍ଥାକୁ ଟେଲିଭିଜନରେ ଦେଖି ପାରିବ—ମଣିଷର ଶକ୍ତି ଠାରୁ ଆଜି କିଛିଏ ବେଶି ।

ସେଠାରେ ଦରକାର ଉତ୍ତଳ ଧକ୍କା ସାହାସ ।

ପ୍ରତିନିଧି ଜଣଙ୍କ ନିଖୋଜ ହୋଇଥିବା ସମ୍ପଦାସି ବିଷୟରେ ଖୁବ୍ ଶୁଣ୍ଟା କରୁଥିଲେ । ତାଙ୍କୁ କୁଆଡ଼େ ମାରି ଦିଆଯାଇଥିବା ଖବର ସେ ପାଇଥିଲେ ।

ସେଠାରୁ ବାହୁଡ଼ିଲା ସମୟରେ ଡ଼ାଃ ପୋଦ୍ଦାର ଦଣ୍ଡି ଖାଦ୍ୟ-ପ୍ରାଣ 'ଗ' ବଟିକା ଯୋଗାଇ ଦେଲେ । ସେତିକି ହାତରେ ପାଇ ନୂତନ ସାହାସ ପାଇଲି । ଛଟଗିର ମନ ଖୁବ୍ ଅଶାନ୍ତ । ମୋର ଯଥାସାଧ ଆଶ୍ୱାସନା ଓ ଉପଦେଶ ଦେଇଥିଲି । ଦୁଇଜଣ ବୁଲି ଚାଲି ଆସିଲା ସମୟରେ ସେ ପେଟେଷ୍ଟବେଳେ ତାଙ୍କରେ ହାତ ଦେଇ ମୋ ସାଙ୍ଗରେ ଚାଲିଲେ ମୋର ମନେ ହେଲା, ମୁଁ ସହରରେ ଅତି ନିକଟ ବନ୍ଧୁ ସଙ୍ଗରେ କୌଣସି ସିନେମା ଲକ୍ଷ୍ୟରେ ଚାଲିଛୁ । ସତେକ ଦୁଇଜଣଙ୍କର ବୟସ ଦଶ ପନ୍ଦର ବର୍ଷ କମି ଯାଇଥିଲା । ତାଙ୍କର ଆର୍ଯ୍ୟ ସ୍ଥଳ ଥିଲା ନେପାଳରେ । କୈଳାସରୁ ଫେରିଲା ପରେ ପତ୍ରାଳାପ ଥିଲା । ଚୀନା ଆକ୍ରମଣ ପରେ ଛଟିର ଉତ୍ତର ପାଇ ନାହିଁ ।

ଭଗବାନ ତାଙ୍କୁ ଶାନ୍ତିରେ ରଖନ୍ତୁ ।

ଏ ଭିତରେ ତତ୍ତ୍ୱାନନ୍ଦାନନ୍ଦଜୀ ମାନସରୋବର ପଦ୍ମମା ସାରି ଆସନ୍ତୁ ଦେଖିଥିଲେ । ବ୍ରହ୍ମପୁତ୍ରର ଉତ୍ପତ୍ତି ସ୍ଥଳରେ ସାମାନ୍ୟ କଷ୍ଟ ହେବା କଥା କହୁଥିଲେ ।

ତାପର ଦିନ ସକାଳେ ନିଜେ ଅନ୍ତର୍ଯାମୀ ହେବାକୁ ଚାହିଁ-
ଥିଲି । ସଦାନନ୍ଦ ସ୍ୱାମୀ ପଚାରିଲେ— ମୋହନ ସିଂ ତୁମକୁ ଭାତ
ଓ ଦହି ଖୋଇବାକୁ କହିଥିଲେ ନା ? ସେ କହୁଛି ଚୂଡ଼ା, ଦହି ଓ
ପିଆଜ ଦେଇଛନ୍ତି । ଅନ୍ୟର ରନ୍ଧା ତ ମୁଁ ଖାଇବି ନାହିଁ,
ସେହେତୁ ମୁଁ ରାନ୍ଧିବି । ତୁମର ଖାଇବାରେ କଣ ଆପତ୍ତି ଅଛି କି ?

ମୋହନ ସିଂ ଆଗରେ କହିବା କଥା ମୋ ଆଗରେ ମଧ୍ୟ
ବାଢ଼ି ବସିଥିଲେ । ଏବଂ, ମୋର ବା କ ଆପତ୍ତି ଥାଇପାରେ ?
ପଣ୍ଡିତାଃ ସମଦର୍ଶିନଃ । ମୋହନ ସିଂ ଲଙ୍କା ତେଲ ଭଜା ଆଉ
ଚୂଡ଼ା, ଦହି ଓ ପିଆଜ ଦେଇଥାନ୍ତି । ଅଡୁଆରେ ପଡ଼ିଥାନ୍ତି ।

ଗୋଟିଏ ସନ୍ଧ୍ୟାରେ ଧରିବା ଭଳି ଏଠି ଦହି-ଭାତ
ପିଆଜ ସହିତ ଖାଇଲି । ସେଠି ଭୋଜନ-ସନ୍ତୋଷ ଲାଭ କଲି ।

ଗୁଜରାଟି ସହଯାତ୍ରୀ ମାନେ ତାଙ୍କର ରଖିବା ହେବା ଖାଦ୍ୟ
ଜିନିଷ ସବୁ କିଣି ନେଲେ । ମୁଁ ମଧ୍ୟ ସେଇଆ କଲି । କାଠଗୋଦାମ
ଯାଇ ସେ ସବୁ କିଣିଲି । ସେମାନେ ଯାହାକୁ ତାଙ୍କର ରଖିବା ଜିନିଷ
ବିକ ନ ଥିବାରୁ ବିରକ୍ତି ପ୍ରକାଶ କରିଥିଲେ—

ହେବା ନେଲା ବେଳକୁ ଆମଠୁ ନେବେ, ସୁବିଧା ଦେଲା
ବେଳକୁ ଅନ୍ୟକୁ ଦେବେ ।

ଏହା ଏକ ଅନୁଚିତ କଥା ନିଶ୍ଚୟ ।

ଅସଲ କଥା ହେଲା, ମୋର ନେବାଠା କମ୍, ରଖିବାଠା କମ୍
ଏବଂ ଖରଚ୍ ଦାର ଯୋଗ୍ୟ । ସେମାନଙ୍କର ଜିନିଷ ବହୁତ ।
ଜିନିଷ ଗୁଡ଼ିକ କିଣା ମୂଲ୍ୟରେ ଯଦିଓ, ତାର ବଜାର ଦର ପ୍ରାୟ

ଦୁଇଗୁଣ । ଅବଶ୍ୟ ଟଙ୍କା ଦାନ ପାଇଁ ନେଇ ରଖି ଦେଇ ଥିଲି । ମୋର ମନେ ହୁଏ ପଞ୍ଜାବର ତାର ଠିକା ସାଢ଼େ ନ ଅଣା ହୋଇ ଥିଲା । ଭଙ୍ଗୁଣି ନଥିବାରୁ ନ ଅଣା ଦୁଇ ପଇସା ବଦଳରେ ଗୁଣ୍ଡାଏ ଚୀନା ନୋଟ ପାଇଥିଲି । ସେଥିରୁ ଗୋଟିଏ ସାଢ଼େ ତିନି ଅଣିକିଆ ଚୀନା ନୋଟ ବଦଳରେ ପାଞ୍ଚ ଗୋଟି ଗୁଆ ଏତେ ବଡ଼ ମିଶ୍ରି ଖଣ୍ଡ କିଣିଥିଲି । ମିଶ୍ରି ଭାରତରୁ ଆମଦାନି ହୋଇଥିଲା ।

ଅନେକ ଦିନ ପରେ ସସ୍ନେହେ, ସାଦରେ ଦିଆ ଯାଇଥିବା ପେଟପୂର ଭାତ ଖାଇ "ପା-କି" ଅଭିମୁଖେ ବାହାରି ପଡ଼ିଲି । ମୋହନ ସିଂ ଗଡ଼ୱାଲ ଠାରୁ ବିନମ୍ର ନମସ୍କାର କରି ବିଦାୟ ନେଲି । ଏମାନେ ତା' ଠାରୁ ବୟୋଜ୍ୟେଷ୍ଠ ବା ଉଚ୍ଚତର ପଦବୀର ବା ଅଧିକତର ଧାର୍ମିକ ଭାବରେ ବିଦାୟ ନେଇଥିଲେ ।

ନିଜର ଦୁଃଖ ଓ କଷ୍ଟକୁ ବାହାରେ ପ୍ରକଟ କରିବା ମୋର ଅଭ୍ୟାସ ନୁହେଁ । ନିଜର କଷ୍ଟ ପ୍ରକଟ କରିବାକୁ ଲଜ୍ଜା ବୋଧ କରେ । ତେବେ ମଧ୍ୟ, ମୋ ପରି ପରର କଷ୍ଟ ବୁଝିବାକୁ ଚେଷ୍ଟା କରି, ବୁଝି, ତାର ଦୁଃଖର ଉପଶମ ସକାଶେ ସତତ ସଚେଷ୍ଟ ତା ଠାରୁ ବଳି ଧାର୍ମିକ ଆଉ କିଏ ହୋଇପାରେ ? ଧ୍ୟାନ, ଧାରଣା ମନନ, ନିଦିଧ୍ୟାସନ କରିବା ଲୋକ ନୁହେଁ । ଏସବୁ ଆୟତ୍ତ କଲା ପରେ ହିଁ ଜଣେ ମୋହନ ସିଂର ସମାନ ହୋଇ ପାରିବ ।

ଜଗତରେ ଦୁଇ ପ୍ରକାର ଲୋକ ଅଛନ୍ତି । ଜଣେ କନ୍ଦାଏ ଜଣକ ଲାଗି କାନ୍ଦିବାକୁ ପଡ଼େ । ଯେ କନ୍ଦାଏ ସେ ସଇତାନ ଅଂଶରେ ଜନ୍ମ । ଯାହାଲାଗି କାନ୍ଦିବାକୁ ପଡ଼େ ତା'ଠି ଭଗବାନ୍ ବସା ଥାଏ । ମୋହନ ସିଂ ଗଡ଼ୱାଲ୍ ଯେତେବେଳେ ମନେ ପଡ଼ନ୍ତି

ମନ ଦୋହଲି ଯାଏ । ଭଗବାନଙ୍କୁ ଡ଼ାକେ — ତାଙ୍କର ଆତ୍ମାକୁ ଚିର ସୁଖ ଓ ଶାନ୍ତିରେ ରଖ । ଭଗବାନ ଏହି ଡ଼ାକ ଶୁଣିବେ, ମୋର ଦୃଢ଼ ବିଶ୍ୱାସ ।

### ପା-ଲ (ବୃଲଣ୍ଟ — ୨୩୮ + ୭ = ୨୪୫ ପା)

ପଦ୍ମର ଆକୃତି ନଯାଇଣ୍ଟ ଓ ଗୁଡ ଜାଣ୍ଟ ହେବ ପୂର୍ବରୁ ବିଶେଷ କଷ୍ଟ ନପାଇ ପା-ଲ ନାମକ ଛୋଟ ଖଣ୍ଡରେ ପହଞ୍ଚିଲୁ । ସେଠାରୁ ଓଠାଣିର ଠିଆ ଭୋଣ୍ଟା ଟିକିଏ ବେଶି । ଲମ୍ବୁ ଘାଟ ଠାରୁ ଏହାର ଦୂରତା ପାଞ୍ଚ ମାଇଲ । ଗଲା ସମୟରେ ଲମ୍ବୁ ଘାଟ ପାର ହେବା ପୂର୍ବରୁ ଦମ୍ ନେବା ପାଇଁ ସଂଗଚମ୍ବର ଯେପରି ରହିଥିଲୁ ସେପରି ବାହୁଡ଼ା ଯାତ୍ରା ସମୟରେ ପା-ଲରେ ରହିଲୁ ।

ପା-ଲରେ ତିନି ପଟେ ଢାଲୁଥିବା ଓ ଉପରେ ଛାତ ଥିବା ପଥରେ ଛଅଟି ଖୋଲା କୋଠରି ଥିଲା, ଧର୍ମଶାଳା ନାଁରେ । ଗୋଟାକରେ ସରଦାର ଛେନ୍ନ, ଟେଣ୍ଟ ପିଠିରେ ଯବ ଧାନ ବୋଝେଇ କରି ଗାଡ଼ିକବାଟ ପଟେ ମାଡ଼ିଥିବା ଗୋଟିଏ ଭୁଟିଆ ପରିବାର ଆଗରୁ ବସା ବାନ୍ଧିଥିଲେ । କରଖମାର ଅନୁରୋଧ କ୍ରମେ ଅଦ୍ଭୁତାନନ୍ଦ ସ୍ୱାମୀ ଓ ମୁଁ ବାହାରେ ତମ୍ବୁରେ ରହିଲୁ ।

ଯାତ୍ରାର ଶ୍ରମଟା ଟିକିଏ ଜଣା ଥିବାରୁ ଶିବ ତାଣ୍ଡବ ଓ ଚଣ୍ଡୀର ଶ୍ଲୋକ ଆବୃତ୍ତି କରିଥିଲି । ସକାଳପରେ ଅଦ୍ଭୁତାନନ୍ଦ ସ୍ୱାମୀ ଉପହାସ କରି କହିଲେ— ଶୀଘ୍ର ସଦ୍ଗତି ଭଲ ।

ମୁଁ — ଶିବତାଣ୍ଡବ କଥା, ଡମ୍ବରୁ ଭଳିଆ ତାଳ ହେବା କଥା ।

ସେ— ତମ୍ବୁରର ତାଳଟା ଆଜ ଟିକଏ ଧିରେ, ଆସ୍ତେ ଆସ୍ତେ ହେବ ।

ସେ ହାତ ହଲାଇ ବୁଝାଇ ଦେଉ ଥିଲେ ।

ପରିବାର କହିଲେ ଜଣେ ସ୍ତ୍ରୀ ଓ ଆଉଜଣେ ପୁରୁଷ । ସ୍ତ୍ରୀଟି କମ ବୟସୀ, ପୁରୁଷଟି ବୃଦ୍ଧ । ସ୍ତ୍ରୀ ଟି ଦୁଆର ମୁହଁ ପାଖକୁ ଆସିଛି କି ନାହିଁ, ସଚ୍ଚିଦାନନ୍ଦ ସ୍ୱାମୀଙ୍କର ନଜର ପଡ଼ିଗଲା । ବାହାରେ ଥିବା ପୁରୁଷଟାକୁ ଡ଼ାକି ପଚାରିଲେ—

କ'ଣ ତାର ଜର ହୋଇଛି ?

କଥାଟା ତାକୁ ଭଲ ଲାଗିଲା ନାହିଁ । ବିରକ୍ତି ପ୍ରକାଶ କଲା । ସନ୍ଦେହରେ ଚାହିଁଲା ।

ସଚ୍ଚିଦାନନ୍ଦ ସ୍ୱାମୀ— ମୁଁ ଔଷଧ ଦେଇ ଜାଣେ, ଭଲ କରି ଦେଇ ପାରିବି । ଡେ଼ରି କଲେ ଖରାପ ହୋଇପାରେ । ଦେଖି ଦେଖି ଜାଣି ପାରୁଛି ।

ଅଗତ୍ୟା ଲୋକଟା ମାନିଲା । ସ୍ୱାମୀଜୀ ଭିତରକୁ ଗଲେ । ଔଷଧ ପତ୍ର ଦେଇ ଆସିଲେ ।

କହିଲେ—ସାଙ୍ଘାତିକ ଜ୍ୱର । ପ୍ରେମ କହୁଛି ସେ ତାର ଝିଅ । ବୟସଟା ଅବଶ୍ୟ ସେହିପରି, କିନ୍ତୁ ପ୍ରେମ ତାକୁ ରଖିଛି । ବର୍ତ୍ତମାନ ଔଷଧ ନ ଦେଇ ଥିଲେ ପ୍ରମାଦ ପଡ଼ିଥାନ୍ତା ।

କୈଳାସ ଯାତ୍ରା ହେଉଛି ଦେହ ପାଇଁ ଭୀଷଣ କଷ୍ଟ । ମନ ପାଇଁ ବେଶ ଭଲ । କିନ୍ତୁ ଶାଗ ପଖାଳ ଖାଇବା ଲୋକକୁ ଏ ସମ୍ଭାର ଅସହ୍ୟ ହୋଇ ଥାଏ । ଖାଇବା ପାଇଁ ଟିକଏ ଚଟଣୀ,

ପାଚନ୍ତି, ଖଣ୍ଟା କେଉଁ ହୁଏ । ସଦାନନ୍ଦଜୀ ଯୋଗାଇ ଥାଆନ୍ତି ତମିଁଣି ଆଚାର ।

ଆଚାରର ଉପଯୋଗିତା ଥାଏ, କିନ୍ତୁ ତାହା ପାତ୍ରାଧିକ ଖାଇବାଟା ବା ସେଥିରେ ପେଟ ପୁରାଇ ଖାଇବାଟା ଅପଥ୍ୟ ଓ ଖରାପ ହୋଇଥାଏ । ଅତଏବ, ଉକ୍ତ ଓ ଅସାମୟିକ ସବୁଥା ବର୍ଜନୀୟ ।

ଇଏ ହେଲା ଧାନ ।

ପା-ଳର ଉଚ୍ଚତା ପ୍ରାୟ ତେଇଶ ହଜାର । ପୂର୍ବ ଦେଉଦେଉ ଦିନ ଅପେକ୍ଷା ଥଣ୍ଡାଟା ବେଶ ଅଧିକ ଥିଲା ।

ପାଲା ଛାଡ଼ିଲୁ — କୁକଣ ଦଣ

ପରଦିନ ଅଗ୍ରଅ ବାହାର ପଡ଼ିଲୁ । କିଛୁଟା ଆଗେଇଛୁ ଆସି ସାଥି ହେଲେ ଦଣ୍ଡୀସ୍ୱାମୀନନ୍ଦଜୀ । ମୋ ସାଥିରେ କିଛି ସମୟ ଚାଲିଲେ । କେତେବେଳେ ଉତାଣିର କୋଣ ଠେକ ହେଲା ମୋର ବେଗ ଧିମେଇ ଗଲା ଓ ସେ ମୋଠାରୁ ଅନୁମତି ନେଇ ଛୁଟି ଆଗେଇ ଗଲେ । ସେ ଯୋଗରେ ଯଥେଷ୍ଟ ଉତ୍ସାହିତ କରୁଥାନ୍ତି । ମୋ ପ୍ରତି ତାଙ୍କର ଏକ ଅନ୍ତରିକ ଦୟା ସ୍ନେହ ଓ ଶ୍ରଦ୍ଧା ଥିଲା । ତାଙ୍କର ସଙ୍ଗ ମଧୁର ଥିଲା ।

କହିଥିଲେ— ଆମେ ବଡ ଭାଗ୍ୟବାନ ।

ମୁଁ ତାଙ୍କ ମୁହଁକୁ ଚାହିଁଲି ।

ସେ— ଆମେ ହେବା ଶେଷ ଦଳ, ଯିଏ କି କୈଳାସ ଦର୍ଶନ କରିବା ସୁବିଧା ପାଇଛୁ ।

ମୁଁ— କାହିଁକି ?

ସେ— ଏପରି କ'ଣ ଗୋଟାଏ ହେବ, ଯଦ୍ୱାରା ସୀମାଦେଇ ଚଳ ପ୍ରଚଳ ବନ୍ଦ ହୋଇଯିବ । ଆଜି କେତେ ଏପଟେ ଆସି ପାରିବେନି ।

ମୁଁ— ଆପଣ କପରି ଜାଣିଲେ ?

ସେ— ଜାଣିଛୁ ।

ତାଙ୍କର ସଙ୍ଗ ଛାଡ଼ିଲା ବେଳକୁ ବରଫ ପ୍ରାୟ ପଡ଼ ଆସିଥିଲା ବା ପାଖେଇ ଆସିଥିଲା । ସେ ଚାଲିଗଲେ, ଓ ତା' ପରେ ପରେ, ଅନ୍ୟ ସହଯାତ୍ରୀ ମାନେ ମଧ୍ୟ ସଦଳବଳେ । ଜଠାଣି ଦେଖୁଛ ଦେଖୁଛ ଚେକା ଚେକା ବରଫ ଆଇ ବାନ୍ଧି ର ପଥୁରିଆ ପଥରେ ଠେଲି ପେଲି ଚାଲିଥାଏ । ମୋହନ ସିଂହ ଭୁତ ଚଣ୍ଡୀଙ୍କ ନାମ ଦେଇ ଥିଲା । ଈଶ୍ୱରଙ୍କର କରୁଣା । ନ ହେଲେ ଦ୍ୱିତୀୟ ଥର ହିମାଳୟ ପାର କରି ପାରି ନ ଥାନ୍ତି ।

ହିମାଳୟ ମୂର୍ତ୍ତି ବଦଳିଲା । ପଡ଼ିଲା ଚକଡ଼ା ବରଫ । ହିମାଳୟର ଭୋହର ଆବେଗ ଛୁଟି ଆସିଲା । ପାଚିଲା ତାଲିଆ ପବନ । ହିମାଳୟ ହେଲା ଛନ ଛନ, ଆଖି ତାର ହେଲା ଛଳ ଛଳ । ନଇଁଯ ତାଲିଆ ପବନ ବହଳ ଅନ୍ଧାରୁଆ କୁହୁଡ଼ିକୁ ତାଣ୍ଡବ ତାଳରେ ଘୂରାଉଇ ବୁଲାଇ, ନଚେଇ, ମୁହଁ ଉପରକୁ ବନ୍ଦ ବନ୍ଦ ଛୁଆମାନଆଁ ଜଳ ଛିଟିକା ନିକ୍ଷେପ କରି ହିମାଳୟର ସମବେଦନା ଜଣାଉ ଥିଲା । ଗିରିରାଜ ସୁଁ ସାଁ କାନ୍ଦ ଉଠିଲା—

—ହିଁ—ହିଁ— ସାଁ—

ତଳ ପଟରୁ ଛୁଟି ଅସିଲା ଜଣେ ବଙ୍କଡ଼ ପାର୍ବତୀ ଗୌରବାୟୁ । ଅଡ଼େଇ ଗଲା । ଦାନ୍ତ ଦେଖାଇ ହସି କହିଲା—

ଗୃଲନ୍ତୁ ସାଙ୍ଗ ହୋଇ ଯିବା ।

ମୁଁ ମଧ୍ୟ ଟିକଏ ହସି କହିଲି— 'ଗୃଲନ୍ତୁ', ଓ ହୁରେଇ ବହିଲି ।

ଅପରିଚିତ ଅଗନ୍ତୁକ ପ୍ରତି ମୋର ସତର୍କତା ଅବଲମ୍ବନ ପୂର୍ବକ ସନ୍ଦେହଥାଏ । ଗୋଡ଼ରୁ ମୁଣ୍ଡ ପର୍ଯ୍ୟନ୍ତ ତାକୁ ଦେଖିନେଲି । ସେ ଆଧୁନିକ ସଭ୍ୟତାର ସଂସର୍ଗରେ ଓ ସଂସ୍ପର୍ଶରେ ଆସିଛି । ଯୋତା ହଳଟା ନାଲି ରଙ୍ଗର ଓ ଚୀନା ତିଆରି । ଚୀନା ବର୍ମୀଙ୍କ ସମସ୍ତେ ସେହି ପ୍ରକାର ଜୋତା ପିନ୍ଧିବା ଦେଖିଥିଲି । ପରିଧେୟ ରୁଚିକର ଥିଲା ଓ ବେଶ ଆଧୁନିକ ଢଙ୍ଗରେ କର୍ତ୍ତିତ ହୋଇ ପ୍ରସାଧିତ ହୋଇଥିଲା । ଲୋକଟି ସଫା ସୁତୁରା ଥିଲା ।

କହିଲା—ସ୍ୱରିତ ଯାଉଛି ଦଳଇକମା ପାଖକୁ ଖବର ନେଇ ।

ମୋର ସନ୍ଦେହ ଅଧିକ ବଢ଼ିଲା— 'ଆରେ, ଇଏ ଗୋଟେ ଦୁଇ ମୁଣ୍ଡିଆଟେ ।' ଏବେତ ଗୃଲିଆଡ଼େ କୁହୁଡ଼ି, ତଳେ ଖସଡ଼ା ବରଫ । ବାଟ ଜଣା ଯାଉ ନଥାଏ । ସେଥିପ୍ରତି ଅଧିକ ଦୃଷ୍ଟି ଦେଲି ଓ ଦୃଷ୍ଟି ଦେବା ଭଙ୍ଗି କଲି । 'ଆସନ୍ତୁ, ମୁଁ ତୁମ ପାଇଁ ବାଟ କାଢ଼ି ଦେଉଛି' କହି ବାଟ କାଢ଼ି ଦେଲା । ମୁଁ ତାର ଅନୁଗମନ କଲି । କଥା ଅଛି ଯେ, ନଦୀ ବଢ଼ିରେ କୂଳ ଖାଇ ଉପାଡ଼ି ହୋଇ ଥିବା ଗଛ ଦେହରେ ମାଙ୍କଡ଼, ମଣିଷ, ବାଘ, ସାପ ଏକତ୍ର ଗମନ କରନ୍ତି । ମୁଁ ତାର ପଛରେ ଗୃଲିଲି, ଯେହେତୁ ସେଇଟା ବାଟ ଥାଏ, କିନ୍ତୁ ତା' କଥାରେ ନୁହେଁ । ଥକି ଯାଇଥିଲି, ଗମ୍ଭୀର ଓ ସତର୍କତାର ଅଭିନୟ କରୁଥିଲି ।

ଜନଗହଳି ପାଶ୍ଚାତ୍ୟ ଦେଶରେ କୌଣସି ଗ୍ରନ୍ଥଧାମୀର ମୁଖ୍ୟ ରାସ୍ତାରେ ଯାଉଥିବା ଲୋକ ଉପରେ ଯଦି ଟ୍ରକ ମଡ଼ାଇଦିଆ ଯାଇ

ପାରେ, ଅବସ୍ଥାସ ଅଟୋମୋଟରେ ନକୁ ଯାଉଦେବା ଅସ୍ତମ୍ଭନକ ନୁହେଁ। ଯେହେତୁ ମୋର ସେହି ସତର୍କତା ଅବଲମ୍ବନ ପୂର୍ବକ ସନ୍ଦେହ ।

ଲିଫ୍ଟ଼ଲକ୍ଷ ଦୁଆର ମୁହଁଠି ହେସ ଅଟକିଗଲା। ମୁଁ ଯାଇ ଦେଖିଲି। ଦୁଆର ମୁହଁ ଖୋଲିଗଲା। ଥଣ୍ଡା ପବନ, କାଳୁଆ ପବନ, କୋହଲାପାଗ ଓ ଘନ ଅନ୍ଧାର କୁହୁଡ଼ି ଚଳା। ଆସିଲା ଦାର୍ଜିଲିଙ୍ଗ ମନ୍ଦ ମୁଷଳ ଧାରର ବର୍ଷା। ହିମାଳୟ ଅନ୍ତ ସନ୍ଧ୍ୟା-ଚାଲିଲା ନାହିଁ। କାଠ ପଡ଼ାଇଲି। ଲଢ଼ଗଡ଼ିଲି। ଡକାଯାଇଥିବା ଗାଡ଼ିଲା ପାଗଲା ଥନ ଡାକ ହେଉ ଅଛିକି। ତଳେ ଗାଲିରୁ ଓହ୍ଲାଇ ବାଟ ପାଟୋଇ ନେଲି। ମୋଟରରେ ପାହାଡ଼ ଦେହରୁ କଟାଯାଇଥିବା ରାସ୍ତା ଅଧରମାର୍ଗ। ସାମନାକୁ ଓହ୍ଲାଇଆ ରାସ୍ତା ଖୋଲ। ପାଖରେ ଅଛି ଦୂରତା ସୂଚକ ଖୁଣ୍ଟି। ଲେଖାଅଛି ପ୍ରାଣର ଦେବ ଲିପିରେ। ଛାନଗାମୀ—୧୩ ମାଇଲ

ଗୋଟେ ଡିଗ୍ରୀ ଛାଡ଼ିଲି। ନିଶ୍ୱାସ ଛାଡ଼ିଲି। ସର୍ବାଙ୍ଗରେ ବିଦ୍ୟୁତ୍ ଖେଳିଗଲା।

ଭାରତ କହିଲେ କଣ ମୁଁ ଜାଣି ନଥିଲି। ଅନେକ ଦିନର ପ୍ରବାସ ପରେ ଓଡ଼ିଶାକୁ ବା ଗାଁକୁ ଫେରି ମୁଁ ସେପରି ଅନୁଭବ କରିନଥିଲି। ପ୍ରତ୍ୟେକ ଜାଗା ମୋତେ ପ୍ରାୟ ସମାନ ଲାଗୁଥିଲା। ଯାହା କିଛି ଫରକ ଥିଲା ସେଥିରେ ମନ ମିଳାଇ ଚାଲୁଥିଲି। ଜୀବନରେ ପ୍ରଥମ କରି ଅନୁଭବ କଲି ଭାରତ କଣ।

ଗୋଟେ ଡିଗ୍ରୀ ଛାଡ଼ିଲି। ମନରେ ବିଦ୍ୟୁତ ଖେଳିଗଲା ଦେହରେ ଶତସିଂହର ବଳ ଆସିଲା। ମସ୍ତ ହୋଇ ଉଠିଲି।

ଉଠାଣି ଯାଇଛୁ ଗଡ଼ଣି ଆସିବ, କଷ୍ଟ ହା ସଂଗତଲ ଅଛୁ ।

ଠେଲ ପେଲ ଭିଡ଼ ଟଁାର ଡେରନ

ହୋକବା ଯାଉଛୁ । ଦମ ପାଖଲ ତଯ ନେଲ । ଦୁଇ ଗୋଡ

ାର ଠିଆହେଲ । ଝର୍ ଝର୍ ଝର୍ ବର୍ଷା ଡ଼ୁଚି ।

ହୁରତ ମୋତେ ସମ୍ମୁନେ ଅହ୍ୱାନ

ସନାତନ ଭାରତର ଚିରନ୍ତନ ସେନାନାୟକ ହିମାଳୟ

ତ ମସ୍ତକ ଦେଖାଇ ଝଡ଼୍ ଗତରେ ଭୂଇଁ ଛୁଇଁ ଅଭିବାଦନ

ଜଣାଉଛି ଆହ୍ୱାନ କରୁଛି ।

ଝର ଝର୍ ଝର୍ ବର୍ଷା ହେଉଛି ।

ମୁଷଳଧାରରେ ବର୍ଷା ପାଣି ଖମ୍ବରର ଦଣ୍ଡାୟମାନହୋଇ

ସଙ୍ଗୀନ ପରି ଝ୍ରୁକୁଛି ।

ଚିରଶ୍ରେଷ୍ଠ ବପୁବନ୍ତ ହିମାଳୟର ଅଧିନାୟକତ୍ୱରେ ଏହି ଅଗଣିତ ଅକ୍ଷୌହିଣୀ ମୂର୍ତ୍ତିମନ୍ତ ଧବଳପୃଷ୍ଠ ସଂଘଦରେ ନେଇ ସ୍ୱାନ ଜଠେଣ ଜଟ ଅସ୍ତ୍ର ଧରି ମତେ ସାମରିକ ସମ୍ମାନ ଜଣାଉଛନ୍ତି ତତ୍ ସଙ୍ଗେ ବାଜୁଅଛି ଗ୍ରୀଷ୍ମ ବାଦ୍ୟ—

ଝଁପର ଝଁପର ଝଁପର ଝଁପର ଝଁଝର ଝଁଝର ଝାଉଁ

ଝାଇଁ-ଝାଇ-ଝାଇଁ

ସେଇ ବାଦ୍ୟର ତାଳରେ ଉନଞ୍ଚିବା ଢଙ୍ଗରେ ଧୀର ପଦକ୍ଷେପରେ ପାଦ ପକାଇଲି । ଶ୍ରମ ଦୂରେଇ ଗଲା । ଗଡ଼ାଣି ଆରମ୍ଭ ହେଲା

ଗୋଡ଼ ଫିଟିଲା ଓ ସମ ତାଳରେ ଚାଲିଲି ।

ଲେଫ୍ଟ ରାଇଟ ଲେଫ୍ଟ ରାଇଟ,

ଲେଫ୍ଟ ଲେଫ୍ଟ

ନେଃ—ଘଇ—ନେଃ

ଅନ୍ଦରର ଗୃହ ପାଖ ବାଙ୍କ ଅଗଟର ଅନ୍ୟମାନେ ଯାଉଥିଲେ ସେଠଙ୍ଗା ଅଦ୍ଭୁତ ଧ୍ୱନି ଟେନେକଣ ବକ୍ଷ ଗୃହଁଲେ ଯୋଉ ଚିତ୍କାର ଓ ଗୃହଟରେ ଡାକ ଦେବା ସେମାନେ ଶୁଣିଛନ୍ତି ।

ରାକଦେବା ସଙ୍ଗେ ସଙ୍ଗେ ମନ ଭିତରୁ ଜନ୍ମିଲା ଆସିଲା ମୁଣି ବଇଁଶିର ଧ୍ୱନି

ଉର୍ଦ୍ଧ୍ୱେ ଗଗନେ ବାଜେ ମାଦଳ
ନିମ୍ନେ ଉତଳା ଧରଣୀ ତଳ୍

ଗୀତ ସେତିକ, କନ୍ଦୁ ଧ୍ୱନି ଗୃହଛି, ମୃ ମଧ ଗୃହଛି କ ମଧୁର ସେହି ଧ୍ୱନ୍, ସେ ଧ୍ୱନ୍ ରେ ଉନ୍ମାଦନା ଅଛି । ସେହି ଧ୍ୱନ୍ ସହିତ ମିଳାଇ ଗୀତ ଗାଇଲ ।

ଲଙ୍ଗି ଆସିଛି ଗୀତ ଧୁବାର

ଅଥାଯ ଯେତେ ପାଉଛି ସେତେ ଉତ୍ସା ଅଛି ଜାଏ ଭାନ୍ଦାର । ଅନୁଭୂତର ଉପମା ନାହିଁକ ତୁଳନା ନାହିଁ । ଚହାଣି ନର୍ତ୍ତନ, ବେଗ ବଢ଼ିକ । ପଦକ୍ଷେପ ନାଚରେ ପରିଣତ ହେଲା । ଦୁଇ ପାଶକୁ ପରେ ପରେ ଆଗକୁ ମୋଡ଼ ନାଚିବାକୁ କରିଲ । ନାଚ କ୍ଷିପ୍ରତର ହେଲ । କ୍ରମେ ମନେ ହେଲ ଜଣେ ଚଢ଼େଇ ତିକଣ ପଣ ପଲକ ଭିତରେ ଏ ପାର୍ଶ୍ୱରୁ ଅପର ପାର୍ଶ୍ୱକୁ ଚଢ଼ାଭାରେ ହେଇଁ ପରେ ସାଥିରେ ନାଚୁଛି ।

ଆସିଲ ସଇତାନ ହତ । ପ୍ରକୃତସ୍ଥ ହେଲ । ଦୋହଲ ଟହଲ ଧିରେ ଧାଇଁ ଧାଇଁ ଅନ୍ୟମାନଙ୍କ ପାଖରେ ପହଞ୍ଚିଲ ।

ସେଠଙ୍କା ପଚାରିଲେ— କପଡ଼ ଅଛି ?

— ବେଶ୍ ଭଲ ଅଛି । ଭୁବନକୁ ଆସିଗଲେ ଅନ୍ୟ ଚିନ୍ତା କଣ ।

ମୋର ପୂର୍ଣ୍ଣକୃତକଳଙ୍କା ବଖରାରେ ସେଠଙ୍କା ଆସି ବସିଲେ ।

ମୋର ବର୍ଣ୍ଣାଢଟି ଥିଲା କୁଣ୍ଡା ମେଲଙ୍କା । ମୁଣ୍ଡ ଢାଙ୍କୁଣି ନଥିଲା । ସେ ବର୍ଷାରେ ତାଙ୍କ ନିକଟ କାହାର ଦେଉ ନଥିଲା । ସଦ୍ଭାବ ନଦ ସ୍ୱାମୀ ମୁଣ୍ଡ ଢାଙ୍କୁଣି ଉପରେ ମିଲିଲ ଭାଗକର ଠୋଙ୍ଗା ଗୋଟିଏ ଦେଇଥିଲେ । ଏଭ ଚତୁରଣ ଯୋଗାଡ଼ ଜଲ ବୁଝି । ସେଇଟା ତାଙ୍କୁ ପାଗିଲ ।

ସେ— ମୁଁ ଆଜ କଣ କରିବ ?

ମୁଁ— ଭୂମରଭ ମୁଣ୍ଡ ଢାଙ୍କିବା ପାଇଁ ଗୋଟେ ଅଛି ।

ସେ— ଆଚ୍ଛା ନେଇଯାଅ । ଏପରି ପରିସ୍ଥିତି ପାଇଁ ମୁଁ ତାକୁ ସାଇତି ରଖିଥିଲ ମୋର ଯେତେବେଳେ ଚଳୁଛି,ଅନ୍ୟର କାମରେ ଆସିଲେ ଅପତ୍ତି ବା କଣ ? ବରଂ ଭଲ । ପାଇର ଦେଇଦେବ ।

ପଦକ୍ଷେପ ଥିଲା, ନାରୀକୁଳବା ନା ଧାଇଁବା ଓ ସମସ୍ତଙ୍କ ଆଗରେ ଅନାୟାସରେ ସେଦିନ କାଳପାଣିରେ ପହଞ୍ଚି ଥିଲ ।

ତର୍କବଜାୟୁ ଜଣକ କନ୍ଲୁ ମୋ ଆଗରେ ପହଞ୍ଚି, ଗୋଡ଼ ହାତ ସାଙ୍କୁଡ଼ି ଦୈନ୍ୟ ଭାବଦେଖାଇ ଯାଞ୍ଚ ଅର୍ଗଳ ଆଗରେ ବସି-ଥିଲ । ଦତ୍ତାନନ୍ଦସ୍ୱାମୀଙ୍କୁ ବାଦ ଦେବା କଥା ।

ବାହୁଡ଼ା—କାଳପାଣି

(ଗୃଲିଛି—୨୪୫+୧୨=୨୫୭ ମାଇଲ)

ସେଦିନ ସ୍ଥଭରେ ପରିକ୍ରମା କରିବା ପାଇଁ ବସ୍ଥିଦ ଦେଲି । ସ୍ଥିରବା ନେଇ ବହୁତ ଯେ, ତାକୁ ତଳ ଜାଣିଥି ଓ ବେଳବା

ଆସିବ ନାହିଁ । ଚକ୍ରବର୍ତ୍ତୀ ଦେଲ, ଛାତ୍ରଙ୍କୁ ଗରମ କରି ଘିଅ ଲଗାଇ ଓଲଟ ପାଲଟ କରିବାକୁ କହିଲେ । ଲୁଣ ଲଙ୍କା ଦେଇ ମନମୁଗ୍ଧ ତୃପ୍ତିରେ ଗୁଡ଼ ପାଉଁଟି ଖାଇଲୁ । ମନ ଆନନ୍ଦ ଥିବାରୁ ବୃଷ୍ଟି ଦଶିଥିଲା । ଏ ବୃଷ୍ଟି ପଦ ଅଟେରୁ ମୁଣ୍ଡରେ ବଶିଥାନ୍ତା ଟେକ୍ରବନ ରହିଣି କାଳରେ କେତେ କଷ୍ଟ ହୋଇ ନ ଥାନ୍ତା ।

ରାତିରେ ଖୁବ୍ ବର୍ଷା ହେଲା । ତମ୍ବୁ ଭିତରକୁ ପାଣି ପଶି ଆସୁଥିଲା । ସଇସ ମାନଙ୍କୁ ଦୁଇ ତିନି ଥର ଡ଼ାକିବା ପରେ ଆସିଲେ । ତମ୍ବୁ ଚାରିପଟେ ଦୁଇ ତିନି ଇଞ୍ଚର ନାଳ ଖୋଳା ଟାଣି ଜଳ ବାହାରିବାର ବାଟ ସୁଗମ କରାଯାଇଥିଲା । ଏ ଏକ ସଉଁ ଥିଲା ।

ଦୁଇ ଜଣ ଜବାନ ତମ୍ବୁ ଭିତରକୁ ଆସି, ପରେ ପରେ ଆମ ଦୁହିଁଙ୍କୁ ମୁଣ୍ଡିଆ ମାରିଲେ । ଜଣେ ସେଥିରୁ ଏକ ତିନି ପଟି-ଆଳ ଥିଲା । ଆମ୍ଭ ଦୁହିଁଙ୍କୁ, 'ତୁମେ ସାଧୁ କି ନୁହଁ ?' ବୋଲି ପଚାରିଲା । ସଦାନନ୍ଦ ସ୍ୱାମୀ ସନ୍ୟାସୀ ଓ ମୁଁ ଗୃହୀ ବୋଲି ଜଣାଇଲୁ । ସେଠୁ ସେ ସ୍ୱାମୀଙ୍କୁ ଗୋଟିଏ ଦୁମ୍ବ କିଣି ଭେଟି ଦେଇ ଥିଲା । କହିଲା— ଆମର ତ କାମ ହେଲା ମାରିବା, ଅର୍ଥାତ୍ ତାମସିକ ଧର୍ମ । ଆମେ ଆଜ କଣ ଧର୍ମ କରିବୁ ?

ମୁଁ (ଟିକିଏ ଉପରେ ପଡ଼ି)— ତୁମର ଏ କର୍ମ ତାମସିକ ନୁହେଁ—ରାଜସିକ । ରାଜସିକ ଧର୍ମ ବିନା ସାତ୍ତ୍ୱିକ ଭାବ ଆସି ନ ପାରେ ।

ସ୍ୱାମୀ— ନାହିଁ, ତୁମର ଧର୍ମ ତାମସିକ ।

ମୁଁ— ଜଣକୁ ଏପରି ମାରିବା ହେଉଛି ତାମସିକ । କିନ୍ତୁ ଯୁଦ୍ଧରେ ମାରିବାଟା ରାଜସିକ । ଗୀତାରେ କୃଷ୍ଣ ସେଇଆ କହିଛନ୍ତି ।

ସ୍ୱାମୀଜୀ— ମୁଁ କହୁଛି ତୁମର ଧର୍ମ ତାମସିକ ।

ଭଥାନ୍ତାରେ କୋର ନଥିଲେ ମଧ୍ୟ, ସନ୍ୟାସୀ ଥିବା ହେତୁ ତାଙ୍କର କଷ୍ଟବାନ୍ଥା ବେଦର ଗାର— ଏଇ ସବ ଦେଖାଇ ଦଉ ଥିଲେ । ମୋର କଷ୍ଟବାନ୍ଥା ଅନଧିକାର ଓ ଅନାବଶ୍ୟକ ଥିଲା । ସାଥିଙ୍କ ବାକ୍ୟ ମୋଲ ଲେକେନ୍ତି ନେତ୍ରମୌକୁ ଦାଣ୍ଡେଦେହାର ଗ୍ରହଣ କରିଥିଲ । ଟେଉ୍ଅ ହଟା ମୋ ତଳୋସୁ ଯୁକ୍ତକୁ ଉଡ଼େଇ ଦେଲ । ଲେକେନ୍ତି ମୋତେ ପିଠି ଧରି ସ୍ୱାମୀଜୀଙ୍କୁ ମୁହଁ କରି କଥାବାର୍ତ୍ତା କଲ । ମୁଁ ମୁହଁ ମୋଡ଼ି ଶୋଇପଡ଼ିଲି ।

କାଲାପାନୀ ଛାଡ଼ିଲୁ, ଜୁଲାଇ ୧୧—

ସେଦନ ଧାର ସୁନ୍ଦର ଥିଲ । ଅବୋହିଆ ପଥରେ ବେଲ ବୁଢ଼ିଆ ଗାଁ ଚାଲୁଡ଼ା ଗୃଲ ଗୃଲଥିଲ । ଅଗେଇଲ ସମସ୍ତଙ୍କୁ ବାନ୍ଦରେ ଭେତେଇଟି ସୁବର୍ଣ୍ଣୀୟ ଉଦ୍ଧୋତ ଯାଗା ଥିଲ ତାହା ଫେରିବାସମୟରେ ସନ୍ଧ୍ୟାବାଧ ହୋଇ ମ୍ୟସନ୍ତୁଡଦଗୃଲନାରେ ଅର୍ଜି ଥିବାଷମନ୍ତାସୂର୍ଯ୍ୟଇଦେଜ ଥିଲ । ଗର୍ବିୟାଙ୍ଗ ମୁଣ୍ଡରେ ନଷ୍ଟଉପରେ ପୋଲ ଶେଷରେ ଗୋଟିଏ ଗୁମ୍ଫା ଭିତରେ ଜଣେ ବସିଥିଲ । ପଚୃଲ— ଅନ୍ୟମାନେ କାହାନ୍ତି ? କହିଲି— ପଛରେ ଆସୁଛନ୍ତି ।

ସେ ମୋ ସାଥିରେ ଚାଲୁଡ଼ିଲ । ମୋ ଠାରୁ ଯାହା ଖବସ୍ତରେ ଶୁଣିଲ । ତା ପାରୁ ଜାଣିଲଯେ, ସେ ଡେକ୍ ପୋଷ୍ଟ ତରଫରୁ ସେଠାରେ ବସି ଯିବା ଆସିବା ଲୋକଙ୍କ ଉପରେ ନଜର ରଖି ଥାଏ । ଏହେ ସତର୍କ ଅବଲମ୍ବନ କରି ମଧ୍ୟ ଅଘଟଣ ଘଟେ ।

ବାହୁଡ଼ାବାଟେ ଗର୍ବିୟାଙ୍ଗ—

(ମୁଲ୍ଲ ୨୨୭+୯=୨୨୭ ମାଇଲ)

ଗର୍ବ୍ୟାଙ୍ଗରେ ପହଞ୍ଚିବା ମାନେ ମନର ଉଦ୍ବେଗକ ପ୍ରାପ୍ତ । ଯାବାର ଅସଲ କଷ୍ଟକର ପର୍ଯ୍ୟାୟଟି ଶେଷ । ତୀର୍ଥ ଯାତ୍ରା ଶେଷ ।

ମନ ଭିତର ଝଟାଝଟି ଚାଲି । ଅସ୍ୱସ୍ତି ବୋଧ ହେଲା ।

ଗର୍ଭିଣ୍ୟାଙ୍ଗରେ କୁଲି ବଦଳାଇବାକୁ ପଡ଼େ । ଯେଉଁମାନେ ଠାକୁରଙ୍କଠୁ ଜିନିଷ ନେବା ନେଇ ଆଣିଥାନ୍ତି ସେଇମାନେହିଁ ଫେରିବା ସମୟରେ ନେବା ନେଇ ମୂଲରେ ଲାଗନ୍ତି । ସେଥିପାଇଁ ଦୁଇ ଦିନ ଅପେକ୍ଷା କରିବାକୁ ପଡ଼ିଥିଲା । ଅବଶ୍ୟ ଜଣେ ଦୁଇ ଜଣ ସ୍ଥିତି ଥିଲେ । କିନ୍ତୁ ମୋର ମୋଟ୍ଟଲ ଟେହିଆ ଓଜନ ଉଠାଇବାରେ ଅକ୍ଷମ । ନିଷ୍ପରେ ଦଳେ ଆସିଲେ, ଓ ଦଳଟି ଏମାନଙ୍କର ସମ୍ପ-ଦାୟ ଜିନିଷ ଉଠାଇବା ପାଇଁ ବଡ଼ ଥିଲା । ସେମାନଙ୍କ ମଧ୍ୟରୁ ଜଣେ ଅଧ ମାହ୍ୟଣ ଦରରେ ମୋର ଜିନିଷ ଉଠାଇ ଥିଲା । ମୁହିର ସେର କମ୍ ଥିବା ହେତୁ ଲଳିତା ବଡ଼ାଲ ରହୀମଙ୍କ ଧର୍ମ ତାକୁ ପ୍ରଭାବିତ କରିଥିଲା । ଅଜ ଅଧ ମହଣେ ସେମାନଙ୍କ ଠାରୁ ଉଠାଇ ଥିଲା । ସେହେତୁ ଏହି ପର୍ଯ୍ୟାୟରେ ମଧ ଏମାନଙ୍କ ସାଥିରେ ଯିବାକୁ ପଡ଼ିଥିଲା ।

କଟଖମାର ସ୍ୱଭାବ ଦେବାରେ ବିଷ୍ଣୁ ମନ ଭାବ ହୋଇ-ଥିଲା । ବାଟ ଦେଖାଇବା ପାଇଁ ଗାଇଡ଼ ମୂର୍ଜ ଓ ମେଘ୍ନ ପୋତିବା ଇତ୍ୟାଦି ପାଇଁ ସାର୍ଭିସେସ ମୂର୍ଜ ଅଧିକା ମୁହିଁଥିଲା । ଯିବା ସମୟରେ ଛଥାବାଡ଼ୀ ତଥା ଚୁକ୍ତିରେ ଏସବୁ ନଥିଲା । ମୁଁ ବେକ୍ଟୋକ୍ ମନା ଭିତ୍ରିଦେଲି ।

କିନ୍ତୁ ସେ ରାମଦାସ ବାବାଜୀଙ୍କର ବାଦ୍ଧତା ଅଣ୍ଟାମୋନଣର ପଇସା ନେଇ ନଥିଲା ।

ଏପରି ସମୟରେ ଭଗବାନ୍‌ଜୀ ମୋତେ ଆସି କହିଲେଯେ, ମୋର ଯାହା ଖର୍ଚ୍ଚ ହୋଇଛି ତାହା ସେ ଦେଇଦେବେ ।

ମୁଁ ନେତ୍ରକଟୋକ୍, ମନା କଲି, କହିଲି—

ମୁଁ ତାହା ଠାରୁ ଗ୍ରହଣ କରେ ନାହିଁ, ଯେଣୁ ମୋର ନିୟମ — ଧର୍ମ । ଏଠନ ଦୁଇ ଦିନ ପରେ କର୍ମ ଶେଷକରୁ ଟଙ୍କା ଆସିଯିବ ଓ ସେ ମୋର ଯଥେଷ୍ଟ ହେବ ।

ସେ— ଆସି ନ ପାରେ ।

ମୁଁ— ଯେପରି ବନ୍ଦୋବସ୍ତ ହୋଇଛି ସେଥିରେ ହ୍ରିର ବାଟ ନାହିଁ । ନ ହେଲେ ମଧ୍ୟ ଅଟ୍‌କୋଟ ବା ଅଲମୋଡା ଯାଇ ମଗାଇ ଦେଇ ପାରିବି ।

ସେ— ଆପକୋ ଲେନା ହୋଗା ।

କଥାଟାରେ ଆଦେଶ ଥିଲା ଭଳି ମୋତେ ଲାଗିଲା ।

କହିଲି— କେଁୟା ଲେଗା ?

ସେ ସେଠୁ ମୋର ଗୋଡ଼ ଧରି ପକାଇଲେ ଓ ଅନୁନୟ ବିନୟ ଢଙ୍ଗିରେ କହିଲେ—

ପହିଲେସେ ହି ସୋଚ ଲିୟା ଥା ।

ବୁଝିଲି କେବଳ ସଂକଳ୍ପ କରି ପକାଇଛି ଓ ଜଣାଗଲା ବାହ୍ୟିକ, ଗୌରୀକୁଣ୍ଡ ପୂର୍ବରୁ ମୋତେ ଏତେ କଷ୍ଟ ହୋଇଥିଲା ଓ ତାକୁ ଆଜ୍ମା ରୋଗ ଥାଇ ମଧ୍ୟ ଅତେବୀ କଷ୍ଟ ହୋଇ ନଥିଲା । ତାର ସଂକଳ୍ପକୁ ଭଗବାନ ସ୍ୱୀକୃତି ପ୍ରଦାନ କରି ସାରିଛନ୍ତି । ମୁଁ କେବଳ ନିମିତ୍ତ ମାତ୍ର, ଗ୍ରହଣ କରିବାଟା ଯାହା ବାକି ଅଛି । କିଛିଏ ସହାନୁଭୂତି ମଧ୍ୟ ଆସିଲା । ତେବେ ସଂକଳ୍ପ ରକ୍ଷା କରିବା ସମାଜର ପଥ ପ୍ରଦର୍ଶକ ବ୍ରାହ୍ମଣର କର୍ତ୍ତବ୍ୟ — ଏକ ସଠିକ ଧର୍ମ । ମଣିଷ ସଂକଳ୍ପ କରେ । ଦୁଇ ଗୋଡ଼ିଆ ପଶୁ ପ୍ରବୃତ୍ତି ଅନୁସାରେ କାମରେ ମାତି ଯାଏ । ଅତ୍ୟଧିକ ମାତ୍ରାରେ ଦୁଷ୍ଟୁର ପଦ ବାଚ୍ୟ

ପାଉଥାଏ । ସେତେବେଳେ ହୃତଭାବର ଉପଦେଶ ଓ ପ୍ରକୃତ ସୁଖ ଦାୟକ ଓ ଶାନ୍ତିଦାୟକ ଧର୍ମ ପାଳନ ଉଦାସୀ ଭଳିଆ ଅଧ୍ୟୟୋ-ଜମାସ୍ତ ହୋଇଥାଏ । ଯଦି କନ୍ନଗତ ଦୋଷ ଥାଏ ସ୍ୱଷ୍ଟ ଭଳିଆ ହିଂସ୍ର ହୋଇ ବା ଶଠତା ଦେଇ ପ୍ରତିଶୋଧ ନିଏ ।

ପଚ୍ଛନ୍ଦିଲି— କଣ ମତେ ଦେବା ପାଇଁ ?

ସେ— ହଁ ।

ଦେଖିଲି ମୋରତ ତାର ସଂକଳ୍ପ ହେବ ଜଗତ ହେବାକୁ ହେବ । ମୋ ବାଟ ମୁଁ ଖୋଜିଲି । କହିଲି— ନେବ, କିନ୍ତୁ ଭଗବାନ ଦେଲେ ବୋଲି ଭାବ ।

ସେ— ଆପଣ ଯେପରି ଭାବନ୍ତୁ ନେଲେ ହେଲା ।

ଉଭୟ, ଆନନ୍ଦ ଓ ଭୟ ସହିତ ସମ୍ମତ ଦେଇଥିଲି । କିନ୍ତୁ କିଛିଟା ଅସ୍ୱସ୍ତି ବୋଧ କରୁ ଥାଏ ।

ସେ— ତୁମର କେତେ ଲାଗିବ ?

ମୁଁ— ଅଠାଅଶି ଟଙ୍କା ଆଠଅଣା ।

ମୁଁ ଯେତେବେଳେ ମଦୁଣ୍ଡରା ପରେ ପରେ କଟଖଣ୍ଡାର ପଇସା ପେଠ କରି ଚାଲି ଯିବାକୁ ଚାହୁଁଥିଲି ସେ ତରବରିଆ ହିସାବ କରି ସେତିକି କହୁଥିଲେ । ଦେଇ ଦେବାକୁ ଚାହୁଁବାରୁ ଧନ ଖଟଣ୍ତ ଅଛ, କୁଲି ମିଳିବା ପରେ, ଗଲା ବେଳେ ଦେଇ ଦେବ, ବୋଲି କହୁଥିଲେ ।

ଏ ଭିତରେ ପକ୍କା ହିସାବ ହେଲା ।

ଏକ ମହଣର ଯୋଡ଼ା ପିଠିରେ ବୋଝେଇ ଭଡ଼ା ଦୈନିକ

| | | |
|---|---|---|
| ଗୃହ ଟଙ୍କା ହିସାବରେ ୧୯ ଦିନ ପାଇଁ | | ୭୬-୦୦ |
| ଦିନକ ପାଇଁ ଡୋଲ୍ଡାରେ ରହିଥିବା ହିସାବ | | ୨-୦୦ |
| ଗୋଟିଏ ଚେଲ୍ଲା ଘୁଲର ଭଡ଼ା | | ୩-୦୦ |
| ଗୋଟିଏ ଟ୍ରକ୍ ଭଡ଼ା | ୧୬ ÷ ୨ | ୮-୦୦ |
| ଟୋଲ୍ ପାର ଭଡ଼ା | | ୫-୫୦ |
| ମୋଟ | | ୯୮-୫୦ |

ଟଙ୍କା ଦେବାକୁ ମୁହିଁ ବାକୁ,ସେମାନଙ୍କ ହିସାବ ସରିଲା ପରେ ନେବ ବୋଲି କହିଲି ଓ ବୁଝାଇ ଦେଲ ଯେ, ଆହୁରି କିଛି ମଧ୍ୟ ଦେବାକୁ ପଡ଼ିପାରେ— ସର୍ଭିସେସ ଓ ଗାଇଡ୍ ଗୃହ ବାବଦକୁ ।

ମୁଁ— ସେ ପୁଣି କଣ ?

ବୁଢ଼ା ବୁଝେଇ ଦେଲା ।

— ସେ କଥାତ ଆଗରୁ କହି ନ ଥିଲ ।

— ଯାହା ସରିଗଲାତ କହିବ ନାହିଁ କାହିଁକ ।

ପଛ ପରିବର୍ତ୍ତିନ । ଭଗବାନ୍ଙ୍କ ଆସିଲେ ।

— ଭୃମଣ ଭେତରେ ଲଗିଲା ।

— ସାଢ଼େ ଅଠାନବେ ଟଙ୍କା ।

— ଆଗେ ତ'ଣ ଅଠାଅଣି କହୁଥିଲେ ?

— ହିସାବ ଭୁଲ ଥିଲା । ଏବେ ସେ ଆହୁରି ବଢ଼ାଇ ସେବା ଓ ବାଟ ଦେଖାଇବାର ମୂଲ ମାଗୁଛି ।

— ସେ ସବୁ କିଛି ଦେବ ନାହିଁ ।

— ନା, ସେ ସବୁ କିଛି ଦେବ ନାହିଁ ।

ସେ "ଅଚ୍ଛା ନଅନ୍ତୁ" କହି ଗୋଟିଏ ଛୁଣ୍ଡ' ପଇଲା ଖଣ୍ଡ ଟଙ୍କିଆ ନୋଟଟିଏ ବାହାର କରି ଧରାଇ ଦେଲେ ।

— ବଲଭାଷ୍ଠା ଦେଉଛି ।

— ଥାଉ, ଏ କଥା ଆଉ କାହାକୁ କହିବ ନାହିଁ ।

ମୁଁ ସ୍ୱୀକୃତ ଜଣାଇ ମୁଣ୍ଡ ନାଡ଼ିଲି ।

ଏହା ପରେ ଘୋଡ଼ା ବାଳକ ଭିତରୁ ଜଣେ ଆସି କହିଲା —

ସଦାନନ୍ଦ ସ୍ୱାମୀ ତୁମକୁ ଡାକୁଛନ୍ତି । ତୁମେ କିଛି ପଇସା ତାଙ୍କ ଅଙ୍କ କରାଇ କହିଥିଲେ । ସେ ମୋହନ ସିଂ ଗଡ଼ୱାଲ ଘରେ ରହିଛନ୍ତି ।

— ତାଙ୍କ ପଇସା ? ମୁଁ ତ ତାଙ୍କଠୁ କିଛି ନେଇ ନାହିଁ ।

— ମୁଁ ସେ କଥା କିଛି ଜାଣେନା । ତାଙ୍କର କିଛି ଜନିଷ ଦରକାର କରାଇ କହିଥିଲେ ।

ମୁଁ ସାଙ୍ଗେ ଉଠି ଥିଲି । ଦଣ୍ଡାସ୍ୱାମୀନନ୍ଦଜୀ ଡାକି କହିଲେ —

ଦେଖ, କୈଳାସ ଭ୍ରମଣ ପରେ ଏପରି ଅବସ୍ଥା ହୁଏନ ସଦାସ୍ୱ ଅଣିଷ ଏକକଳ ରଙ୍ଗ ବଦଳାଏ ନତୁବା ସଂସର ପାଳଟି ଯାଏ । କଥାଟା ବେଶ୍ଠ । ସବାବା ଅନୁଚିତ । ଦୁଇ ଶୃଟ ପଇସା ମାତ୍ର କଥାଟାକୁ ଶାନ୍ତ ପୂର୍ଣ୍ଣ ଭାବରେ ମିଟ୍‌ମାଟ କରି ଦିଅ ।

ମନେ ପଡ଼ୁଥିଲା ଗୋଟିଏ ଗପ । ଦୁଇଟି ଭାଇର ଦୁଇଟି ପରିବାର । ମୁସଲମାନ । ପଞ୍ଚା ଅଣ୍ଡା । କୁକୁଡ଼ା ପାଳି ଥିଲେ । ଜଣକର ଦୁଇଟି ଅଣ୍ଡା ଅପର ପରିବାର ଦ୍ୱାରା ନଷ୍ଟ ହୋଇଗଲା । ଦୁଇ ଭାଇ ଭିତରେ ବଚସା ହେଲା । ସଙ୍ଗାସଙ୍ଗିରୁ ଉପୁଜିଥିଲା କଳହ । ଜଣେ ଦା'ଟିଏ ଧରି ଅପରଟିର ବେକ କାଟିବାକୁ

ଜନ୍ମିତ ହେଲା । ଯେତେବେଳେ ତାହାର ଅତି ଆଦରର ଝିଅଟି
ଅଣ୍ଟିରେ ଗୁଡ଼ାଏ ଝିଣ୍ଟି ଆଣି ବଡ଼ବାପାଙ୍କୁ ଦେଖାଇ କହିଲା —
ଦୁଇଟି ଅଣ୍ଡା ପାଇଁ ପିନା ଏତେ କଳହ, ନିଅନ୍ତୁ ଏ ସବୁ ତୁମ୍ଭ । ଦାଦ
ଝିଅଙ୍କୁ କୁଣ୍ଢାଇ ଧରାଇଲେ ଓ ଦୁଇ ଭାଇ ମଧ୍ୟ ପରସ୍ପରରେ ।

କଥାଟି ହୃଦୟଙ୍ଗମ ହେଲା । ତାଙ୍କୁ ଜବାବ ଦେଲି ଯେ
ଶାନ୍ତି ନେମନ୍ତି ନ ଜପୁଛେ ସେଥିପାଇଁ ଭଗବ ଓ ଭିତରେ ଅହଂ-
ଭାବ ପଶିବାକୁ ପ୍ରଶ୍ରୟ ଦେବ ନାହିଁ । ଅନ୍ୟ ଲୋକଙ୍କଠି ସ୍ୱପକ୍ଷ
ପ୍ରବୃତ୍ତି ଗଢ଼ିଉଠିଥିବା ଦେଖି ସେଥିପାଇଁ ମୋର ବେଶି ଭୟ
ଥିଲା । ମନ ଶତ୍ରୁ ହେଲା ସବୁଠାରୁ ବଳିଷ୍ଠ ଶତ୍ରୁ । ବାହ୍ୟ ଶତ୍ରୁକୁ,
ସେ ଯେତେ ବଡ଼ ହେଉନା କାହିଁକି, ଇଚ୍ଛାକଲେ ପ୍ରତିହତ କରା-
ଯାଇପାରିବ । କିନ୍ତୁ ମନଶତ୍ରୁକୁ ପ୍ରତିହତ କରିବା ଅତି କଷ୍ଟ ବ୍ୟାପାର
ମନଶକ୍ତି ଅପ୍ରତିହତ ହେଲେ ବାହ୍ୟ ଶତ୍ରୁ ଅନାୟାସରେ ଆୟତ୍ତ
ହୋଇଥାଏ । ମନ ଦୁର୍ବଳ ହେଲେ ଶତ୍ରୁ ପ୍ରବଳ ହୁଏ ।

ଗଲା । ଆଭିଜାତ୍ୟପୂର୍ଣ୍ଣ ସନ୍ନ୍ୟାସୀର ବାଣୀରେ ଆସନ୍ନ
କହି ଅଧିକ ଦେଲି । ବର୍ତ୍ତମାନ ସେ ଏକ ରମ୍ଭ ତଳେ ରହୁଥିବା
ସନ୍ନ୍ୟାସୀ ନୁହନ୍ତି । ଅଟନ୍ତି ନଗରଶେଠ ମୋହନସିଂ ଗଡ଼ବାଲଙ୍କ
ଭବନରେ ଆମନ୍ତ୍ରିତ ହୋଇ ଅବସ୍ଥାନ କରୁଥିବା ମହାନ୍
ନୈକାଷ ସେଁଭକ୍ତା ଅତିଥି । ଏପରି ଆମନ୍ତ୍ରଣ ନିଜ ତରଫରୁ
ଅନେକଙ୍କୁ ମନ୍ତ୍ରଣା ଦ୍ୱାରା ହୋଇଥାଏ । କୌଣସି ଅନୁଷ୍ଠାନ
ତରଫରୁ ନାଟକ ପରିବେଷଣ ଓ ଛାୟାଚିତ୍ର ପ୍ରଦର୍ଶନ ହେଲେ ଯେପରି
ହୋଇଥାଏ ।

ସେ ଗୋଟିଏ ପ୍ରାରମ୍ଭିକ ଭାଷଣ ଦେଲେ । ମୋହନସିଂଙ୍କର
ସହଧର୍ମିଣୀ ଜଣେ ଅତି ଭଲ ସରଳ ଦୟାଳୁ ସ୍ତ୍ରୀ । ଏଥିରେ ମୁଁ

ଏକମତ ହେଲା । ସେ ବୃଦ୍ଧ ଅନେକ ଧନ ନେଇ ଅନେକ ପ୍ରକାର ରୋଗରେ ଦେଖିଛନ୍ତି । ତାଙ୍କୁ କେହି ହେଲେ ଭଲ କରି ପାରି ନାହାନ୍ତି । ଏଇ ଏଇ ରୋଗକୁ ଦେଖି ସେହି ଔଷଧ ଦେଇ ସେ ଭଲ କରିଦେବେ । ସେହେତୁ ତାଙ୍କୁ ରହିବାପାଇଁ ଅନୁରୋଧ କରାଯାଇଛି । ବାଧ୍ୟ ହୋଇ ସେ ନିମନ୍ତ୍ରଣ ରକ୍ଷା କରିଛନ୍ତି ।

କଥାଟା ହୃଦୟଙ୍ଗମ କଲା ପରି ଅଭିନୟ କଲି ।

କହିଲି — ଆପଣ ମୋତେ ଡାକିଥିଲେ ଯେ ।

— ହଁ ତୁମେ ମୋତେ କିଛି ପଇସା ବାକି ଅଛ ।

— ମୁଁ ତ ଆପଣଙ୍କଠୁ କିଛି ନେଲା ଭଳିଆ ମନେ ପଡୁନି ।

— ତୁମେ ତଳ ଭୋଟରେ ବିକ୍ରି କରି ଯେଉଁ ଟଙ୍କା ଆଣିଛ ସେଥିରେ ମୋର ଭାଗ ଅଛି ।

— କାହିଁକି ? ମୋର ଜିନିଷ ମୁଁ ବିକ୍ରି କରିଛି ।

— ତୁମର ଓ ମୋର ଜିନିଷ ମିଶାଇ ରଖା ଯାଇଥିଲା । ସେଥିରୁ ତୁମେ ବିକ୍ରି କରିଛ ।

— ଦଶ ନଅରେ ମୁଣ୍ଡା ମୁଣ୍ଡି ହୋଇ ଯାଇଥିଲା ।

— ବିକିଲ ଯେତେବେଳେ ଦେବାକୁ ହେବ ।

— ତା' ହେଲେ ଅଧାକର ଭାଗିଦାର ହେବ ।

ସେ ମୁଣ୍ଡ ନାଡ଼ିଲେ ସତେକି ଯେପରି ମଙ୍ଗେଇବାକୁ ଚାହୁଁଥିଲେ । ଟଙ୍କାର ଗୋଟିଏ ସୀମା ଧାର୍ଯ୍ୟ କରିବାରୁ ମୁଁ କିଛିଟା ଅସ୍ୱସ୍ତି ବୋଧ କଲି । ମୁଁ ତାଙ୍କଠୁ ଜବାବ ଚାହିଁଲି-ହେଲାତ ?

ସେ— ହେଲା, ଅଧାଟା ଦିଅ ।

କେତେକ ବିକିଥିଲି ଓ ତାର ଅଧା କେତେ ହିସାବ ହେଲା ।

ନରମ ଗଳାରେ କହିଲେ—

ଆମେ ଦୁଇଜଣ ମିଶିକରି ଯାଇଥିଲେ । ମୁଁ ଶୁଣୁଛି ତୁମେ ଧାନ ସମ୍ପତ୍ତିରେ କେଉଁଠି ମୁଁ କଣ ଏଠି ଉଦାସ ଭଲଆ ପଡ଼ି ଥିବ

—(ମୁଁ ଏଇଆ ତେଲ ସାର) ତୁମର ମୋର ହିସାବ ତୁଟିଗଲା, ନା ଆଜି କଣ ଅଛି ?

— ହଁ ତୁଟିଲା । ଆଜି କିଛି ନାହିଁ ।

— କଣେମା କହୁଥିଲା, ସର୍ଟିପତ୍ର ଓ ଗାଈଡ଼ ଗୃର୍ଜ ଦେବାକୁ । ତୁମେ କଣ ଦେଉଛ ?

—ନା, ଆଉ ଦଳ ଦେଇନୁ, ଆମେ କାହିଁକି ଦେବା ?

— ତୁମର ମୋର ସାଙ୍ଗରେ ଟାଉ ଏଭ ରକମ ସତ୍ତି ଥିଲା । ତାକୁ ସେ ଗୃର୍ଜ ଦେବାକୁ ମନା କରିଦେଇଛି ।

ସେ ସନ୍ତୁଷ୍ଟ ସ୍ୱରେ ମୁଣ୍ଡ ନାଡ଼ିଲା ।

ମୁଁ ମନେ ମନେ ଆଶ୍ୱସ୍ତି ଅନୁଭବ କଲିଯେ ତାର ସଙ୍କୁଚିତ ସଂସର୍ଗରେ ଆସି ଯାହା କିଛି ଧର୍ମ ଅର୍ଜିଛି ତାର ଅବସାନ ଘଟିଲା । ଦିଆନିଆର ଭାବ ନ ଥାଇ ଦିଆ ନିଆ ଚାଲିଥିଲା ତା ସହିତ କର୍ମ ଅକର୍ମ ସମୂଳେ ପୋଛି ହୋଇଗଲା । ଦଣ୍ଡ ବୈଗ୍ରୁଇବା କଥାହିଁ ମଧ୍ୟ ମନେଥିଲା । ଶେଷରେ ଆମ ଭଗବାନ ମଧ୍ୟ ତ ଦଣ୍ଡଦାତା ।

ଦତ୍ତାତ୍ରେୟଜୀଙ୍କ ଉପଦେଶ ବେଶ୍ ହୃଦୟଙ୍ଗମ ହୋଇ ମନରେ ଚିରସ୍ଥାୟୀ ହୋଇ ରହିଲା । ସାମାନ୍ୟ କିଛି ବୈଷୟିକ କଥାରେ ନିଜର ଗୃହଲକ୍ଷ୍ମୀ ଆଣି ନିଜର ମନୁଷ୍ୟତ୍ୱ, ନିଜର ଦେବତ୍ୱକୁ ବଳିଦେବା ଅନୁଚିତ ।

କଚ୍‌ଙ୍ମୋର ପଇସା ଦେଇ ଦେଲ ।

ସଂଧାବେଳେ ପରଖ ଅର୍ଗଳା ଅଧକ୍ଷ ପରିବାରିକ ହୋଇ ଆସିଲେ, ଡ଼ାକ୍ତର ଓ ଗୋଇନ୍ଦା ସଙ୍ଗ । କଚଖମା ନାଲିସ୍ କଲ— ସବୁ ଦାଆନାଆ ହୋଇଗଲା, କିନ୍ତୁ ଇଏ (ମୋତେ ଦେଖାଇ) କିଛିଟା ପଇସା ଦେଇ ନାହାନ୍ତି । ଅଧକ୍ଷ ମେମ ଆଡ଼କୁ ସାମାନ୍ୟ ହସି ପ୍ରଶ୍ନବାଚକ ଚାହାଣି ଚାହିଁଲେ । ମୁଁ ସେଇଠୁ ତାହାଙ୍କୁ ଇଂରେଜୀରେ ବୁଝାଇବାକୁ ଲାଗିଲି । ଆରମ୍ଭ କରୁଛି, କଚ୍‌ଛମା କହିଲା— ଯାହା କହୁଛ ହିନ୍ଦୀରେ କହିଲେ ଆମ୍ଭେ ମଧ୍ୟ ବୁଝି ପାରିବୁ ।

ମୁଁ ସେଇଠୁ ରାଗି ଉଠିଲି ଓ ହିନ୍ଦୀରେ ଗୋଟିଏ ବକ୍ତୃତା ଝାଡ଼ିଲି —

ବାହାରିଲା ପୂର୍ବରୁ ଯେଉଁ ଚୁକ୍ତି ହୋଇଥିଲା, ସେହି ପରକାରେ ପଇଠ ହୋଇଛି । ଅଧିକ ସାର୍ଭିସେସ୍ ଓ ଗାଇଡ଼ ଚାର୍ଜ ଚାହୁଁଛି ଯାହାପାଇଁ ଆଗରୁ ଚୁକ୍ତି ନ ଥିଲା । ଥିବା ନ ଥିବାରେ ଯାଏ ଆସେ ନାହିଁ । କିନ୍ତୁ ମୋର ସେପରି କିଛି କାମ କରେନାହିଁ । ଗାଇଡ଼ କରୁଥିଲେ, ସର୍ଭିସ ଦେଉଥିଲେ ଅନ୍ୟମାନଙ୍କୁ, ସେମାନଙ୍କର ସାଥିରେ ଥାଏ । ହାଟ ଫାଙ୍କ ପାଖରେ ମୋ ପାଇଁ କେହି ନ ଥାନ୍ତି । ସେମାନଙ୍କର ସବୁକାମ ସରିଲା ପରେ ମୋ ପାଇଁ ଟିକିଏ ଗରମ ପାଣି ଆସେ, ତା ମଧ୍ୟ ଅନେକଥର ପାଚି ଭଲ ପରେ । କାମ ଅନୁଯାଇ ପଇଠ ହୋଇଥାଏ । କାମ ଉପଯୁକ୍ତ ନ ହେଲେ ଉପଯୁକ୍ତ ପଇଠ ହୋଇ ନ ଥାଏ । ଉପଯୁକ୍ତ ପଇଠ ନ କରିବା ଓ ଅନୁପଯୁକ୍ତ ପଇଠ କରିବା ମୋର ମତ ବିରୁଦ୍ଧ ।

ତାହାର ମୁହଁ ଶୁଖିଗଲା । ସେ ମଧ୍ୟ ଶହେ ଟଙ୍କିଆ ନୋଟ କଥା ଶୁଣିଛନ୍ତି ।

ଡାକ ଘରକୁ ମୋର ଟଙ୍କା ଆସି ନ ଥିଲା । ଆସିଲେ ବାହୁଡ଼େଇ ଦେବାକୁ ଅନୁରୋଧ କଲି ।

ଗର୍ଭିଣୀଙ୍କ ରନ୍ଧଣି ସମ୍ମୁଖରେ ଖାଇବାଟା ବେଶ୍ ତୃପ୍ତିକର ଥିଲା । ରାମଦାସବାବାଙ୍କର ରନ୍ଧା ଶେଷରେ ସେ ରନ୍ଧାଇଲା ପରି ମୋର ଡେକ୍‌ଚିରେ ମେଖଚୂଡ଼ା ବା ଖିର ରାନ୍ଧି ବେଶ୍ ତୃପ୍ତି ଜନକ ଭୋଜନ କରେ । ସେଥିପାଇଁ ଗୁଣ୍ଡ ଦୁଧ, ଚିନି, ଚାଉଳ, ଆଳୁ ଇତ୍ୟାଦି ବ୍ୟବହାର ହୋଇ ଥିଲା ।

ଗୋଟେ ଷ୍ଟୋଭ ଦକ୍ଷିଣାରୁ ଏ ଦସ୍ତା ଟିକଟ ପାଇଥିଲି । ରାମଦାସଜୀ ରାନ୍ଧୁ ଥିଲେ ଓ ଭଗବାନ୍‌ଜୀ ନିଆଁ ପୋଡ଼ୁଥିଲେ । ମୁଁ ମଧ୍ୟ ଭଗବାନ୍‌ଜୀଙ୍କ ଆମନ୍ତ୍ରଣରେ ନିଆଁ ପୋଡ଼ୁଥିଲି । କାଠ ନ ଜଳି ଧୂଆଁ ହେଉଥିଲା । ରାମଦାସଜୀ ଚେଷ୍ଟା କରି ଜଳାଇପାରି ନ ଥିଲେ । ବିରକ୍ତ ହୋଇଗଲେ । ମୁଁ ଦେଖିଲି ଯେ ତଳୁ ପବନ ଟାଣିବାର ନଳା କରି ନାହାନ୍ତି । ମୁଁ ସେଠୁ ତଳୁ ପବନ ଟାଣିବା ସୁବିଧା ହେଲାପରି କାଠକୁ ସଜାଡ଼ି, ଅଗ୍ନିର ଗୋଟିଏ ମନ୍ତ୍ର ବୋଲି, ଗୋଟିଏ ଲମ୍ବା ଫୁଙ୍କା ଫୁଙ୍କିଲି । ସଜଡ଼ା ହୋଇ ଦରପୋଡ଼ା କାଠ ଦାଉ ଦାଉ ହୋଇ ଜଳି ଉଠିଥିଲା— ମନ୍ତ୍ରବଳ । ଭଗବାନ୍‌ଜୀଙ୍କର ମୁହଁ ଝଲସି ଉଠିଲା — ମୋର ବିଦ୍ୟାକୁ ସେ ବୁଝିଛନ୍ତି, ମୋତେ ସେ ଜାଣିପାରିଛନ୍ତି । ସଜାଡ଼ିବାକୁ ଧରି ନ ପାରି, ମନ୍ତ୍ରର ପ୍ରଭାବଟା ଉପରେ ବିଶ୍ୱାସ କଲେ । ମୁଁ ମଧ୍ୟ ସେଇଆ ଭଙ୍ଗି କରିଥିଲି ।

ରାମଦାସଜୀ ହିନ୍ଦିରେ ଗୋଟିଏ ଢଗ ବୋଲି ଥିଲେ । ତାର ଅର୍ଥ ହେଲା—

ପୂର୍ବ ଦେଶୀୟ ଲୋକେ ମାଛ ଖାଇଲେ ମଧ୍ୟ ବେଦର ଅଧିକାରୀ ।

ସତ୍ୟ, କନୁ, ନଦ୍ଦାର ଆଦି ଅଧିବାସୀ ମାନେ ଶୌଚହୀନ ଭାବରେ ବେଦପାଠ କରୁ ଥିବାରୁ ବ୍ରାହ୍ମଣ ଥିଲେ ଓ ଲୋକଶ୍ରେଷ୍ଠ ହୋଇ ଯାଇଥିଲେ ।

ଦ୍ୱିବ ଦଂଶନର ସୁବିଧା ନେଇ ସହଜ ଭାବରେ ସରଳଭାବ ଅଭିନୟ କରି ମୁଁ କହିଲି— ମୁଁ କିନ୍ତୁ ମାଛ ଖାଏ ନାହିଁ ।

ଭଗବାନ୍ଜୀ ବୋଧହୁଏ ଆଜ କଥାଟା ବୁଝିଲେ ।

ରାମଦାସଜୀ କହିଲେ—

ମୁଁ ବନାଇ ଦେବି, ତୁମେ ରାନ୍ଧି ଦେଖିବ

ଖୁବ୍ ଉତ୍ତମ ଖାଇବା ପ୍ରସ୍ତୁତ ହୋଇପାରିବ ।

ସେ କହିବା ଅନୁସାରେ ଯୋଗାଡ଼ ହେଲା — ଦୁଇ ଛଟାଙ୍କି ଗୁଜଲ ଅଧପାଏ ଆଳୁ ଇତ୍ୟାଦି । ଛ' ଅଣା, ଆଠ ଅଣା ଭିତରେ ଗୋଟିଏ ପୂରା ବେଳର ଖୋରାକ ହୋଇ ଯାଇ ଥାଏ ।

ସେତେବେଳେ ଖିଚିରି ପ୍ରସ୍ତୁତ କରିଥିଲି । ଦଣ୍ଡୀସ୍ୱାମୀନନ୍ଦଜୀ ପାଖରେ ବସିଥିଲେ । କହିଲେ—

ଏମିତି ଖାଇବା ସିନା, ଆଜି ଭଲ ଲାଗୁ ନ ଥିବ ।

ଗୃହିଣୀ, ଓ କହିଲି— ଖୁବ୍ ଭଲ ଲାଗୁଛି ।

ସତରେ ଖୁବ୍ ଭଲ ଲାଗୁଥିଲା । ଚାରି ଚାଟି କରି ସେତକ ଖାଇ ନେଲି । ଗୁମରେ ଗୁଣ୍ଡ ଦୁଧ ସହିତ ଦୁଇ ଗୁମର ଚିନି ଓ ଦୁଇ ଛଟାଙ୍କି ଗୁଜଲ ବ୍ୟବହାର ହୋଇଥିଲା ।

ମୋର ଖାଇବାର ତୃପ୍ତିଟା ଦର୍ଶକ ମାନେ ମଧ୍ୟ ଅନୁଭବ କରିଥିଲେ ।

ସ୍ୱାମୀଜୀ ଏହାର ଉପସଂହାର କରି ଅନୁଶୀଳନୀ ପଢ଼ିଲେ—
ପୋ ଖାନା ପକାନା ନହିଁ ଜାନତା ଓ୍ୱୋ ଖାନା ଖା'ନା
ନହିଁ ଜାନତା ।

ଅର୍ଥାତ—   ଯେ କେବଳ ରାନ୍ଧି ଜାଣେ,
ସେ କେବଳ ଖାଇ ଜାଣେ ।

ହେ ଉଦ୍ଧବ !   ଅନ୍ନ ବସ୍ତ୍ରନେ ହଂସ ହାନି
ଯୋଗ ସାଧିବୁ କାହା ଘେନି ।

**ଗର୍ବିୟାଙ୍ଗ ଠାରୁ ଧାରଚୁଲା**

ବାହାରି ପଡ଼ିଲୁ କୈଳାସ ଦର୍ଶନର ସ୍ମୃତି ନେଇ ।

ଅଖାଡୁଆ ଜାଗାରେ ଋଟେଡା ଖାଇ ଓ ଶୀତ ତାପ ସହି ଦେହ କଳା । ସ୍ୱଳ୍ପ ସନ୍ତୋଷ ଭୋଜନ ପାଇ ଦେହରେ ବଳ ମନରେ ସଫଳ କାମନାର ଆନନ୍ଦ ଓ ନିୟମର ଶ୍ରୋଧାରରେ ଗୁନ୍ଥି ଥିବା ଦେହଭୁ ମନ ଅଣ୍ଟ । ନିମ୍ନ ପ୍ରଦେଶର ବହଳ ପବନ ଓ ସନ୍ତୋଷ ଭୋଜନ ଦେହ ଓ ମନରେ ଅପାର ବଳ ଆଣି ଭରେଇ ନେଉଥିଲା ।

ବାଟ ଚାହା ଓ କେବଳ ଜଣା । ଡ଼ର ନଥାଏ, ଭୟ ବି ନ ଥାଏ । ଜାମାର ବାଁ ପଟ ଭଙ୍ଗ ଭିତରେ ଗୋଟିଏ ଶହେ ଟଙ୍କିଆ ନୋଟ ଓ ଡ଼ାହାଣ ଭଙ୍ଗ ଭିତରେ ଛ' ସାତଟା ଦଶ ଟଙ୍କିଆ ନୋଟ ଓ ମୁଣାରେ ଖୁଚୁରା ନୋଟ ଓ ପଇସା । ସ୍ୱାମୀ ସଚ୍ଚିଦାନନ୍ଦଙ୍କର ପୂର୍ବ କଥିତ ଭାଷାରେ 'ଧନ ସମ୍ପତ୍ତିରେ କେନ୍ଦ୍ର ଥାଏ । ଦୁଇ ଗୁଣ ପଇସା ଅଧିକ ଖର୍ଚ୍ଚ କରିବାର ପ୍ରବୃତ୍ତି ଥାଏ ।

ଏ ଦେହରେ କୈଳାସ ଯାତ୍ରୀର ସ୍ପର୍ଶ । ଦୁନିଆଟା ଯାକରେ ମୁଁ ଜଣେ । ଦୁନିଆଟା ଯାକ ମୋର । ପୃଥିବୀର ଉଚ୍ଚତମ ପ୍ରଦେଶରେ ଥାଇ ଦୁନିଆଟା ଯାକକୁ ଆବୋରି ନେଇଛୁ । ବୁକୁଟା

ଯେପରି ମୋର ଓ ମମାର ଦେହଭିତରେ ଦୂର ଅଛି ସେପରି ମୋର; ଦେହଟା ଯେପରି ମୋର ନୁହେଁ ଦୁନିଆଟା ସେପରି ମୋର ନୁହେଁ ।

ବୁଢ଼ା କଟକମା ପାଖେଇ ଆସିଲା । କିନ୍ତୁ ମୋତେ କଥା କହୁନାହିଁ । ଦୁଃଖ ଲାଗିଲା । କିନ୍ତୁ ମୁଁ ନାଚାର ।

ପଣ୍ଡାହନୁମାନଜୀ ଆଗେଇ ଗଲେ । ଜୟନ୍ତ ଭାଇ ଓ ମୁଁ ଆଗୁଆ ଥିଲୁ । ଅନ୍ୟମାନେ ପଛରେ ଥିଲେ ।

ବୃଷ୍ଟିରେ ପଡ଼ନ୍ତିଲ ପୂର୍ବରୁ ଶୀଘ୍ର ପାହାଡ ରାସ୍ତା ଦେଇ ଓହ୍ଲାଉଛୁ, ଜୟନ୍ତ ଭାଇ କହିଲେ—

ତୁମେ ଖୁବ୍ ସାହସିକତା ଦେଖାଇଲ !

— ସେଥିପାଇଁ ମୁଁ ପ୍ରସ୍ତୁତ ଥିଲି ।

— ସାହସିକତା ଦେଖାଇବ ତ ବାବୁ ଭାଇ ଦେର ଦେଖାଇବା ଉଚିତ । ସେ ଜଣେ ଅଲ୍‌ଇଣ୍ଡିଆ ସାଇକଲିଷ୍ଟ । ଏକୁଟିଆ କୈଲାସ ଯାଇ ଚାଲିଆସିଲେ ।

— ଫଳ କଣ ହେଲା ? ପିଠି ଉପରେ ବୋଝ ହୋଇ ଘରକୁ ଫେରିଲେ । ପାରିବାପଣରେ ଢମ୍ପ କହିବା କଥା ।

ସେଠୁ ତାଙ୍କୁ ଫଲହାରୀବାବାଙ୍କ ହସ୍ତତ ଘଟିଥିବା ଘଟଣା ବଖାଣିଲି । ସେ ମଧ୍ୟ ତାଙ୍କୁ ଦେଖିଛନ୍ତି । ତାଙ୍କର ଦତ୍ତ ଉପଦେଶଟି—

"ଫାଲ୍‌ତୁ ତକଲିଫ କରନେସେ ଫାୟଦା ନହିଁ ହୋତା",

ସେ ମଧ୍ୟ ହୃଦୟଙ୍ଗମ କରିବା ବୋଧ ହେଲା ।

ଭଟ୍ଟଜୀ ସମସ୍ତଙ୍କ ପଛରେ ପଡ଼ିଯାନ୍ତି । ସମସ୍ତେ ଆଗରେ ଚାଲିବା ହେତୁ ସମସ୍ତଙ୍କ ଉପରେ ବିରକ୍ତି ପ୍ରକାଶ କରନ୍ତି । ମୁଁ ତାଙ୍କ ପାଖେ ପାଖେ ଥାଏ ଓ ଉତ୍ସାହିତ କରୁଥାଏ । ତାଙ୍କର ଅଣ୍ଟା

ଲଗି ଯାଇ ଥାଏ ଓ ସେହେତୁ ଝରଣାରୁ ଗିଲାସରେ ପିଇବା ପାଣି ଆଣି ଦିଏ । କୃତଜ୍ଞତା ଅପେକ୍ଷା ସୁହାଇବା ଇଚ୍ଛାଟା ବେଶି ଥାଏ ।

ମାଲପାରେ କୁଲି ଲୋକଙ୍କ ସହିତ ମିଶି ରାନ୍ଧିବା ଯୋଗାଡ଼ ହେଲା । ଟଙ୍କାଟିଏ ଦେବାକୁ କହିଲେ । ଗୋଟିଏ ବାବୁ ଠାରୁ ଟଙ୍କାଟିଏ ଯଥେଷ୍ଟ ହେବବୋଲି ସେମାନେ ଭାବିଥିଲେ । ସେମାନେ ପ୍ରଥମେ ମୋତେ ଖାଇବାକୁ ଦେଇ ପରେ ଖାଇବେ ବୋଲି ଡ଼ିକଲେ । ସେଥିରେ ଘିଅ ଲଗାଇ ତାଜା ଖାଦ୍ୟର ଆସ୍ୱାଦ ନାହିଁ । ମୁଁ ନିଜେ ବୁଝିପାରୁ ନଥାଏ ଯେ ସେ ରୁଟି ପେଟକୁ ଯାଇ କେଉଁଠି ରହୁଛି । ଆଠ ଦଶଟା ଖାଇଛି ପ୍ରମାଦ ଗଣିଲେ । ସେମାନଙ୍କର ବାବୁ ପ୍ରତି ଦେଖାଇବା ସମ୍ମାନ କମି କମି ଆସିଲା । ଗୋଟିକ ପରେ ଗୋଟିଏ ରୁଟିର ସେଙ୍କିବାର ସମୟର ବ୍ୟବଧାନ ବଢ଼ିଲା । ତେର ପଟ ଖାଇଛି ସେମାନଙ୍କ ଅମ୍ଳାନ ମୁହଁ ଦେଖି ବନ୍ଦ କରିଦେଲି । ଭୋକ ମରିଥିଲା କିନ୍ତୁ ପେଟ ପୂରି ନଥିଲା । ସାଧାରଣତଃ ଏପରି ଆହାରର ରୁଟି ବେଶି ହେଲେ ପାଞ୍ଚ, ଛ' ପଟ ଖାଇଥାଏ । କେବଳ ଦୁଇ ପଟର ତୃପ୍ତି ଲାଭ କରିଥିଲି ।

ଜିପ୍ସିରେ ମୁଁ ମୋର ଖାଇବାର ବନ୍ଦୋବସ୍ତ କରୁଛି, ସାଥି ଯାତ୍ରୀମାନେ ସେମାନଙ୍କ ସାଙ୍ଗରେ ଖାଇବା ପାଇଁ ବିଶେଷ ଅନୁରୋଧ କଲେ । ପରେ ରାଜି କଲେ । କଳଣିଆ ନଥିବାରୁ ମୂଳା ଗଛ ରୁନ୍ଧିବା ମୂଲ୍ୟ ଦେଇ କିଣି,ଲୁଣ ଲଙ୍କା ଦେଇ ଖାଇଲି ।

ଶିର୍ଖାରେ ମୋର ପୁରୁଣା ବନ୍ଧୁ ସକ୍ସେନା ବାବୁଙ୍କୁ ଭେଟିଲି । ପଚାରିଲେ— କୈଳାସ ଦର୍ଶନ ହୋଇଥିଲା କି ?

—ପରିକ୍ରମା ମଧ୍ୟ ।

ତାଙ୍କ ଠାରୁ ଗୋଟିଏ ଚଷ୍ମା ଖଦଡ଼ ପାଇଜାମା କିଣିଲି ।

ସେଠାରେ ଏଚେନ୍‌ଡ଼େଣ୍ଟଙ୍କୁ ଭେଟିଥିଲି । ଯିବା ସମୟରେ ସାହାଯ୍ୟ କରିଥିବା ହେତୁ ଧନ୍ୟବାଦ ଦେଇଥିଲି । ମାନିଥିଲି ଯେ ମୋର ମୂଣ୍ଡ ପ୍ରକୃତରେ ଖରାପ ଥିଲା ଯେହେତୁ ବୋଝିଆ ନମିଳି-ବାରୁ ବିବ୍ରତ ହୋଇ ପଡ଼ିଥିଲି ।

ଦଳଙ୍କୁ ଭେଟି ଧନ୍ୟବାଦ ଜ୍ଞାପନ କରିଥିଲି । କିନ୍ତୁ ମୋର କୁଲିର ଭୋଟ କିଛି ଦେଇ ନଥିଲି । କାରଣ ମୋର ବୋଲି ସେ ଗୋଟିକ ଥିଲା ଓ ଭବିଷ୍ୟତରେ ହିମାଳୟ ଭ୍ରମଣରେ କାମରେ ଆସିବ ବୋଲି ଭାବିଥିଲି । ସେ ମୋତେ ତା ବଦଳରେ ଯେଉଁ କୁଲିର ଆସନଟି ଦେଖାଇଥିଲା ତାହା ଅତି ପୁରୁଣା ଓ ଖରାପ ଥିଲା । ଯିବା ସମୟରେ ପଣ୍ଡାଙ୍କୁ ପାଞ୍ଚ ଟଙ୍କା ଲେଖା ଦୁଇ ଦିନରେ ଯେଉଁ ଖତର ଟଙ୍କା ଦେଇଥିଲି ତାହା ଖୋଲିଲି ସେଇ ଓଜନକୁ ଦେଖି କିଛି କମ୍ ନ ଥିଲା ।

ଶିଖରରୁ ନାରାୟଣ ଆଶ୍ରମ ଗଲି । ଏହି ନାରାୟଣ ଆଶ୍ରମଟି ଗୋଟିଏ ପାହାଡ଼ର ପିଠି ଉପରେ ଅବସ୍ଥିତ । ସମୁଦ୍ର ପତନ ଠାରୁ ପ୍ରାୟ ଆଠ ହଜାର ଫୁଟ ଉପରେ । ଆଶ୍ରମ ତିଆରି ଇଂରେଜ ଢଙ୍ଗରେ । ଚାରି ପଟରେ ବଗିଚାର ନାସପାତି, ସେଓ ଇତ୍ୟାଦି ଗଛ ଏକ ଶାନ୍ତ ଓ ଆନନ୍ଦର ବାତାବରଣ ସୃଷ୍ଟି କରୁ-ଥାଏ । ଗଛ ଗୁଡ଼ିକ ମଧ୍ୟ ସେପରି ଫଳରେ ଭରି ରହିଥାଏ ।

— ଫଳବନ୍ତ୍ୟଃ ନ ଔଷଧ୍ୟଃ ଚର୍ଯ୍ୟନ୍ତାମ୍ ।

ଗଛର ଫଳରୁ ଅଧ୍ୟାତ୍ମିକ ବାତାବରଣର ଉତ୍କର୍ଷତା ସୁସ୍ପଷ୍ଟ । ପାହାଡ଼ ତଳକୁ, କିଛିଏ ଦୂରରେ ଦୁଇଶହ ଖଣ୍ଡେ ଦୁଆଁଳି ଗାଇ ଅଛନ୍ତି ବୋଲି ଶୁଣିଲି । ଆଶ୍ରମଟି ଦୁଇଜଣ ବହ୍ମଚାରୀଙ୍କ ତତ୍ତ୍ୱାବଧାନରେ ଥିଲା । ପ୍ରତିଷ୍ଠାତା ନାରାୟଣ ସ୍ୱାମ

କେତେଣ କେନାଣ୍ଡ କେବ ଥିଲେ । କୈଳାସ ବାହୁଡ଼ା ଯାତ୍ରୀଙ୍କର ଅବସ୍ଥା ଦେଖି ସେମାନଙ୍କର ଶୁଶ୍ରୂଷା ପାଇଁ ଏ ଆଶ୍ରମ ପ୍ରତିଷ୍ଠା କରିଥିଲେ । ବ୍ରହ୍ମଚାରୀ ଜଣେ କହିଲେ—

ଯେଉଁମାନେ କୈଳାସ ଯାତ୍ରାକରି ବାହୁଡନ୍ତି, ସେମାନେ କିଛି ନା କିଛି ରୋଗ ଧରି ବାହୁଡ଼ି ଥାନ୍ତି, ଦରମରା ଅବସ୍ଥାରେ ନରକଙ୍କାଳ ହୋଇ ଫେରିଥାନ୍ତି । ଗୋଡ଼ର ପୀଡ଼ା ଓ ଅପାଚନ ବୋଧେ ନିଶ୍ଚୟ ଥିବ । ସେମାନେ ଏଠାରେ ଦୁଇ ତିନିଦିନ ରହି କିଛିଟା ବିଶ୍ରାମ କରି, ଦେହକୁ ଟିକିଏ ବାଗେଇ ନେଇଥାନ୍ତି । କିନ୍ତୁ ଆପଣମାନେ ଯେମିତି ସେମିତି ଅଛନ୍ତି (ମୋ ଆଡ଼କୁ ବୁଲି) କେବଳ ଆପଣଙ୍କୁ ଛାଡ଼ିଦେଲେ ।

ସେଠଜୀ କହିଲେ— ଗୁରୁ କୃପାରୁ, କୈଳାସପତିଙ୍କ କୃପାରୁ ଓ ଖାକ ବାବା (ରାମଦାସଜୀ)ଙ୍କ ଜୀତାରୁ ଏହା ସମ୍ଭବ ହୋଇଛି । ଏହାଙ୍କର ଭଜନ ପ୍ରତ୍ୟୋକ୍ତି ହେତୁ ଆମରେ କୌଣସି ପ୍ରକାର କଷ୍ଟ ହୋଇ ନ ଥିଲା । ବରଂ ସୁଖରେ ଥିଲୁ । ଭଜ ପଞ୍ଜନ କନକ କୌଣସି ବିକାର ଆମ୍ଭଙ୍କୁ ଧରି ପାରି ନ ଥିଲା ।

ତାପରେ ସେ ପ୍ରତିଦିନ ଯାତ୍ରା ଶେଷରେ ଠିକଣା ଯାଗାରେ ଜାଗାରେ ପହଞ୍ଚିଲେ ପରେ ଠାରୁ ପରଦିନ ଯାତ୍ରା ଆରମ୍ଭ ପର୍ଯ୍ୟନ୍ତ କଣ୍ଡରୀ ରୁଟିକର ଚୂହାପାଣି କଲଖିଆ ଖାଦ୍ୟପେୟ ଇତ୍ୟାଦି ତିଆରି କରି ଖୁଆଇ ଥାନ୍ତି ତାହା ବର୍ଣ୍ଣାଣିଲେ । ସେ ପ୍ରଶଂସାରେ ନିପଟ ଭଲା ରାମଦାସଜୀଙ୍କର ଅନ୍ତର ପ୍ରଫୁଲ୍ଲିତ ହେଉଥିଲା ଓ ମୁହଁଁ ଫୁଲପରି ଉଠିଥିଲା । ସେ ସ୍ୱୟଂ ଚାଖନ୍ତି ଓ ଖାଇ ଜାଣନ୍ତି ।

କଚକଣା କହୁଥିଲେଯେ, ସେ ଯେତେଥର କୈଳାସ ଯାଇଛି

ଏଇଥରକ ଯେଉଁଭଳି ନିର୍ମଳ ଦର୍ଶନ ଓ ସୁନ୍ଦର ପାଗ ଥିଲା, ପୂର୍ବ ଯାତ୍ରା ଗୁଡ଼ିକରେ ସେପରି ନ ଥିଲା । ଆମ ପାଇଁ କୈଳାସ ଦର୍ଶନ ଲଗାତାର ସୁସ୍ପଷ୍ଟ ଥିଲା । ଏହା କେବଳ ଗୁରୁ କୃପାରୁ ସମ୍ଭବ ହୋଇ ପାରିଛି ବୋଲି ମନ୍ତବ୍ୟ ଦେଇଥିଲେ । ଆମ ମାନଙ୍କ ଭିତରେ କିଏ ଜଣେ ବଡ଼ ପୁଣ୍ୟାତ୍ମା ଅଛି ବୋଲି ସିଦ୍ଧାନ୍ତ ହେଲା । ମୁଁ ସେତେବେଳେ ଧରି ନେଲି ଯେ ନିଶ୍ଚୟ ପୁଣ୍ୟାତ୍ମା ମୁଁ । କିନ୍ତୁ ଅନ୍ୟ ଲୋକଙ୍କ ଭିତରେ ମଧ୍ୟ ସେହି ଭାବ ଆସିଥିବା ମୁଁ ଲକ୍ଷିତ କରିଥିଲି । ମାତ୍ର, କୈଳାସ ଭ୍ରମଣ କରି ଆମେ କେହି ହେଲେ ନିଷ୍ପାପ ହୋଇ ନ ଥାଉ ।

ସେଠାରେ ପହଞ୍ଚିଲା ସାଙ୍ଗେ ସାଙ୍ଗେ ଗୋଟିଏ ବଡ଼ ଥାଳିରେ ଥାଳିଏ ପଞ୍ଚପକ୍ୱ ଫଳ ଆଣି ପରଷିଲେ । ଆମର ଗାଉଁଲି ଭାଷାରେ "ରଙ୍କାଳିଆ" ହୋଇ ସେଠିକି ଉଦରସ୍ଥ କଲୁ । ସବୁ ହେଉ ହେଉ ବାଢ଼ିଲେ ସଜ ଭୋଗ— ଭାଜିକା, ହରଡ଼ ଡ଼ାଲି, ଶୀଘ୍ର ଚଲ୍ହାକୁ ବଧାଇ ମାଲପୁଆ ଇତ୍ୟାଦି । ତିନି ଓଳିର ଅଭଣ୍ଡ ହେବାପରେ ରାତିରେ ଧରିଲା ଝାଡ଼ା ଓ ବାନ୍ତି । ଲୋମ ଠାକୁର ହନ୍ ହନ୍ ହୋଇ ବାହାରିଲା । ନୀଳକଣ୍ଠଙ୍କୁ ସ୍ମରଣ କରି ଶୋଇଲି ସକାଳେ ଅତ୍ୟନ୍ତ ଦୁର୍ବଳ ଅନୁଭବ କଲି ।

ସେଠାରେ ରହଣି କାଳରେ ଆମେମାନେ ପ୍ରତ୍ୟେକେ ଓଜନ ନେଲୁ । ମୋର ଏଗାର ପାଉଣ୍ଡ କମି ଯାଇଥିଲା । ଅନ୍ୟ ମାନଙ୍କର ଯେମିତି ସେମିତି ଥିଲା ।

ନାରାୟଣ ଆଶ୍ରମରୁ ଯାତ୍ରା ଦେଇ ତବାଘାଟରେ ପହଂଚିଲୁ । ବାଟରେ ସୂସା ଠାରେ ବଷ୍ଟାଳ ସିଂ ଇଦ୍ଧାଁକ ଓ ତାଙ୍କ ସ୍ତ୍ରୀ ସହିତ ଦେଖା ଓ କଥାବାର୍ତ୍ତା ହୋଇଥିଲା । ସେ

ସାମାନ୍ୟ କଡ଼ ଯୋଗର ବ୍ୟବସ୍ଥା କରିଥିଲେ ।

ଖବର ଦେଲେ— ମାଙ୍କ ମାଙ୍କ ତଳେ ଅପେ ବଦ୍ନାଟକୁ ଫେରେ । ସବୁ ଟିକ୍ଠାକ୍ ସୁନ୍ଦର ଚାଲୁଥିଲା । ବର୍ତ୍ତମାନ ଶୁଣୁଛୁ ନଟେଗ ନଟେଗ ଗୁଡ଼ାଏ ମଞ୍ଚର ରାସ୍ତାକୁ ଯେପି ପଡ଼ୁଆଇଛୁ ଓ ଅନେକେ ମର ଯାଉଛନ୍ତି । ଭଗବାନ ଆପଣ ମାନଙ୍କୁ କୁଶଳରେ ରଖିଛନ୍ତି ।

କିନ୍ତୁ ଯେ ରକ୍ତ ନେବା କଥା କେହିଣ ଯେ ବାଟରେ ତେଙ୍କଳ ନ ନେଇ ଗ୍ଲାଉବନ୍ ।

ତା ହେଲେ ଯିଶୁ କଣ ଫେଲ୍ ମାରିଛନ୍ତି ?

ମୁଁ ଅତହ୍ନା ଭଲଅ ତାଙ୍କ ସହୃତ କଥାବାର୍ତ୍ତା କରି-ଥିଲି । କିନ୍ତୁ ସେ ଯେତେବେଳେ ପାଣ୍ଡୁଛି ଅସନ୍ତ, ଯେଉଁ ବାଟ ଦେଇ ସେ ଘରେ ଅଗ୍ରଅ ଯାହା ସମୟରେ ପଶିଥିଲା, ସେହି ବାଟକୁ ଚହ୍ନି ପାରିଲା ଓ ତା ସଙ୍ଗେ ସଙ୍ଗେ ସେ ଘରକୁ ଓ ଘରର ଲୋକଙ୍କୁ । ଚହ୍ନି ପାରିବା ପରେ, ଆଗରୁ ଚହ୍ନି ନ ଥିବାରୁ କ୍ଷମା ଭିକ୍ଷା କରିଥିଲା । ସେମାନେ ରହି ଯିବାକୁ ଅନୁରୋଧ କରିଥିଲେ । କହୁଥିଲା— ଆପଣଙ୍କ କଥା ଅନୁଯାଇ ଏମାନଙ୍କ ସାଙ୍ଗ ଧରିଛୁ । ଆପଣଙ୍କ କଥା ରଖି ହେଲା ସ ‘ଦର୍ଶନ କରି ପାରିଛୁ । ପଦଯାତ୍ରା ଶେଷ ପର୍ଯ୍ୟନ୍ତ ସେମାନଙ୍କ ସାଙ୍ଗରେ ରହିବ । ରହିଲା ଓ ଖାଇଲା, ଏଥରକ ଅନୁମତି ଦଅନ୍ତୁ ଯିବ ।

ସେ ଗୁଜରାଟି ଦଳ ସହିତ କପରି ଏକ ପ୍ରକାର ଚହ୍ନା ହେଲା ଭଲଅ ଲାଗୁଥିଲା । କ୍ୟାଥଲିକ୍ ହୃଦୟରେ ଏମାନଙ୍କ ପାଇଁ ବଡ଼ାସ୍ଥ ନେଇଥିଲା । ସେଦିନ ରାତିରେ ଯଦି ଏମାନଙ୍କର ଆଶିଷ ପାଇ ନ ଥାନ୍ତା ମୋର ଇଚ୍ଛା କଣ ଯେ ନ ହୋଇଥାନ୍ତା କହି ହେବ ନାହିଁ । କନ୍ତୁଜନ୍ତୁ, ଭୂତ ପ୍ରେତ, ଦୁର୍ଘଟଣା, ଲାଗରସ୍ତୁ ଓ

ଅନାହାର ନଚେଷ୍ଟିତ ପୁରୁଷ ହୋଇଥିଲେ ମଧ, ମନୋବଳ ଭାଙ୍ଗି ପଡ଼ିଥାନ୍ତା ।

ଡବାଘାଟ ଠାରେ ରାସ୍ତା ତିଆରି କାମ ଚାଲିଥାଏ । ଜଣେ ଆସିଷ୍ଟାଣ୍ଟ ଇଞ୍ଜିନିୟର ସେଠାରେ ଅବସ୍ଥାନ କରୁଥାନ୍ତି । ତାଙ୍କୁ କହି, ହାତଗୋଡ଼ଲାଗି ବନ୍ଦୋବସ୍ତ କରି ଦେଲି । ଯେଉଁଠି ମୋଟର ରାସ୍ତା ପାଇଁ ପୋଲ ତିଆରି ହେଉଥାଏ, ସେଠି ସେ ସମୟକୁ ଥାଏ କେବଳ ଏପଟରୁ ସେପଟକୁ ଟଣାଯାଇଥିବା ଗୋଟିଏ ଲୁହା ଦଉଡ଼ି ସେହି ଦଉଡ଼ି ସାହାଯ୍ୟରେ ରାସ୍ତା ତିଆରି କରୁଥିବା କୁଲିମାନେ ଯାତାୟାତ କରନ୍ତି । ସେଠାରେ ପାକଲ ହୋଇ ନଥିବା କାନ୍ଧଏ କଣ୍ଠା ବଦଳି କଣି ତରକାରୀ କରାଯାଇ ଥିଲା ।

ଡବାଘାଟ ଠାରୁ ଧାରଚୁଲା ଯିବା ସମୟରେ ଦୁଇଟି ବିଶେଷ ଘଟଣା ଘଟିଥିଲା ।

ପ୍ରଥମଟି ଡବାଘାଟ ଠାରୁ ମାଇଲଏ ଖଣ୍ଡେ ଗଲା ପରେ । ସାଙ୍ଗରେ କେତେଜଣ ଶମିକ ଥିଲେ । ପାହାଡ଼କୁ କାଟି ଯାଇଥିବା ରାସ୍ତାଟିର ଦଶ ବାର ଫୁଟ ଲମ୍ବାରେ ମାଟି ଧସି ପାଇଥିଲା । ପ୍ରଥମରେ ଏ ଫୁଟ ରାସ୍ତାକୁ ଟପିଲ୍ ହୋଇ ସାରି ପରେ ସାତ ଆଠ ଫୁଟ ଖଣ୍ଡେ ଚଢ଼ିବାକୁ ପଡ଼ିଥିଲା । ପାଞ୍ଚ ଛଅ ଯୋଡ଼ା ଖାଏ ନ ଥିବା ପାଦ ଚିହ୍ନ ଫେରି ସେହି ରାସ୍ତାକୁ ବାଟ ଦେଖାଇ ଥିଲା । ପାଦ ଚିହ୍ନ ଗୁଡ଼ିକ ଯୋଡ଼ ଯୋଡ଼ ହୋଇ ସିଧା ସଳଖ ଉପରକୁ ଉଠି ଥିଲେ । ତିନି ଯୋଡ଼ା ଖଣ୍ଡେ ପାଦ ଚିହ୍ନ ଟପିଛୁ, ତା ପରେ ପାଦ ଚିହ୍ନରୁ ଗୋଡ଼ି ତଳକୁ ଖସି ଆସୁଥିଲା । ପଛପଟୁ କୁଲି ଜଣେ ହାତ ପାପୁଲିରେ ଉପରକୁ ଠେଲି ଦେଲା । ତା ପରେ ପାଦ ଚିହ୍ନ ସେତେ ଗଭୀରିଆ ନ ଥିବାରୁ ଆଉ ଦୁଇ ତିନି ଯୋଡ଼ା ପରେ

ସଚଳ ସ୍ତ୍ରା ଉପରକୁ ଆସିଗଲି । ପଡ଼ିଥିଲେ ଲୋକଙ୍କୁ ଟାଣି ଛଅ ସାତ ଫୁଟ ତଳେ ନଦୀ ଭିତରେ ପଡ଼ିଥାନ୍ତି । ଲୋକଟି ଏତ ମଦ୍ଧଣ ଓଜନ ବୋହିଥିଲା ଅଥଚ ଅନାୟାସରେ ଚଢ଼ି ପାରୁଥିଲା ।

ଦ୍ୱିତୀୟ ଘଟଣାଟା ହେଉଛି, ଧାରଚୂଳା ଠାରୁ ଦୁଇ ମାଇଲ ତଳକୁ ଅବସ୍ଥିତ ସେତୁ ପଥର ଖଣ୍ଡିକ । ତାର କଥା ଏକବାରେ ଭୁଲି ଯାଇଥିଲି । କିନ୍ତୁ ଭଗବାନଙ୍କ ଦୟାରୁ ଜଣେ ଲୋକ, ତାର ସ୍ତ୍ରୀ, ଦୁଇଟି ଝିଅ ଓ ଗୋଟିଏ ପୁଅ ସହିତ "ରେସନ୍" ଆଣିବାକୁ ଧାରଚୂଳା ଯାଉଥିଲା । ଯେଉଁଠି ରାସ୍ତା ଶେଷ ଓ ଶାଖ ଟାଙ୍ଗର ଦାହାଣ ଦେହରେ ପାଦ ରଖିବା ଆରମ୍ଭ ଠିକ୍ ସେଇଠି ସେମାନେ ମୋତେ ଭେଟିଥିଲେ । ମୋର ଦୃଢ଼ ଅନିଚ୍ଛା ଦେଖି ଓ ସେ ବାଟରେ ଆଗେଇବାକୁ ଦ୍ୱିଧା ପ୍ରକାଶ କରିବାରୁ ମୁରୁଷଟି ମୋତେ ତଳୁ ଉପରକୁ ଦେଖିନେଇ ପଚାରିଲା—କୈଲାସ ଦର୍ଶନ କରିବ କି ନାହିଁ ? ଦୃଢ଼ତାର ସହିତ ହଁ କରିବାରୁ ଅଭୟ ଦେଇ ତାର ଅନୁଗମନ କରିବାକୁ କହିଲା । ମୁଁ ଅନାୟାସରେ, କିନ୍ତୁ, ଟିକିଏ ଦ୍ୱିଧାର ସହ ତା ପଛରେ ପଛରେ ଚାଲିଲି । ମୋର ଠିକ୍ ପଛରେ ତାର ବଡ଼ ଝିଅଟି; ପରେ ପରେ ଅନ୍ୟ ପିଲା ଦୁଇଟି ଓ ଶେଷରେ ତାର ସ୍ତ୍ରୀ । ହଠାତ୍ ଯେମିତି ପଥର ପାଖରେ ପହଞ୍ଚି ଗଲୁ, ସେମିତି ଖପ୍ କରି ସେ ଲୋକଟି ଆର ପାଖକୁ ଡେଇଁ ପଡ଼ିଲା । ମୁଁ ପଥର ମାଳଟି ଅଟକି ଗଲି । ପଛରେ ଥିବା ବଡ଼ ଝିଅଟି ଗୋଟିଏ ବିକଳ ଆକୁଳ ଚିତ୍କାର ଛାଡ଼ିଲା । ଲୋକଟି ବୁଲିପଡ଼ି କଥାଟା ଠଉରେଇ ନେଲା, ମୁହଁ ଗମ୍ଭୀର ଥିଲା, ସତେ ଯେମିତି ଗୋଟାଏ ଭୀଷଣ ସଙ୍କଟ ଘଟିବାକୁ ବା ସମ୍ଭାଳିବାକୁ ଯାଉଛି । ସେ ପଥରର ଆର ପଟରେ ଓ ମୁଁ ଏପଟରେ । ମୋତେ ହାତ

ବଢ଼ାଇବାକୁ କହିଲା । ହାତ ବଢ଼ାଇଲି, ମୁଠାରେ ଧରିଲା । ବଳିଷ୍ଠ ମୁଠା । ଦମ୍ଭ ଓ ଆତ୍ମବିଶ୍ୱାସ ସହିତ ମୋତେ ତାର ଗୋଡ଼ ଉପରକୁ ଡେଇଁବାକୁ କହିଲା । ସେପରି କଲି । ଚଟ୍‌କିନା ତାର ଗୋଡ଼ଟି ବାହାର କରିନେଲା । ମୋର ଗୋଟିଏ ପାଦ ଖାଲି ହେବା ଜାଗାରେ ପଡ଼ିଲା ! ତଡ଼ୁ ତଡ଼ୁ ସେ ଆଉ ପାଦେ ପଛେଇ ଗଲା ଓ ମୁଁ ଅନ୍ୟ ପାଦଟି ସେଠାରେ ରଖିଲି । ମୁଁ ନିଜକୁ ସମ୍ଭାଳି ନେଲା ପରେ ସେ ମୋର ହାତ ଛାଡ଼ିଥିଲା । ଦୁଇଜଣ ଭିତରେ ବେଶ୍ ବୁଝାମଣା ଥିଲା ଭଳିଆ କାମଟି ହୋଇଗଲା । ମୁଁ କେଉଁଠି ପାରିବି କେଉଁଠି ନ ପାରିବି ସେ କେମିତି ଧରି ପାରିଥିଲା । ସମୁଦାୟ ଘଟଣାଟି ଗୋଟିଏ ନିମିଷରେ ହୋଇଥିଲା । ସେ ନିମିତ୍ତ ମାତ୍ର ସେ ହିଁ ଭଗବାନ । ସେ ଦିନ ଥିଲା ଅଠର ଜୁଲାଇ ମଙ୍ଗଳ ବାର ।

## ବାହୁଡ଼ା—ଧାରଚୁଲା
### (ଗୃହକୁ — ୨୬୬ + ୪୬ = ୩୧୨ ମାଇଲ)

ସମସ୍ତେ ଧାରଚୁଲାରେ ପହଞ୍ଚିଲା ପରେ ସେ ଜାଗାଟା ବିଷୟରେ କଥା ପଡ଼ିଲା । ଅନ୍ୟ ସମସ୍ତେ ପ୍ରତ୍ୟେକେ ବୋଝେଇ ହୋଇ ସେ ଜାଗାଟା ପାର ହୋଇଥିଲେ । ଆସି, ବୋହିଆ ମାନଙ୍କୁ ମନ ଖୁସିରେ ଚାରି ପାଞ୍ଚ ଟଙ୍କା ଲେଖାଏଁ ବକ୍‌ସିସ୍ ଦେଇ ଥିଲେ ।

ମୋର କୁଲି ଜଣକ ମୋତେ ବକ୍‌ସିସ ମାଗିଲା । ମୁଁ ତ ଅଧିକା ଚାରି ସେରର ପଇସା ଦେଇଛି, ଆଉ ଅଧିକା ବକ୍‌ସିସ ଦେବା କଥା ଉଠୁ ନାହିଁ ବୋଲି କହିଥିଲି ।

ସେ— ଅନ୍ୟ ସମସ୍ତେ ବକ୍‌ସିସ ନେଲେ, ମୁଁ କାହିଁକି ନେବି ନାହିଁ ?

— ଷୋହଳ ସେର ବଦଳରେ ତୋଡ଼ଏ ସେରର ମୂଲ
  ଦେଇ ଧୋକ୍କା ଦେଇ ଅଛୁ ।

— ସମସ୍ତେ ପାଞ୍ଚ ପାଞ୍ଚ ଟଙ୍କା ଲେଖା ବକ୍‌ସିସ୍ ପାଇଲେ,
  ମୁଁ ତାହିଁକି ନ ନେବ ? ହନ୍ କରୁଚ ଲେ ଲେଙ୍ଗେ ।

— ଦେଖଛାହୁଁ କୈସେ ଲେ ଲେଥେ ।

ଜଣେ ବୟସ୍କ କୁଲି ବୁଝାଇବାରୁ ସେ ଗମ ଗମ ହୋଇ ଚାଲିଗଲା ।

ଜୟନ୍ତ ଭାଇ ମୋତେ ପଚାରି ବସିଲେ—

କୁଲି ମାନଙ୍କ ସହିତ ତୁମର ସବୁବେଳେ ଝଗଡ଼ା ତାହିଁକି ?

— ଗୁଡ଼ ସେରର ଅଧିକା ମୂଲ୍ୟ ଦିନକୁ ଆଠ ଅଣା ହିସାବରେ, ସାତ ଦିନରେ ସାଢ଼େ ତିନି ଟଙ୍କା ଅଧିକ ଦେଇଥିବା କଥା କହିଲି । ଭଗତ୍‌ଜୀ ଓ ଶେଠଜୀ ମୋର ପଟିଆ ବାହାରିଲେ । ଦେବା ଉଚିତ ହେବନାହିଁ କହିଲେ । ସେତେବେଳେ ଲଣାପଡ଼ିଲାଯେ ଏମାନେ କୁଲି ମାନଙ୍କ ସାହାଯ୍ୟରେ ପାର ହୋଇଛନ୍ତି ।

ସେଠଜୀ କହିଲେ—

ସେଠାରୁ ବଞ୍ଚିକରି ଆସିବ ବୋଲି ମୋର ବିଶ୍ଵାସ ନ ଥିଲା ।

ରାମଦାସଜୀ କହିଲେ— କୈଳାସ ଭ୍ରମଣ ସମୟରେ ଦେହାନ୍ତ ହେଲେ ସ୍ୱର୍ଗ ପ୍ରାପ୍ତି ହୁଏ ।

ସେଠଜୀ— ସେ କଥା ଠିକ୍ । ଗଲାବେଳେ ଦେହାନ୍ତ ହୋଇଥିଲେ କିଛି ଦୁଃଖ ନ ଥାନ୍ତା । ସବୁ ସାରି ଫେରିଯିବା ଶେଷ ହେବାକୁ ମାତ୍ର ଦୁଇ ମାଇଲ ଥିବ ମରିଗଲେ ଲାଭ କଣ ?

ରାମଦାସଜୀ— ହିମାଳୟର ଯେଉଁଠାରେ ହେଲେ ମଧ୍ୟ ସ୍ୱର୍ଗ ପ୍ରାପ୍ତି ହୁଏ ।

ସେଠାରେ— ଗଳ ସମୟରେ ହେଉଁ ଜ୍ଞବ ଥାଏ, ଅସିଲ ସମୟକୁ ସେହି ଭବ ନ ଥାଏ । ଯାହା ଶେଷରେ ପରମ୍ପରା ହେଲ ବେଳକୁ ମନୋବାଞ୍ଛା ସେତେ ଶ୍ରେଷ୍ଠ ନୁହେଁ ।

ଅସଲ କଥା, ବାହାରିବା ସମୟରେ ମନ ଇଷ୍ଟଦେବନ୍ମୁଖୀ ହୋଇ ନ ଥାଏ । ଢ଼ିଲ ଥାଏ । କୈଳାସ ଯାତ୍ରୀର ଗ୍ରୁପ ନେଇ ଘରକୁ ବାହୁଡ଼ୁଥାଉ । ଦୁନିଆ ଆଗରେ ତାର ଅଗ୍ନି ବଢ଼ିପା ଦେଖାଇବା ପାଇଁ କଣ୍ଠା ଲକ୍କାୟିତ ଇଚ୍ଛା ଥାଏ । ମରିବା ପାଇଁ ପ୍ରସ୍ତୁତ ନ ଥିଲି ।

ଦଣ୍ଡାକସ୍ୱାନନ୍ଦଜୀ ପଚାରିଲେ— ତୁମେ କପର ପାର ହେଲ ?

ମୁଁ ଘଟିଥିବା ସମସ୍ତ ଘଟଣା ବଖାଣିଲି ।

— ତାହାହେଲେ, ଖୋଦ୍ ଶିବ ତୁମକୁ ପାର କରିଦେଲେ ।

— ଯଦି ଦୁଇ ଝିଅ ଓ ଗୋଟିଏ ପୁଅ ବଦଳରେ ଦୁଇ ପୁଅ ଓ ଗୋଟିଏ ଝିଅ ହୋଇଥାନ୍ତା, ତାକୁ ଶିବ ବୋଲି ନେଇଥାନ୍ତି ।

ସେ ହସିଦେଲେ, ସତେ ଯେପରି ମୁଁ ବଡ଼ ସରଳ ।

ଧାରଚୁଲାରେ ହୋଟେଲରେ ଖାଇଲି । ପୋଲିସ ଇନସ୍‌ପେକ୍ଟର ଜଣଙ୍କ ମୋତେ ଗୋଟିଏ ଓଳି ନିମନ୍ତ୍ରଣ କରିଥିଲେ । ମୋତେ ସ୍ୱାମିଜୀ ସ୍ୱାମୀଜୀ ସମ୍ବୋଧନ କରି ବଳାଇ ନିମନ୍ତ୍ରଣ କଲେ । ତାଙ୍କ ଘରେ ଭାତ, ଘିଅ, ଅମ୍ବରସ ଭୋଜନ କରିଥିଲି । ଏତ ପୂର୍ଣ୍ଣ ମାତ୍ରାରେ ସାତ୍ତ୍ୱିକ ଆହାର । ତାଙ୍କ ଦୃଷ୍ଟିରେ ମୁଁ ଋଷି ପ୍ରତିମ । ବ୍ୟବହାର ସୁସଭ୍ୟର ସେହିପରି । ଯାତ୍ରାର ବିବରଣୀ ଶୁଣିଲେ । ଚୀନାଙ୍କ ପ୍ରସ୍ତୁତି ଓ ଭାରତର ମୁକାବଲା କରିବା କଥା ପଡ଼ିଲା । ମୁଁ ମତ ପ୍ରକାଶ କଲି—

ସେ ସମୟରେ ଏ ପଟରେ ଭାରତର ପ୍ରସ୍ତୁତ ଯଥେଷ୍ଟ ଓ ଜବାନମାନେ ପ୍ରଫୁଲ୍ଲ ଓ ସଜାଗ ଥିବା ଦେଖିଛୁ । ତାହା ପ୍ରତିରୋଧ ପାଇଁ ଯଥେଷ୍ଟ । କିନ୍ତୁ ଶତ୍ରୁଙ୍କ ଅପପ୍ରଚାରର ଅଧିକତର ବିପଦ୍‌ଜନକ । ଯଥା— 'ଦେଖୋ ଉଧର୍‌ ମାରେ ଡର୍‌ବଢମେ ଚଟା ଚଠ୍‌ କୈସେ ଗପ୍ପା ବନତା, ଇଧର୍‌ କ୍ୟା ହୋତା ?'

ଓ, ଏ ସରଲ ପାହାଡ଼ି ମନରେ ସେହି ଭୁଲ ଧାରଣା ପ୍ରଭାବ ପକାଇ ଥାଏ । ସୃଷ୍ଟ ଶତ୍ରୁଙ୍କ ଉଦ୍ଦେଶ୍ୟ ମୂଳକ ଅପପ୍ରଚାରକୁ ଖଣ୍ଡନ କରିବା ହେବ ପ୍ରକୃତ ପ୍ରସ୍ତୁତି ।

ଧାରଚୁଲା ସ୍ଥିତ ମୋହନସିଂ ଗଡ଼ବ୍ୟାଲ୍‌ଙ୍କ ଦୋକାନରେ ଶହେ ଟଙ୍କିଆ ନୋଟଟି ଭଙ୍ଗାଇଲି । ପୋଷ୍ଟାଲ୍‌ ଷ୍ଟାଫ୍‌, ଦୋକାନ-ବାଲା ଓ ସାଧାରଣ ଲୋକେ ସମସ୍ତେ କୈଳାସ ଦର୍ଶନ କରି ଫେରି ଥିବା ହେତୁ ବଧାଇ ଦେଉଥାନ୍ତି । କହୁଥିଲେ —

ଆମେ ତ ଆଜି ଯାଇ ପାରୁ ନାହୁଁ, ତୁମକୁ ଦେଖି ଯାହା ପୁଣ୍ୟ ଅର୍ଜୁଛୁ ।

ଭଗବାନ ଠାରୁ ଭକ୍ତ ବଡ଼ । ଏମାନଙ୍କ ଭକ୍ତି ଦେଖି ମୁଣ୍ଡ ଲଇଁ ଯାଉଥାଏ ।

ସଦାନନ୍ଦସ୍ୱାମୀ କହୁଥିଲେ— ଭଗବାନଙ୍କୁ ଖୋଜି ଖୋଜି ଯେତେବେଳେ ଦେଖିବା ଯେ ଭଗବାନ ବାହାରେ ନାହାନ୍ତି, ସେତେବେଳେ ଅନ୍ତର୍ମୁଖୀ ହୋଇ ନିଜ ଭିତରେ ଭଗବାନଙ୍କୁ ଖୋଜିବା । କଥାଟି ଜଣାଥିଲେ ମଧ୍ୟ, ତୀର୍ଥ ନ କଲେ ତାର ସତ୍ୟତା ଉପଲବ୍ଧି କରି ହୁଏ ନାହିଁ ।

ଧାରଚୁଲା ଠାରୁ ବାଲବାକୋଟ ଦଶମାଇଲ ।

(ଗୁଲଣ୍ଟ— ୩୧୨+୧୦=୩୨୨)

ସେଠାରେ ଡାକବଙ୍ଗଳାରେ ରହିଲୁ । ସହଯାତ୍ରୀଙ୍କ ଅନୁରୋଧ କ୍ରମେ ସ୍ୱାମୀ ରାମଦାସବାବାଜୀଙ୍କୁ ରାନ୍ଧିବାରେ ସାହାଯ୍ୟ କଲି । ସେମାନଙ୍କ ସହିତ ଖାଇଲି । ସେମାନଙ୍କ କଥାରେ ରାତିରେ ବଗିଚାରୁ କଦଳୀ ପତ୍ର କାଟିଲି, ଚୋରିଗଲି । ମାଲି ସକାଳେ ଫାଟିଛୁଣ୍ଡ କଲା । ସେମାନେ ସେ କଥା ବୁଝିଲେ ।

ରାତିରେ ଗଛରୁ ପତ୍ର କାଟିବା ମୋର ମଧ୍ୟ ନିୟମ ବିରୁଦ୍ଧ ।

ବାଲ୍‌ବାଭୋଟ ଠାରୁ ଚାଲିଲୁ ଅସଭୋଟ ଅଭିମୁଖେ । ସାଙ୍ଗରେ ରହିଲେ ଦତ୍ତାତ୍ରେୟାନନ୍ଦଜୀ । ବାଟରେ, ନଦୀ କୂଳରେ ଗୋଟିଏ ଗଛକୁ ଦେଖାଇ କହିଲେ— 'ଏହାର ମୂଳରେ କାଳୀ ଅଛନ୍ତି ।' ସ୍ଥାନୀୟ ଲୋକଙ୍କଠୁ ବୁଝିଲି ଯେ, ରାତିରେ ସେଠାରେ କାଳୀଙ୍କୁ ପୂଜା ଦିଆଯାଏ । କିନ୍ତୁ ସେ ବିଷୟରେ କୌଣସି ସ୍ଥୂଳ ସଙ୍କେତ ବା ଜଡ଼ ସନ୍ଧାନ ନ ଥିଲା ।

କୌଣସି ଗୋଟିଏ ଜଲ୍‌ର ଶିଳ୍ପାନୁଷ୍ଠାନ ଦେଖିବା ପାଇଁ ଆମେ ଦୁଇ ଜଣ ରହିଗଲୁ ।

ଅନ୍ୟ ସହଯାତ୍ରୀମାନେ ପଛରୁ ଆସି ଆଗେଇ ଗଲେ । କିଛି ସମୟ ପରେ ମୁଁ ମଧ୍ୟ ବାହାରି ପଡ଼ିଲି । ଦତ୍ତାତ୍ରେୟାନନ୍ଦଜୀ ପୁରୁଣା ଚଳି ରାସ୍ତା ଦେଇ ଯିବେ ବୋଲି ରହିଗଲେ ।

କିଛି ସମୟ ଗଲା । ଗୋଟିଏ ଡ଼ାହାଣ ମୋଡ଼ ପାର କରି ଦେଖିଲି ସେମାନେ ଆଗରେ ଗୋଟିଏ ପୋଲ ପାଖରେ ଅଛନ୍ତି । ପୋଲଟି ବାଁ ମୋଡ଼ ଉପରେ ଅବସ୍ଥିତ । ଆଉ ପଟେ ଗୋଟିଏ ଟ୍ରକ୍ ଥିଲା । ବ୍ୟବଧାନଟି ପ୍ରାୟ ଦେଢ଼ ଫର୍ଲଙ୍ଗ ଥିଲା । ସେମାନେ ପୋଲ ପାର ହୋଇ ଟ୍ରକ୍‌ରେ ବସି ଚାଲିଗଲେ । ମୋ ପାଇଁ

ଅପେକ୍ଷା କରି ନଥିଲେ । .

ମେଢ଼ୁ ଜାଗାଠାରୁ ଉଠାଣି ଥିଲା । ଆସ୍କୋଟ ଅଦୂର ପାଞ୍ଚ ଛଅ ମାଇଲ ଖଣ୍ଡେ ବାକିଥିଲା । ସେଥି ଝାଣ ଥିଲା । ଭାବିଲି— ଏଇ ମାନେଇ ଢେର ପୁଣ୍ୟ କରିଛନ୍ତି. ଆଜ ମୁଁ କହୁନାହିଁ ଯେ ଭଗବାନ ଏମାନଙ୍କୁ ହିଁ ସୁବିଧା ଦେବେ । ମୁଁ ମୋର ସୁବିଧା ବେଗ ଦେଖି ଏକୁଟିଆ ଚାଲୁଥାଏ ।

ଉଠାଣିର ପ୍ରଥମ ଡାହାଣ ବଙ୍କ ଟପିଲା ପରେ ଟ୍ରକ୍ଟି ଠିଆ ହୋଇଥିବା ଦେଖିଲି । କାଦୁଅରେ ଚକ ଫଶି ଯାଇ ଥିଲା । ଡ୍ରାଇଭରଜୀ ଫେଡ଼ି ଯିବାକୁ ପାରିଲେ । ସମସ୍ତେ ମିଶି ଆସ୍କୋଟରେ ପହଞ୍ଚିଲୁ ।

କୈଳାସ ତୀର୍ଥ ଭ୍ରମଣରେ ପଦଯାତ୍ରା ପର୍ଯ୍ୟାୟ ଶେଷ ହେଲା ।
ସମୁଦାୟ ତିନି ଶହ ଅଠାଇଶ ମାଇଲ ଚାଲିବାକୁ ପଡ଼ିଥିଲା ।

ବାହୁଡ଼ା—ଆସକୋଟ

ଆସକୋଟ ମାନେ ମୋ ପାଇଁ ଥିଲା ଗାଡ଼ି, ମୋଟର, ଟେଲିଗ୍ରାଫ ଓ ଆକଣ୍ଠ ଗ୍ରାସ । ପରିଭ୍ରମଣର ପ୍ରସ୍ତର ଯୁଗର ସଭ୍ୟତାରୁ ଆସି ପହଞ୍ଚିଛୁ ବିଂଶ ଶତାବ୍ଦିର ପ୍ରଥମାର୍ଦ୍ଧରେ । ତିନି ଶହ ଅଠାଇଶ ମାଇଲ ଚାଲିବା ପରେ ଚାଲିବା ପାଇଁ ସବୁଜ ଗୁଡ଼ ପାଇଥିଲା, ନା ଥିଲା ପାହାଡ଼ ଚଢ଼ିବା ଝୁଙ୍କ । ବରଂ ଦରକାର ହୋଇ ଯାଇ ଥିଲା । ତାର ଅବସାନ ଓ ଆରାମ ଖୋଜୁ ଥିଲି । ସହଜ ଯାହାର ଆଶାରେ ମନ ଉଚ୍ଛୃଙ୍ଖଳ ହୋଇ ଉଠିଥିଲା ।

ସମୟ ଠିକ୍ ବାରଟା ଥିଲା ।

ପହଞ୍ଚିବା ସାଙ୍ଗେ ସାଙ୍ଗେ ଅଗ୍ରବାଳ ହୋଟେଲରେ ଅଠୁଆ ଅଗାଧୁଆ ଥାଇ ବକ୍ରେ ଅକଣ୍ଠ ଗୁରୁ ଭୋଜନ କୋଇଲି ।

ପଢ଼ା କଥାନ୍ତରେ ଦୁଇ ଟେରଣ୍ଟା ଶବ୍ଦ ଗୃହସ୍ଥ ପର୍ଯ୍ୟନ୍ତ ଚେଢ଼ି ଯାଉଥିଲ । ମୋର ଡାହିରେ ହାତ ଦୁକଲେ । ଦାଢ଼ି ମୋର ପକା ଗଛ ଠାରୁ ବୟସରେ ବଡ଼ ।

ମତ ଗୁହିଁକି ଧର୍ମ ଚଞ୍ଚଳ । ଲୋକ ମାନଙ୍କର ନିଜ ନିଜର ଧଡା ନେଇ ଅଭଯାତ । ଯାତ୍ରୀମାନେ ଶାନ୍ତ ଓ କ୍ଷୀଥିଲ । ନା କୌଣସି ପ୍ରସ୍ତୁତ ବା ପ୍ରବୃତ୍ତି ପରିସ୍ଥିତି ।

ଘର ତା ଆଜ ଭେଟେନ ହୁଏ ! ତାହାଠେ ହେଁ ପାଦାରେ ଓଲ୍ହାଇଲେ ଅସିଛ ଘର । ସମସ୍ତ ନା ଅବ ମେଳେ ? ଗଢ଼ ମୋହଲରେ ବସି ଆଖି ବୁଜିଦେଲେ ଦେଖଇଲି ପରି ଘରେ ଦେଖୁଁ ଚିତ୍ର ।

ବୃଦ୍ଧ ପା'ର ସ୍ମୃତି ତାର ଘର ହବୁଠି । ଅନନ୍ତ ତା'ର ଅନ୍ତର୍ଗତ ତା ପାଇଁ ସବୁ ସମସ୍ତ ବର୍ତ୍ତମାନ ।

ସଂଯୋଗ ଗୋଡ଼ ହାତ ଗୁଡ଼ି ଖୋଲିଲ — ନିସ୍ତବ୍ଧ, ନିର୍ବିକାର ଓ ମୃନ୍ଦରେ ।

ବୁଢ଼ା ରାମଦାସଜୀ ମଧ୍ୟ ନିଜ ବନ୍ଧମ ଧ୍ୟାନରେ ଶିଥିଳ ଥିଲେ, — ଦେଖଛ, ଦେଖଉଛୁ ।

ଭାରତର ସେଣ୍ଟ ହୁଇ ପ୍ରାନ୍ତୀୟ ଗତାନୁଗତିକ ଧାରା ଓ ଢଙ୍ଗରେ ଥିବା ଧାରାରେ ଆସେ ନେହେଲ ଘଟଣା, ଆସେ ହେଲ ଖବର । କୈଳାସ ଯାତ୍ରା ଭିତ୍ରେ ପେନସୁ ଆସେ ହେଲ ପୂର୍ଣ୍ଣ ।

ଜଣେକ— ଆଜ୍ଞା ନମସ୍କାର ।

— ନମସ୍କାର ।

— କିଣ ଦର୍ଶନ କଲେ ?

— ହଁ ଏକ ଝଲକ ମଧ୍ୟ ପାଇଛି ।

— ଆପଣ ବଡ ଭାଗ୍ୟବାନ ।

— ଭଗବାନଙ୍କର ଇଚ୍ଛା । ଆମେ କେବଳ ନିମିତ୍ତ ମାତ୍ର ।

— ଆପଣ ତ ଆଜି ଦର୍ଶନ କରିପାରିବେ ନାହିଁ, ଆପଣଙ୍କୁ ଦେଖିଲେ ମାଆ ନିଜେ ପୁଣ୍ୟ ହେବ ।

ତାର ଉତ୍ତରରେ ମୁଁ ଦେଇଥାଏ କୋମଳ ଦୃଷ୍ଟିରେ ସାମାନ୍ୟ ନିଜେ ହସ । ତା ପରେ ମୁଣ୍ଡ ଝୁଙ୍କାଇ ଅନୁମତି ନେଇ ବିଦାୟ ।

ଆନନ୍ଦ ଭୈରବ କଞ୍ଜର ଝଂକାରରେ ଦୁଇ ଜଣଙ୍କର ହୃଦୟ ପୁଲକିତ ହୋଇ ଅଛି । ଦେନେବାଲା ଭଗବାନ ଏକ ସଙ୍ଗରେ ଦୁଇ ଜଣଙ୍କୁ ଦେଇଥାନ୍ତି ।

ବର୍ଷ ଧରି ଆସ୍‌ଟ୍ରୋଷ୍ଟ ଘୁଞ୍ଚିଲା । ଦେଖିଲି ପିଠୋରାଗଡ଼ରେ ।

କ୍ଲେଟ ଦୁଇଟି ଘଣ୍ଟା ମନରୁ ଚାଲିଲା ।

ବସନ୍ତର ଜଣେ ସନ୍ୟାସିନୀ ଥିଲେ । ପାଖରେ ଗୋଟିଏ ବାଳକ ଥିଲା । ତାକୁ ସେ ଖୁବ୍ ଆଦର କରୁଥିବା ଦେଖାଗଲା । ଭଟ୍ଟରାଜୀଙ୍କ ମନରେ ସ୍ଫୁରଣ ଉଚ୍ଛ୍ୱାସ ଆସିଲା । ତାକୁ ସେ ଦବାଇ ପାରିଲେ ନାହିଁ । ପଚାରି ବସିଲେ—

କ୍ୟା ୟେ ଆପକା ଲଡ଼କା ହୈ କ୍ୟା ?

ସନ୍ୟାସିନୀ ମୁଣ୍ଡ ବୁଲାଇ ଦେଲେ ।

ଉଚ୍ଛ୍ୱାସ ସ୍ଫୁରଣ ବାରମ୍ବାର । ଫେର ସେହି ପ୍ରଶ୍ନ ହେଲା ।

ସନ୍ୟାସିନୀ ହସି ଉତ୍ତର ଦେଲେ— ମୈ ତୋ ସନ୍ୟାସିନୀ ହୁଁ, ମେରେ କୈସେ ଲଡ଼କା ହୋ ସକତା ?

ଭଟ୍ଟଜୀଙ୍କ ମୁହଁ ଅମ୍ଲିଳା ପଡ଼ିଗଲା । ତାଙ୍କ ଉପରେ ବସ୍‌ରେ ଥିବା ଯାତ୍ରୀଙ୍କର ଟିକିଏ ବିରକ୍ତି ଜାତ ହେଲା । ଅତାନ୍ତର ପରିସ୍ଥିତିକୁ ଏଡ଼ାଇବା ପାଇଁ କହିଲେ—

ଆପଣ ହେଲେ ସନ୍ୟାସିମା । ଯେହେତୁ ଜଗତର ମାଁ । ଏ ବାଳକ ଆପଣଙ୍କ ସାଙ୍ଗରେ ଯାହା କରୁଛନ୍ତି ବୋଲି ପଚାରୁଥିଲେ । ଉଦ୍ଦେଶ୍ୟ ଥିଲା ଆପଣଙ୍କ ସମ୍ବନ୍ଧ ପରିଚିତ ହେବା । ତାଙ୍କର ମିଛ ଭାଷା ଉପରେ ଦଖଲ ନାହିଁ ।

ସନ୍ୟାସିମା (ହସ ହସ ମୁହଁରେ)—

ଗାଁର ବାଳକ, ସେ ତାର ବନ୍ଧୁ ଘରକୁ ଯାଉଛି । ତାର ମାଁ ତାକୁ ସାଙ୍ଗରେ ନେବାକୁ କହିଛନ୍ତି । କିନ୍ତୁ ସମୟ ପରେ ସେ ବାଳକଟି ଓହ୍ଲାଇ ପଡ଼ିଲା । ସନ୍ୟାସିନୀ ତାକୁ ସତର୍କରେ ଯିବା ପାଇଁ ଉପଦେଶ ଦେଲେ ।

ଆମେ ସବୁ ଲଜ୍ଜିତ ହେଲୁ । ସନ୍ୟାସିମା ଦୟା, କ୍ଷମା ଓ ପ୍ରେମର ଆଧାର । ସେ ପର ଆଧାର ସେ ହୋଇ ପାରିଛନ୍ତି, ଯେହେତୁ ସେ ନିଷ୍କଳଙ୍କିନୀ । ଆମର ଦୃଷ୍ଟିକୋଣ ବିକୃତ । ଦୈଳାସବୁ ଫେରିଲେ ବା କଣ ହେବ ? ଆମେ କିନ୍ତୁ ଭଲ ଲୋକ ଯେହେତୁ ଭୁଲ ବୁଝି ଅନୁତପ୍ତ । କିନ୍ତୁ ଦୁଷ୍ଟ ଲୋକେ ସେହି କଥାକୁ ଧରି କଦର୍ଥ କରି ନିନ୍ଦା କରିବାରେ ଲାଗିପଡ଼ି ଥାନ୍ତି । ସେଥିରେ ସେମାନଙ୍କର ଆନନ୍ଦ ।

ଏଣୁ ସବୁ ଶୁଣୁଛି ଦତ୍ତାନସ୍ୟାନନ୍ଦଜୀ କହିଲେ—

ସନ୍ୟାସିମା ଉଚ୍ଚକୋଟିର, ତାଙ୍କ ଠାରୁ ଦୀକ୍ଷା ନିଅ ।

ଥଟ୍ଟା ଭବ, ହସି ଉଡ଼ାଇ ଦେଲ ।

ଅଧା ବାଟରେ ବସ୍ ଅଟକି ଗଲା । ଆରପଟରୁ ବସ୍ ଆସିବ ।

ସମସ୍ତେ ଏଲ୍‌ଭାଇ ଜଳଖିଆ କଲୁ । ସେଠୁ ଚଉଡ଼ ବାନ୍ଧ ସଡ଼କ ଉପରେ ଅଲ୍‌ମୋଡ଼ାର ଛଟା ଦେଖି ଦୋକାନରେ ବେଞ୍ଚ ଉପରେ ଓଳାବାଡ଼ି ହୋଇ ଯେତେବେଳେ ବସି ହେଲେ, ଦେଖଣାହାରୀଙ୍କ ଭିତରେ ଫୁଲ୍ଲ ଫୁଲର ଗୁନ୍ଥନ । ମୋ କାନରେ ଗୋଟିଏ କଥା ମନେ ପଡ଼ିଲା—

ଦେଖିବାକୁ ମଧ୍ୟ ଅଶେଷ, ଶୁଣିବାକୁ ଅଛି ବହୁତ ବଡ଼ ଦେଶ ।

ଶୁଣି ମନ ବଡ଼ ଖୁସି ଲାଗିଲା । ମୁଁ ମଧ୍ୟ ସେ ବଡ଼ ଦେଶ ଚଢ଼ିଆର ଭାଗୀଦାର ।

ପିଠୋରାଗଡ଼ରେ ପହଞ୍ଚି ପ୍ରଣବାନନ୍ଦଙ୍କ ଧର୍ମଶାଳାରେ ରହିଲୁ । ସେଠାରେ ହୋଟେଲ ଗୁଡ଼ିଏ । କିନ୍ତୁ କୈଳାସ ଯାତ୍ରୀଙ୍କ ପାଇଁ ପରିବହଣ ନାହିଁ ଯାଏ ନାହିଁ । ପୂର୍ବ ଦିନ ଟନକପୁର ବସ୍ ଷ୍ଟାଣ୍ଡରେ ମୋଟେ ତିନି ଅଳ୍ପ ସମୟରେ ସ୍ପଷ୍ଟ ବଙ୍ଗଳାରେ କଥା-ବାର୍ତ୍ତା ଆରମ୍ଭ କରିଥିଲା । ଆଗରୁ ଲୁଣ ହ୍ରଦରେ କଥା-ବାର୍ତ୍ତା ଆରମ୍ଭ କରିଥିଲା । କିନ୍ତୁ ସେତେବେଳେ ସେ ବଙ୍ଗଳା କୁଆଡ଼େ ଯାଇଥିଲା । ଭାବିଥିଲା କଅଁଳିଆ ହେଲେ କେତେବେଳେ ଭଡ଼ା କମାଇବାକୁ କହୁଥାନ୍ତେ ।

ପିଠୋରାଗଡ଼ରୁ ଆଲମୋଡ଼ା ଜୁଲାଇ ତେରଶି ତାରିଖ ରାତିରେ ଧନ ଆସି ପହଞ୍ଚିଥିଲୁ । ବସ୍‌ରେ କେବଳ ଆମେ କୈଳାସ ଯାତ୍ରୀମାନେ ହିଁ ଥିଲୁ ।

ବାଟରେ ଆମର ପଟର ବସ୍ ଅଟକିଲା । ଭିତରୁ ଜଣେ ପାଟିକଲା—

— ନମସ୍କାର ।

— ନମସ୍କାର ।

—କୈଳାସ ଦର୍ଶନ ହେବ ?
— ପଞ୍ଚକୋଶ ମଧ୍ୟ ।
— ଲୋକ ସବୁ ଯାତ୍ରୀ କାହାନ୍ତି ?
— ଏଣ୍ଟୁ ଉପରକୁ ।
— କଣ କଣ ?
— ଯେଉଁମାନେ ଅଛନ୍ତି, ସମସ୍ତେ ।
— ନା, କଣ କଣ କୈଳାସ ଯାତ୍ରୀ ?
— କହନ୍ତି ତ ଯେଉଁମାନେ ଅଛନ୍ତି ସମସ୍ତେ ।
— ମୋତେ କହିଲେ ?
— ହଁ ଠାକୁରଙ୍କ ଦେଖା ହୋଇଥିଲା ।

ନେଇ ଥିଲା ସେହି ଯୋଗୀ ରକ୍ତନୈତିକ କର୍ମୀ ଯାହା ସବୁଠି ହୋଟେଲରେ ଦେଖା ହୋଇଥିଲା ।

ମୋର ସହଯାତ୍ରୀମାନେ ତାଙ୍କ ଭାଷାରେ ତାଙ୍କ ଭିତରେ କଥା ହେଲେ —

— ଆମ ଅପେକ୍ଷା ଏହାକୁ ବେଶି ଲୋକ ଜାଣନ୍ତି ।

ମୁଁ ବାଉଳାଟାଏ ହୋଇ ମୋ ହୋଟେଲ୍‌ରୁ ଥାଏ କୈଳାସ ଗିରି ପାଖି । ରାତ୍ରି ଉପର ସବୁ ପାଣ୍ଡି ଦେଖୁଥାଏ । ପ୍ରତିରୋଧ-ଗ୍ଲାନିରେ ଭିତରେ ଚେଳ ଚେଲ ପହଁରି ଆଗେଇ ଥାଏ । ସେମାନେ ଦ୍ୱାର ଜଣ ଯୋଜନାରେ ହୋଇ ଆଗେଇ ଥିଲେ । ସେମାନଙ୍କୁ ସେତିକି ପ୍ରତିପକ୍ଷର ମୁହାଁମୁହିଁ ହେବାକୁ ପଡ଼ୁନଥିଲା । ବାଟ କଟେଇ ଆଗେଇ ଥିଲେ ।

## ଆଲମୋଡ଼ା ଦୁଆରପାଳ

ଅଲ୍‌ମୋଡ଼ା ପର୍ଯ୍ୟନ୍ତ ସମସ୍ତେ ମିଶି ଫୋଟ ଉଠାଇଲୁ । ଯେଉଁ ହଳକ ଟେଣ୍ଟ ଖାଟ ନେଇଥିଲି, ତାକୁ ଆଳମୋଡ଼ାରେ ଫିଙ୍ଗିଲି

ଶେଠଜୀ କହିଲେ—

ତୁମେ ଠିକ୍ ଫାରମ୍‌ରେ ଆସି ଯାଇଛ । ହସିଲି । ଇଂରେଜୀ ପାଠୁଆ ଓ ତାର ଛତା ପ୍ରତି ତାଙ୍କର ଟିକିଏ ଦୁର୍ବଳତା ଅଛି, ବୋଧହୁଏ । ଦତ୍ତାତ୍ରେୟାନନ୍ଦଜୀଙ୍କ ସାଥିରେ ଆନନ୍ଦମାଁ ଆଶ୍ରମକୁ ଯାଇ ସିଦ୍ଧା ଅନ୍ନ ଖାଇଲି । ସେଠାରୁ ଗୋବିନ୍ଦ ଲାମାଙ୍କୁ ଦର୍ଶନ କରିବାକୁ ଗଲି । ସେ ଜଣେ ଜର୍ମାନ ଲୋକ । ତିବତୀୟ ଧର୍ମରେ ଦୀକ୍ଷିତ । ଦୀକ୍ଷିତ ହେବା ପରେ ନାମ ବଦଳାଇ ଗୋବିନ୍ଦ ଲାମା ରଖିଛନ୍ତି । ତିବତୀୟ ଧର୍ମ ବିଷୟରେ ଅନେକ ଉପାଦେୟ ବହି ଲେଖିଛନ୍ତି । ସସ୍ତ୍ରୀକ ବାସ କରନ୍ତି ।

କାଠରେ ଜଣେ ଇଂରେଜୀ ଯୁବକକୁ ଦେଖିଲି । ବୟସ କୋଡିଏ ଖଣ୍ଡେ ହେବ । ପିନ୍ଧିଥିଲା ପୀତ ବର୍ଣ୍ଣର ଉଚ୍ଚ ଅଙ୍ଗି (ହାଉଆଇନ) । ବେକରେ ତାର ଥାଏ ରୁଦ୍ରାକ୍ଷମାଳା ।

ଦତ୍ତାତ୍ରେୟାନନ୍ଦଜୀ ପଚାରିଲେ—

ଗୋବିନ୍ଦ ଲାମାପାଖରୁ ଆସୁଛ ବୋଧହୁଏ ?

ସେହିଁ ଉତ୍ତରିଲା । କହିଲା ଯେ ସେ ସିଧା ସଳଖ ଇଂଲଣ୍ଡରୁ ଆସିଛି । ଡେ଼ହରାଡୁନ୍ ସ୍ଥିତ 'କାଳୀ ମାତା' ମନ୍ଦିରରେ ରହେ । ଏଠାକୁ ଗୋବିନ୍ଦ ଲାମାଙ୍କୁ ଦର୍ଶନ କରିବାକୁ ଆସିଛି ।

ଗୋବିନ୍ଦ ଲାମାଙ୍କ ସହିତ ଦେଖା ଓ କଥାବାର୍ତ୍ତା ହେଲା । ତିବତୀୟ ଘଣ୍ଟା ବଳୀ ଶୁଣିଲେ । ଉତ୍ତେଜିତ ହୋଇ କହିଲେ— ଅବସ୍ଥା ଅସମ୍ଭାଳ ହୋଇ ଉଠିଛି, ଆଉ ସହି ହେଉନି । କଣ ଗୋଟାଏ ଗୁରୁ ଘଟଣା ଅଳ୍ପଦିନ ଭିତରେ ଘଟିବ ।

ମୁଁ— ଘଟିବ ବୋଲି ମୋର ବିଶ୍ୱାସ ହେଉନି । କାରଣ ଗୀତାରେ ଅଛି :—

ଯଦା ଯଦା ହି ଧର୍ମସ୍ୟ ଗ୍ଲାନି ର୍ଭବତି···

ଧର୍ମର ଗ୍ଲାନି ପୁରପୁର ଘଟିଛି ବୋଲି ମୋର ବିଶ୍ୱାସ ହେଉନି । ଏବେ ମଧ୍ୟ ଧର୍ମ ଅଛି ସେହେତୁ ନିକଟ ଭବିଷ୍ୟତରେ ସେଭଳି କିଛି । ବିଶେଷ ଘଟଣା ଘଟିବ ବୋଲି ମୋର ମନେ ହେଉନି । ଏହି କଥା ବିଷୟରେ ଅନୁଧ୍ୟାନ କରିବା ଥିଲା ମୋର ଏଥି ଯାତ୍ରାର ଉଦ୍ଦେଶ୍ୟ ।

ଏହି ସମୟରେ ସେକ୍ରେଟାରୀ ଓ ଅନ୍ୟାନ୍ୟ ଯାତ୍ରୀମାନେ ଆସି ପହଞ୍ଚିଲେ ।

ଭଗବତୀଙ୍କୁ ଭାରି ଶୋଷ ହେଉଥିଲା । ମୋତେ ପାଣି ଗିଲାଏ ଆଣିବାକୁ କହିଲେ । ମୁଁ ଘର ଭିତରକୁ ଗଲି । କିନ୍ତୁ ଗୋଟିଏ ଲମ୍ବାଙ୍କ ସ୍ତ୍ରୀଙ୍କର ଭୁହାଇ ଭୁହାଇ ପ୍ରଶ୍ନ ବାଣରେ ବ୍ୟତିବ୍ୟସ୍ତ ହୋଇ ଆସିପାରୁ ନ ଥାଏ । କୌଣସି ପ୍ରକାରେ କଥାଟା ବୁଝାଇ ପାଣି ଦେଇ ଆସିବି ବୋଲି କହି ଆସିଲି । ପାଣି ନେବାରେ ଡେରି ହେବାରୁ ଭଗବତୀ ଓ ଜୟନ୍ତୀ ଭାଇଙ୍କୁ କୈଫିୟତ ଦେବାକୁ ହେଲା ।

କହିଲି—ସ୍ତ୍ରୀ ଲୋକଙ୍କ ପ୍ରଶ୍ନ ବାଣକୁ ଏଡ଼ାଇ ଆସି ହୁଏ ନାହିଁ । ଗୋଟିଏ ମୁହୂର୍ତ୍ତ ପୁଣି ମୁଁ ମୋର କର୍ତ୍ତବ୍ୟ ଭୁଲି ନ ଥିଲି । ସେହେତୁ ଏତେ ଚଞ୍ଚଳ ଆସି ପାରିଛି । ଫେର ଯିବାକୁ ହେବ ।

ଜୟନ୍ତୀ ଭାଇ ଅସୁବିଧାଟା ମାନିଲେ ।

ଗଲି । କିନ୍ତୁ ପୂର୍ବର ପ୍ରଶ୍ନର ଉତ୍ତାପନା ଆଉ ନ ଥିଲା । ପାଣିଟି ଦେଇ ଚାଲି ଆସିଲି ।

ସନ୍ଧ୍ୟାରେ ଦେବସ୍ୱରୂପାନନ୍ଦଜୀ ସାଙ୍ଗରେ ରାମକୃଷ୍ଣ ଆଶ୍ରମ ଦେଖିଗଲି । ମଠାଧ୍ୟକ୍ଷ ନାରାୟଣ ଆଶ୍ରମ କଥା ଶୁଣିବା ପରେ କହିଲେ ଯେ ସେ ଶୁଣିବାକୁ ପାଇଥିଲେ ଯେ ନାରାୟଣ ସ୍ୱାମୀ ବାହାରେ ଗୋଟିଏ କାଠ ବାକସ୍ ପୋତି ରଖି ଥାଆନ୍ତି । ସୀତ

ଢାଲରେ ବରଫରେ କାଠବାକସଟିର ଚ୍ଛରିପଟେ ବରଫ ହୋଇଗଲେ, ସେଥିରୁ ବ୍ରରଫ ବାହାର କରି, ସେଠାରେ ଠିଆ ହୋଇ, ଧ୍ୟାନ କରିବା ଢଙ୍ଗରେ ଫୋଟ ଉଠାଇ ଶିଷ୍ୟବର୍ଗ ଭିତରେ ବିତରଣ କରନ୍ତି । ଏହା ଲୋକେ କହିବା କଥା ।

ମୁଁ ଭାବିଲି ଯେ ଏହା ସନ୍ୟାସୀଙ୍କ ଭିତରେ ଥିବା ଇର୍ଷା ହେତୁ ଏହି ଜନରବ । ପରନ୍ତୁ କଣ୍ଡୁ ଏହାଙ୍କୁ ମଧ୍ୟ ଛାଡ଼ି ନାହିଁ ।

ସେଠାରେ ଖାଇଲୁ । ସାଙ୍ଗରେ ବିଦେଶୀ ଲୋକ ମଧ୍ୟ କେତେଜଣ ଖାଇ ବସିଥିଲେ । ଖାଦ୍ୟ ସେମାନଙ୍କର, ଓ ସମସ୍ତଙ୍କର ରୁଚି ଅନୁସାରେ ଦିଆ ଯାଉଥିଲା ।

ପରଦିନ ସୋମବାର । ସକାଳେ ସେଠ୍‌ଜୀ ମୋତେ ଗୋଟିଏ ତାର୍ ସନ୍ଦେଶ ପଠାଇବା ପାଇ ଡ଼ାକଘରକୁ ଯିବାକୁ କହିଲେ । ଗଲି । ତାର୍‌ଟିର ବିଷୟ ବସ୍ତୁ ଥିଲା ଯେ ଆମ୍ଭେମାନେ ଯାତ୍ରାଶେଷ କରି ସର୍ବକୁଶଳରେ ଆଲ୍‌ମୋଡ଼ାରେ ପହଞ୍ଚିଛୁ ।

ବାବୁ ଜଣକ ସେହିକ୍ଷଣି ବେଶିଥିଲେ । ଟେଲିଗ୍ରାମଟି ପାଇ ଆନନ୍ଦ ଗଦ୍ ଗଦ୍ ହୋଇଗଲେ । କହିଲେ ଯେ ତାଙ୍କର ସେଦିନ ସୋମବାର ଉପବାସ । ସକାଳୁ ସକାଳୁ ଏହି ସୁସମ୍ବାଦ ପାଇ ସେ ନିଜକୁ ଧନ୍ୟ ମଣୁଛନ୍ତି ।

ଏହି ସୁସମ୍ବାଦଟି ଶେଠ୍‌ଜୀଙ୍କୁ ଦେବାରୁ ସେ ମଧ୍ୟ ଆନନ୍ଦରେ ବିଭୋର ହୋଇଗଲେ । ଚତୁର୍ଦ୍ଦିଗ ଆନନ୍ଦମୟ ଦେଖି ମୁଁ ମଧ୍ୟ ଆନନ୍ଦ ଅନୁଭବ କଲି ।

ସେ ଥିଲା ତାରବାବୁଙ୍କର ଆଧ୍ୟାତ୍ମିକତାର ପ୍ରଭାବ । ତାରବାବୁ ପରି ଜନତା ସଂସ୍ପର୍ଶରେ ଆସିବା ଲୋକେ ଯାଦି ଏହି ପରି ଖୁସ୍ ମିଜାଜ୍‌ର ହୁଅନ୍ତେ, ସମାଜ ବଦଳି ଯିବ ।

କିନ୍ତୁ ସେହି ଟେଲିଗ୍ରାମ କରି ଆସିବା ପରେ ମନପ୍ରାଣ ଅକୁଳ ଆବେଗରେ ଉଚ୍ଛୁଳି ଉଠିଲା ଘରକୁ ଯିବାକୁ । ଇଚ୍ଛା ହେଉଥାଏ ଗଣ୍ଡେ ପଖାଳ ଓ ଗୋଟେ ବାଇଗଣ ପୋଡ଼ା ଯୁଟନ୍ତାକି ?

ଘର ଲୋକେ, କେତେ ଦୁଶ୍ଚିନ୍ତାରେ ଦିନ କାଟୁଥିବେ । ବଡ଼ ଆଖିରୁ ଲୁହ ଗଡ଼ୁଥିବ । ଆତ୍ମୀୟ ସ୍ୱଜନ ଉତ୍‌ଗ୍ରୀବ ହୋଇ, ମୋ ଯାତ୍ରା ବିଷୟ ଶୁଣିବା ପାଇଁ ମୋର ଫେରିବା ବାଟକୁ ଚାହିଁ ରହି ଥିବେ ।

ଅଫିସ ଲୋକେ କେତେ ବ୍ୟଗ୍ରଥିବେ ମୋତେ ଦେଖିବାକୁ । ମୁଁ ଜଣେ ସେମାନଙ୍କର କୈଳାସ ଫେରନ୍ତା ସହକର୍ମୀ । ଦୁଇ ମାସର ଦାଢ଼ି ନେଇ ଦୁଇ ମାସର ଅଙ୍ଗାର ବାଳକୁ ନେଇ, ଅଗାଧୁଆ ଅଖିଆ ଦେହକୁ ନେଇ ପରେ ପରେ ଝଡ଼ମାଡ଼ ଖାଇ ଓ ବରଫ ଦେଶରେ ଥଣ୍ଡାର ପ୍ରକୋପ ସହିଥିବା ହେତୁ ହୋଇଥିବା ମୁହଁରେ କଳାଦାଗ ନେଇ ପ୍ରମାଣ ଦେବ ଯେ ମୁଁ କୈଳାସ ଫେରନ୍ତା ।

କେତେ ବନ୍ଧୁ ମିଳନ । କେତେ ଆଦର ସମ୍ଭାଷଣ ।
ମନ ବ୍ୟଗ୍ର ହୋଇ ଉଠିଲା—ଘରକୁ ଯିବି, ଦେଶକୁ ଯିବି ।
ମୋହ ଛୁଟିଲା । ମୋହ ଘାରିଲା ।
କହିଲି— ଘରକୁ ଯିବି ।

ହଠାତ୍ ମୋର ଏ ଅବସ୍ଥା ଦେଖି ସମସ୍ତେ ଅନ୍ତର୍ମୁଖୀ ହୋଇଗଲେ ।

କିନ୍ତୁ ଶେଠ୍‌ଜୀ କହିଲେ — ହେବା କଥା, ତାମସ୍ର ସରିଯାଇଛି, ଘର ମନେ ପଡ଼ିବା କଥା, ଯାଆନ୍ତୁ ଆମକୁ ଭୁଲି ଯିବେନି ତ ?

ମୁଁ— ଜୀବନରେ କୈଳାସ ଦର୍ଶନ କେବଳ ଗୋଟିଏ ଘଟଣା । ନା କୈଳାସ ଦର୍ଶନ ଭୁଲି ପାରିବି, ନା ତୁମକୁ ।

ତନି ମୂର୍ତ୍ତି ମିନଟ୍ ଭିତରେ ଯାବତୀୟକୁ କମ୍ବଳ ଭିତରେ ରଖି ଗୁଡ଼ା ଗୁଡ଼ି କରି ବାନ୍ଧି ବନ୍ଧଣୀ କାଖେଇ ବାହାରି ପଡ଼ିଲି । ଦତ୍ତବଧ୍ୟାନନ୍ଦଜୀ ପୂଜାପାଠ କରୁଥିଲେ । ହସି ନମସ୍କାର କଲେ । ଅନ୍ୟ ସମସ୍ତଙ୍କଠୁ ଠିକଣା ଲେଖାଇ ନେଲି ।·

ସେତିକିବେଳେ ଗୋଟିଏ ବସ୍ ଷ୍ଟାର୍ଟ ଦେଇଥିଲା । ବସି ପଡ଼ିଲି । ଗାଡ଼ି ଛାଡ଼ିଲା ।

ଆଲ୍ମୋଡ଼ା ଗଲା । ଟେଡ଼୍ ବୃକ୍ଷରାଶି ଗଲେ । ଗାଡ଼ି ଗଡ଼ିଲା ।

ଗାଢ଼ ଶାଗୁଆ ଗହଳ ଜଙ୍ଗଲ ଗଛ ପଞ୍ଝତର ହେଲା ।

ଗୋଟିଏ ପରେ ଗୋଟିଏ ବନାମୀ ଛବି ଆଗରେ ପଡ଼ି ଧାଇଁ ଧାଇଁ ଆସି, ଅଡ଼େଇ ହୋଇ, ପଛକୁ ହଟି, ଲୁଚେଇ ଗଲେ— ଗୋଟେ ସବୁଜର ପରଳ ଟାଣି ।

ତାପରେ ————

ମନର ସ୍ୱଚ୍ଛନ୍ଦ୍ ପଛପଟେ ଖେଳିଗଲା ଗୋଟିଏ ପରେ ଗୋଟିଏ କୈଳାସ ଯାତ୍ରାର ଧାରାବାହିକ ଦୃଶ୍ୟ ।

ଝଲସି ଉଠିଲା କୈଳାସ ଯାତ୍ରାର ଦର୍ଶନ ଓ ତାହାର ଚଲଣ ।

ହୃଦୟ କପାଟ ଘଣ୍ଟି ଟକଟି ହୋଇଗଲା ।

ପ୍ରଥମରେ ମନେ ପଡ଼ିଲେ ଦତ୍ତବଧ୍ୟାନନ୍ଦଜୀ । ସେ ଜଣେ ଯିଏକି କାୟମନବାକ୍ୟରେ ସନ୍ନ୍ୟାସ କରିଛନ୍ତି । ଜ୍ଞାନର ସଂଯୋଗରେ ତାଙ୍କର କର୍ମର ଗତି । ତାଙ୍କଠି ଥିବା ଗୁରୁଆଡ଼ର ନଜର, ଦୟା ଓ କଷ୍ଟ ସହିବା ଶିକ୍ଷଣୀୟ, ହଁ, ସେହେତୁ ସେ ମୋର ନମସ୍ୟ । ମୋ ପାଇଁ ସେ କଣ କରିନାହାନ୍ତି ? ମୁଁ ତାଙ୍କୁ କଣ ଦେଇଛି ? କୋହ ଆସିଲା ।

ଏବଂ, ମନେ ପଡ଼ିଲେ ମୋହନସିଂ ଗଡବ୍ୟାଲ୍ । ତାଙ୍କ ସହିତ ମୋର ସେତେ ସଂସର୍ଗ ନ ଥିଲା । କିନ୍ତୁ ସେଇଁ ଗୋଟିକ

ଘଟଣା ଦେଇ ତାଙ୍କ ସଂସର୍ଗରେ ଆସିଥିଲ, ସେହି ଗୁଡ଼ୁ ଘଟଣାର ଘାତ ପ୍ରତିଘାତ, ଧକ୍କା ଓ ଚାପ ଭିତରେ ସେ ନିଜକୁ ଯେପରି ଚଳାଇ ନେଇଥିଲେ, ଏବଂ ଲୋକର ଅଭାବ ସଠିକ୍ ଭାବେ ଠଉରାଇ ସେ ଯେପରି ସେହି ଅଭାବକୁ ସହଜ । ଢଙ୍ଗରେ ପୂରଣ କରି ନେଉଥିଲେ, ଏ ସବୁ ମନେ ପକାଇ ତାଙ୍କୁ ମନେ ମନେ ନମସ୍କାର କରିଥିଲ ।

ପୁଣି ମନେ ପଡ଼ିଲେ ଶେଠ୍‌ଜୀ । ତାଙ୍କର ମୋ ଉପରେ ଥାଏ ପିତୃତୁଲ୍ୟ ନଜର । ଯଦି ସେପରି କୌଣସି ଦୁରବସ୍ଥାରେ ପଡ଼ିଥାନ୍ତି ସେ ନିଶ୍ଚୟ ଅଯାଚିତ ଭାବରେ ସାହାଯ୍ୟ କରିଥାନ୍ତେ । ଦଳରେ ତାଙ୍କର ଉପସ୍ଥିତି ମୋତେ ଆଶ୍ୱାସନା ଓ ଅଭୟ ଦେଇ ଥିଲ । ସେ ମଧ୍ୟ ମୋର ନମସ୍ୟ ।

ହସାଇଲେ ଭଗତ୍‌ଜୀ । ବଡ଼ ହୋଇ ମଧ୍ୟ ପିଲଟିଏ । ଭକ୍ତ ଓ ଦୟାଳୁ ।

ସହଜାନନ୍ଦ ସ୍ୱାମୀ ! ଅବିଦ୍ୟା ଭିତର ଦେଇ ବିଦ୍ୟା ହାସଲ କରିବ । ତାଙ୍କଠୁ ଶିଖିବାର କଥା ।

ଆଉ କଚ୍‌ଛମ୍ମା ! ଚଉଥିଥର ପାଇଁ କୈଲାସ ପରିକ୍ରମା କରୁଛି । ତାର ସୁଝଗାନ ହେତୁ ଦଳର ଯାତ୍ରା ସୁଗମ ରୂପେ ସଫଳ ହୋଇଛି । ବୁଢ଼ୀ ହୋଇ ଓ ପେଟର ବେମାର ଥାଇ ସେତକ କରିପାରୁଛି । ତାର ବା ମୋର ସେଥେ କଷ୍ଟ ଅଭାବ ନ ଥିଲ ! ଦୁଃଖ ଲଗିଲ । ଏହି ଟିକକ ଅପୂର୍ଣ୍ଣ ରହିଗଲ । ହେ ଭଗବାନ !

ଯଦକ୍ଷର ପରିଭ୍ରଷ୍ଟଂ ମାତ୍ରାହୀନଞ୍ଚ ଯଦ୍‌ଭବେତ
ପୂର୍ଣ୍ଣଂ ଭବତୁ ତତ୍‌ସର୍ବଂ ତତ୍‌ପ୍ରସାଦାତ୍ ............ ଓ,
ପୂର୍ଣ୍ଣମଦଃ ପୂର୍ଣ୍ଣମିଦଂ ପୂର୍ଣ୍ଣାତ ପୂର୍ଣ୍ଣମୁଦଚ୍ୟତେ
ପୂର୍ଣ୍ଣସ୍ୟ ପୂର୍ଣ୍ଣମାଦାୟ ପୂର୍ଣ୍ଣମେବାବଶିଷ୍ୟତେ

ଅନ୍ୟାନ୍ୟ ସମସ୍ତେ ଭଲ ମଣିଷ । ହାତ ନଜର ନିସ୍ତମ ନିଷ୍ଠାରେ ଝଣ୍ଡା ଟାଉରେ ଶୃଙ୍ଖଳା ପୁରୁଷ ! ମନରେ ଅସଂଖ୍ୟ ଶଂଖ, ପଦ୍ମ, ବୀଣା ବାଜି ଉଠିଲି— ଅ—ଉ—ମ

ଓ, ମନେ ପଡ଼ିଲେ ବିଶ୍ୱାଲ ସିଂ ଇନ୍ଦ୍ରାଙ୍କ ସହଧର୍ମିଣୀ— ମା

ଭାଳ ଗର୍ଭରେ ସଦ୍ୟ ଲୀନ ହୋଇଥିବା କୈଳାସ ଯାତ୍ରାର ଘଟଣାବଳୀର ଅନେକନ ଓ ସମୁଦ୍ର ମନ୍ଥନରେ ବଳକା ରହିଲା କେବଳ ସ୍ନେହ, ପ୍ରେମ । ଯିଏ ଯେତିକି ଦେଇ ପାରୁଛି, ସେ ସେତିକି ରହିଲା ମନରେ—

—ଓଠର କୋଣରେ ଗୋଟିଏ ଗୋଟିଏ ସ୍ମିତ ହସ ଫୁଟାଇ,

— ମନର ନୀଳ ଆକାଶରେ ଗୋଟିଏ ଗୋଟିଏ ତାରକା ଫୁଟାଇ,

—ସେହି କେବଳ

ହେଲା ଉପାର୍ଜିତ ଧନ । ଯେତିକି ସ୍ୱାର୍ଥପର ଭାବିଥି ସେ ହେଲା ଋଣ । ହିସାବ ଶେଷରେ ସେଇ କେବଳ ହେଲା ଦେଣ ନେଣ —କେଲେନ୍‌ଶୀଟ ।

ଜୀବନ ଭଲ ମନ୍ଦ ବାଣୀ

ଯୋଗ ବିଯୋଗେ ତାହା ଜାଣି ।

—ସେହି ପୁରୁଣା କଥା ।

ବୁଝିଲି, ଜୀବନ ଯାହାକୁ ଗୋଟିଏ ତୀର୍ଥ ଯାତ୍ରା ପରି ନେବା କଥା ।

ଓ, ଉତ୍ସର୍ଗୀକୃତ ମନର ନୀଳ ଆକାଶ କୋଣରେ ଫୁଟି ଉଠିଲେ ବିଶ୍ୱ ବ୍ରହ୍ମାଣ୍ଡର ସମୁଦାୟ ଅଗଣିତ ତାରା ନକ୍ଷତ୍ର ପୁଞ୍ଜ ଚୌଳିକ ରଙ୍ଗୀନ ରଶ୍ମିର ଛଟା ଦେଖାଇ ଓ ମୂର୍ତ୍ତିମନ୍ତ ହୋଇ ଶ୍ରାବ୍ୟ ନାଦରେ ମୂର୍ଚ୍ଛନା ଛାଡ଼ିଲେ—— ଅ-ଇ-ଉ-ଏ-ଓ-ମ

ଜାଣିଲି, ମୋ ହିଁ କେବଳ ଏ ସୃଷ୍ଟି ତଥା ମାନବ ସମାଜକୁ ଧରି ରଖିଛି ରକ୍ଷିଛି ।

ଏବଂ, ତନ୍ମଧ୍ୟରୁ, ସେହି ମହାଶୂନ୍ୟରୁ ଜଲ୍‌ଦା ସମ ଛୁଟି ଆସିଲା ଗୋଟେ ଗୋଟିଏ ତାରକା; ବଢ଼ି ବଢ଼ି, ଘୂରି ବୁଲି ଗଡ଼ି ମାଡ଼ି ଆସିଲା ଗୋଟେ ଲମ୍ବ ତରଳ ତପ୍ତମାୟର ଆକୃତି ଓ ଦୀପ୍ତି ନେଇ । ଓଃ ! ସେଇ ହେଲା ସୂର୍ଯ୍ୟ, ଯାହାର ମୂର୍ଚ୍ଛନା ଏଇ ଧରଣୀ ପୃଷ୍ଠର ସୃଷ୍ଟିରେ ବେଶି ହରେ ପରିଲକ୍ଷିତ ହୋଇଛି । ବଢ଼ି ବଢ଼ି ନିକଟେଇ ଆସି ଏକ ଝଟକାରେ ଆଖି ଝଲସାଇ ଆଲିଙ୍ଗନ କରି ମିଳାଇ ନେଲା ଏହି ପାପ ଶୀଖାଟିକୁ— ଘୂରି ବୁଲି ଗଡ଼ି ଉଚ୍ଛୁଳି ନାଚିଲି ସେହି ମହାଶୂନ୍ୟର ବାଣୀର ତାରରେ ବୀଚ୍ୟ ତାଳରେ, ବୀଚ୍ୟ ନାଦରେ— ଓଁ...ଓଁ...ଓଁ

ସବୁ ଶୂନ୍ ଶାନ୍ ସ୍ତବ୍ଧ ।

ଅନୁଭବ କଲି—

ସୋଽହଂ ହଂସଃ ।

ହୋଇ ଅସିଲା । ଟାଉ ହାଲ୍ ଦୁଆନରେ ।
ନାହିଁ ନଥିବା ବର୍ଷା । ନାହିଁ ନଥିବା ଗରମ ।

ଶ୍ରୀଭକ୍ତାଙ୍କର ଏତେ ଭକ୍ତଶାର ବର୍ଷାଦାନ ସତ୍ତ୍ୱେ ପରିବେଶର ତାପ ଅସହ୍ୟ । ହଉ ।

ହରି ଓଁ ତତ୍ ସତ୍



# ବିସର୍ଜନ

— ଏ ହେଲା ୧୯୭୧ ରେ ସେହି ମନ୍ଦାକିନୀର ସ୍ରୋତରେ ଶ୍ରେଷ୍ଠ ଭେଳାଟିର ଗତିକ୍ରମ । ଏ ଭିତରେ ସେ ଅନେକ ଦୂର ଚାଲି ଯାଇଛି ଓ ଅନୁକ୍ଷଣ ଭାସି ଯାଉଛି । ଭାସି ରହିବା ତା'ର ଧର୍ମ ।

ହିମାଳୟ ଗିରି ଲଂଘନ ଠାରୁ ଅନ୍ତହୀନ ଅକଥନୀୟ କଷ୍ଟ ସ୍ୱୀକାର କରି, ଶେଷରେ ଏହି ପୁସ୍ତକଟି ଛାପିଛି । ଉଦ୍ଦେଶ୍ୟ —ମୋର ଭାଇ ଓ ଭଉଣୀମାନେ ସେହି କଷ୍ଟକୁ ନ ଭୋଗି ମଧ୍ୟ ଯେପରି ଏହିସବୁ ଅନୁଭୂତିକୁ ହୃଦୟଙ୍ଗମ ଓ ପାରିଲେ ଅଧିମନାଗତ କରନ୍ତୁ ଏବଂ ଜ୍ଞାନ ଓ ଚୈତନ୍ୟ ପାଇ, ଚିରଦିନ ପାଇଁ ସଇତାନ, ମରଣ ଓ କଳିକୁ ସମାଧି ଦିଅନ୍ତୁ ।

ଏହି ପୁସ୍ତକ ପ୍ରକାଶ ହେବା ସଙ୍ଗେ ସଙ୍ଗେ ତତ୍ତ୍ୱ ଭିତ୍ତିରେ ଧର୍ମ ଅଧର୍ମର ସମାନ୍ତରାଳ ଦୌଡ଼ ପ୍ରତିଯୋଗିତାରେ ଧର୍ମର ହେବ ଜୟପତାକା ଅଧର୍ମର ହେବ [illegible]ର ସମାଧି । ଅଧର୍ମର ଅଶ୍ରୁ ଛୁଟନ୍ତୁ ।

ଏହି ମନଗମନ ବୃତ୍ତାନ୍ତ ଓ ତତ୍ତ୍ୱପ୍ରକାଶ ଶୁଣି ଯଦି ଆପଣଙ୍କ ଭିତରେ କିଛି ପୁଲକ, ଚେତନା ଓ ଜାଗରଣ ଜାଗ୍ରତ ହୋଇଥାଏ, ଓ ତଦ୍ୱାରା ହେଇ, ଜଗତର ଏହି ଅମର ସନ୍ତାନଗଣଙ୍କ ମଧ୍ୟରେ ଗୋଟିଏ ଏକ-ଆତ୍ମା ବୋଧର ଚୈତନ୍ୟ ଆଣି ଜ୍ଞାନର ଗଙ୍ଗା ଜଳର ଧର୍ମରେ ପ୍ରଭାବିତ ହୁଏ; ଯେଉଁଥିରୁ କି [illegible] ପରିବେଷଣ ହୁଏ, ତେବେ ମୋର ଏହି ପ୍ରୟାସ, ସାଧନା ଓ ଜୀବନ ସାର୍ଥକ ହୋଇଛି ବୋଲି ଭାବିବି । ଆଗକୁ ଏକ ଅତିବଡ଼ ଇଚ୍ଛାର ସାଧନା ବାକି ଅଛି, ଯାହାକୁ କି ମିଳାଇ ଅଧର୍ମଚକ୍ର, ମୃତ୍ୟୁମୁଖୀ ମରଣର ଟାଳିପାରି ନାହିଁ ।

ସେଥିପାଇଁ ଆପଣଙ୍କର ଏହି 'ମୁଁ', ଅମର ସନ୍ତାନ ଆପଣଙ୍କୁ ଶ୍ରଦ୍ଧା ଇଚ୍ଛା-ଅଞ୍ଜଳି ଓ ପାଦ ବିଶେଷରେ ଆଶିର୍ବାଦ ଅର୍ପଣ ଭିକ୍ଷା କରୁଛି । ଏପରି ହେଲେ ସେହି ଇଚ୍ଛା-ସମୂହ ମିଳେଇ ଯାଇ ଏକ ଘନୀଭୂତ ପରିବୃତ୍ତ ଅତିବଡ଼ ଇଚ୍ଛା ଶକ୍ତିରେ ପରିଣତ ହୋଇ ଏକ ନୂତନ ଚରିତ୍ର ସୃଷ୍ଟି ସମାହୃତ ଓ ସମ୍ପାଦିତ ହୋଇ ପାରିବ । ମଧ୍ୟ, ସେ ହେବ ଭାବ-ଯୋଗ; ଏକ ଲୁପ୍ତ ସହଜ ଯୋଗ-ଧର୍ମର ସୂଅରେ, ଏକ ସଲଖ ସୁବିଧା ବାଟ । ଆପଣଙ୍କର ଏହି 'ମୁଁ' କେବଳ ସେହି ଟିକକ ଭିକ୍ଷାଭରେ ଓଟିକରି ଆସୁଛି ।

ଜୁନ ୬ ତାରିଖ
୧୯୭୦
ବ୍ରହ୍ମପୁର

ଆପଣଙ୍କର ନିଜର 'ମୁଁ'

ଦକ୍ଷିଣା—

ଆତ୍ମାର ପଞ୍ଚପ୍ରାଣକୁ ସଂଗ୍ରହ କରି ରଖିବା ପାଇଁ ପଠ... ଛନ୍ଦାରେ ଦକ୍ଷିଣା ଦେବା ବିଧେୟ ।

ଯାହା ...

ବ୍ରହ୍ମପୁର ଶିବାନନ୍ଦ ପ୍ରେସରେ ମୁଦ୍ରିତ

